# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**November- 2014**

୭୧ ଭାଗ | ୪ର୍ଥ ସଂଖ୍ୟା | କାର୍ତ୍ତିକ– ମାର୍ଗଶିର | ନଭେମ୍ବର – ୨୦୧୪

**ମଧୁସୂଦନ ପାଢୀ,** ଭା.ପ୍ର.ସେ.
କମିଶନର ତଥା ଶାସନ ସଚିବ

**ରଞ୍ଜିତ୍ କୁମାର ମହାନ୍ତି,** ଓ.ଏ.ଏସ୍ (ଏସ୍.ଏ.ଜି)
ନିର୍ଦ୍ଦେଶକ

**ଡ. ଲେନିନ୍ ମହାନ୍ତି**
ସମ୍ପାଦକ
(ଭାରପ୍ରାପ୍ତ)

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ୍ ଡିଜାଇନିଂ
**ମାନସ ନାୟକ**

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
**ହେମନ୍ତ କୁମାର ସାହୁ**
**ସୁମିତ୍ରା କର**

ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**


ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

**ପ୍ରତିଖଣ୍ଡ : ଟ. ୫.୦୦**

ନଭେମ୍ବର-୨୦୧୪

# ସୂଚୀ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ଲକ୍ଷ୍ମଣ ନାଏକ



ବିର୍ସା ମୁଣ୍ଡା



ଜୟୀ ରାଜଗୁରୁ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ପଣ୍ଡିତ ଜବାହରଲାଲ ନେହେରୁ



ହରେକୃଷ୍ଣ ମହତାବ



ନବକୃଷ୍ଣ ଚୌଧୁରୀ

# ସମ୍ପାଦକୀୟ




ଐତିହାସିକ ବାରବାଟୀ ଦୁର୍ଗ ନିକଟସ୍ଥ ମହାନଦୀ କୂଳରେ ପ୍ରତିବର୍ଷ ପରି ଏ ବର୍ଷ ମଧ୍ୟ ଅପୂର୍ବ ଉତ୍ସାହ ଓ ଉଦ୍ଦୀପନା ସହ ପାଳିତ ହେଉଛି 'ବାଲିଯାତ୍ରା' । ବାଲିଯାତ୍ରା ସହ ପ୍ରାଚୀନ କଳିଙ୍ଗର ସାଧବ ପୁଅଙ୍କ ଦରିଆପାରି ନୌଯାତ୍ରାର ଗୌରବମୟ ଗାଥା ଜଡିତ, ଯାହାର ସ୍ମୃତିଚାରଣ କରି ଏହି ଯାତ୍ରା ସପ୍ତାହବ୍ୟାପୀ ପାଳିତ ହୋଇଥାଏ । ଜାତୀୟ ସ୍ତରର ଏହି ବିରାଟ ବାଣିଜ୍ୟ ମେଳା ପ୍ରତିବର୍ଷ ଅନୁଷ୍ଠିତ ହୋଇ ଆସୁଛି । ଭାରତକୁ ଝଲସାଇ ଦେଉଥିବା ଉତ୍କଳୀୟ ଉଜ୍ଜ୍ୱଳମୟ ପରମ୍ପରା ବଖାଣେ ଏହି ବାଲିଯାତ୍ରା । ବାଲିଯାତ୍ରା–ବାଲିଦ୍ୱୀପ ଯାତ୍ରା ଅଥବା ବୋଇତ ବନ୍ଦାଣ–ଏହି ବୋଇତ ଉତ୍ସବ ଓଡିଶାର ସହସ୍ରାବ୍ଦୀର ସହରରେ ଜୀବନ୍ତ ହୋଇଉଠେ, ଯେଉଁଠି ଇତିହାସ, ପ୍ରାଚୀନ କଳିଙ୍ଗର ଐଶ୍ୱର୍ଯ୍ୟମୟ ନୌବାଣିଜ୍ୟର ଗୌରବ ଗାଥାକୁ ପୁନର୍ଜୀବିତ କରିଥାଏ । କାହିଁ କେଉଁ କାଳରୁ ବର୍ଷ ବର୍ଷ ଧରି ଏହି ବୃହତ ବଜାରରେ ପାରମ୍ପରିକ କୌଶଳଠାରୁ ଆଧୁନିକତାର ଛାପରେ ପ୍ରସ୍ତୁତ ଦ୍ରବ୍ୟ ଓ ଉପକରଣର ସମ୍ଭାର ପରିଲକ୍ଷିତ ହୋଇଥାଏ, ଯାହା ଗ୍ରାମ୍ୟ ଓ ସହରୀ ସଂପର୍କକୁ ପ୍ରତିବିମ୍ବିତ କରୁଥାଏ ।

ଏହି ସଂପାଦକୀୟ ଲେଖିବା ସମୟରେ ଅଲିଗଡ ମୁସଲିମ୍ ବିଶ୍ୱବିଦ୍ୟାଳୟର ବିବାଦୀୟ ଘଟଣା ମୋ' ମନକୁ ଆଚ୍ଛନ୍ନ କରିଛି, ଯେଉଁଥିରେ ମହିଳା ଉପସ୍ନାତକମାନଙ୍କୁ ମୁଖ୍ୟ ପାଠାଗାରକୁ ପ୍ରବେଶ ବାରଣ କରାଯାଇଛି । ଆହୁରି ମଧ୍ୟ ଛତିଶଗଡର ସାମୂହିକ ବନ୍ଧ୍ୟାକରଣ କାର୍ଯ୍ୟକ୍ରମରେ ଅନେକ ମହିଳାଙ୍କ ପ୍ରାଣହାନୀ ଘଟିଛି । ସାମାନ୍ୟ ଆର୍ଥିକ ସହାୟତା ମିଳୁଥିବା ଜନ୍ମ ନିୟନ୍ତ୍ରଣ ଅସ୍ତ୍ରୋପଚାର କାଳରେ ଏପରି ଦୁଃଖଦ ଘଟଣା ଘଟିଯାଇଛି ।

ତେବେ ଓଡିଶାରେ ମହିଳାମାନେ ଉଦ୍ୟୋଗପତି ହେବାର ପ୍ରଭୂତ ସୁବିଧା ଉପଲବ୍ଧ ଅଛି । ରାଜ୍ୟରେ ଏମିତି ଅନେକ ମହିଳା ଅଛନ୍ତି, ଯେଉଁମାନେ ଗତ କେତେବର୍ଷ ମଧ୍ୟରେ ଆରିଷା ପିଠା ପ୍ରସ୍ତୁତିଠାରୁ ପ୍ରସାଧନ ସାମଗ୍ରୀ ବ୍ୟବସାୟରେ ସଫଳ ଉଦ୍ୟୋଗୀ ଭାବେ ପ୍ରତିପାଦିତ ହୋଇପାରିଛନ୍ତି ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ ପରିଚାଳିତ ଓଡିଶା ସରକାର ମହିଳା ଉଦ୍ୟୋଗର ବିକାଶକୁ ଗୁରୁତ୍ୱ ଦେଉଛି । କାରଣ ଏହି ଉଦ୍ୟୋଗ ପରିବାର ଓ ଗୋଷ୍ଠୀଗତ ଅର୍ଥନୈତିକ ଅଭିବୃଦ୍ଧିରେ ସହାୟକ ହେବା ସହ ଦାରିଦ୍ର୍ୟ ହ୍ରାସ, ସାମାଜିକ ନିରାପତ୍ତା ଏବଂ ସର୍ବୋପରି ମହିଳା ସଶକ୍ତିକରଣ ପରି କାର୍ଯ୍ୟକ୍ରମକୁ ପରିପୁଷ୍ଟ କରିଛି । ଆମ ରାଜ୍ୟରେ ମହିଳା ଔଦ୍ୟୋଗିକ ବିକାଶ ଅର୍ଥନୈତିକ ସମୃଦ୍ଧିର ମୁଖ୍ୟ ଉତ୍ସ ଭାବେ ପରିଗଣିତ ହୋଇଛି । ବିଗତ ବର୍ଷଗୁଡିକରେ ସଂଗଠିତ କ୍ଷେତ୍ରରେ ମହିଳାମାନଙ୍କ ନିଯୁକ୍ତି ଆଶାତୀତ ବୃଦ୍ଧି ଘଟିଛି । ପ୍ରାୟ ୫ ଲକ୍ଷ

୩୬ ହଜାର ମହିଳା ସ୍ୱୟଂ ସହାୟକ ଗୋଷ୍ଠୀରେ ୭୦ ଲକ୍ଷ ସଦସ୍ୟା ମିଶନ ଶକ୍ତି କାର୍ଯ୍ୟକ୍ରମ, ଏମ୍‌ଏସ୍‌ଏମ୍‌ଇ ବିକାଶ ସଂସ୍ଥା ଓ କ୍ଷୁଦ୍ର ଶିଳ୍ପ ବିକାଶ ନିଗମଗୁଡିକରୁ ସହାୟତା ଲାଭ କରୁଛନ୍ତି ।

ନୂଆଦିଲ୍ଲୀରେ ଅନୁଷ୍ଠିତ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା-୨୦୧୪ର ପ୍ରସଙ୍ଗ 'ମହିଳା ଔଦ୍ୟୋଗିକତା' ଅନୁଯାୟୀ ଓଡ଼ିଶା ପ୍ୟାଭିଲିଅନ୍‌କୁ ରୂପ ଦିଆଯିବା ସହ ଅନୁରୂପ ଭାବେ ସଜାଯାଇଛି । ଏଠାରେ ଓଡିଶାର ମହିଳାମାନଙ୍କ ପାରମ୍ପରିକ କଳାନୈପୁଣ୍ୟର ସମୃଦ୍ଧ ଐତିହ୍ୟ ଓ ରାଜ୍ୟରେ ମହିଳାମାନଙ୍କ ସଶକ୍ତିକରଣ ଓ ସେମାନଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣୁଥିବା କାର୍ଯ୍ୟକ୍ରମର ଝଲକ ଦିଆଯାଇଛି । ମହିଳା ଉଦ୍ୟୋଗୀଙ୍କ ଅବିଶ୍ରାନ୍ତ ଉତ୍ସାହ, ସଫଳତା ନିମନ୍ତେ ସତତ ଅନ୍ୱେଷଣ ଏବଂ ଏଥିରେ ସେମାନଙ୍କ ସକ୍ରିୟ ସହଯୋଗିତା ଏକ ବିରାଟ ପରିବର୍ତ୍ତନ ଆଣିବାରେ ସଫଳ ହୋଇଛି ।

ସାମାଜିକ ସମାନତା ଉପରେ ଗୁରୁତ୍ୱ ଦେବାର ସମୟ ବର୍ତ୍ତମାନ ଉପନୀତ । ତେବେ ମହିଳାମାନେ ଯେ ପର୍ଯ୍ୟନ୍ତ ସେମାନଙ୍କ ପ୍ରତିଭା ଓ ମନୋବଳକୁ କ୍ଷୁଣ୍ଣ କରୁଥିବା ଶୃଙ୍ଖଳକୁ କାଢି ଫୋପାଡି ନଦେଇଛନ୍ତି, ସେ ପର୍ଯ୍ୟନ୍ତ ସେମାନଙ୍କ ପ୍ରକୃତ ସଶକ୍ତିକରଣର ସମ୍ଭାବନା କମ୍ ଏବଂ ଯଦି ସେମାନେ ଦେଶର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ସଶକ୍ତ ନ ହୁଅନ୍ତି ତେବେ ଦେଶର ପ୍ରଗତି ବ୍ୟାହତ ହେବ । ତେଣୁ ଆମେ ପରସ୍ପର ସହ ହାତ ମିଳାଇ ସମାନତାର ମନ୍ତ୍ରରେ ଦୀକ୍ଷିତ ହେବାର ବେଳ ଆସିଛି । ଏ ପରିପ୍ରେକ୍ଷୀରେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଣୀତ 'ଓଡ଼ିଶା ରାଜ୍ୟ ବାଳିକା ଓ ମହିଳା ନୀତି' ସମାନତାର ସୁଯୋଗ, ବୈଷମ୍ୟ ଦୂରୀକରଣ, ସାମଗ୍ରିକ ବିକାଶ ଓ ସଶକ୍ତିକରଣ ତଥା ସାମର୍ଥ୍ୟ ବୃଦ୍ଧି ନିମନ୍ତେ ଉଦ୍ଦିଷ୍ଟ ଏକ ପ୍ରକୃତ ପରିବେଶ ସୃଷ୍ଟି କରିବାରେ ସହାୟକ ହୋଇପାରିବ ।

ଲେଳିନ୍ ମହାନ୍ତି

**ସମ୍ପାଦକ**

# ଆ.କା.ମା.ବୈ.

ଜୟନ୍ତ କୁମାର ପଟ୍ଟନାୟକ

୨୦୧୪ ମସିହା ସେପ୍ଟେମ୍ବର ୨୪ ତାରିଖରେ ଭାରତୀୟ ମଙ୍ଗଳଯାନ ମଙ୍ଗଳାୟନ ମଙ୍ଗଳ କକ୍ଷରେ ପ୍ରବେଶ କରି ଇତିହାସ ରଚିବା ସହିତ ପ୍ରଥମ ଉଦ୍ୟମରେ ସଫଳ ହେବାରୁ ପୃଥିବୀରେ ଭାରତର ସ୍ଥାନ ୪ର୍ଥ(ଚତୁର୍ଥ) ହେଲା । ଏକବିଂଶ ଶତାବ୍ଦୀରେ ବିଜ୍ଞାନ ବହୁତ ଉନ୍ନତ କରି ସାରିଲାଣି । ମାତ୍ର ଖ୍ରୀଷ୍ଟ ଜନ୍ମର ବହୁ ପୂର୍ବରୁ ଓଡ଼ିଶା, ତତ୍କାଳୀନ 'କଳିଙ୍ଗ'ର ଦୁର୍ଦ୍ଧର୍ଷ ସାଧବ ପୁଅ ଯେ କଳିଙ୍ଗ ସାଗର (ସେତେବେଳେ ଏଇ ସାଧବ ପୁଅ ବା କଳିଙ୍ଗ ସନ୍ତାନର ସୁନାମ ଏତେ ବ୍ୟାପିଥିଲା ଯେ ବଙ୍ଗୋପସାଗରକୁ କଳିଙ୍ଗ ସାଗର– ବା କଳିଙ୍ଗୋଦ୍ର କୁହାଯାଇଥିଲା– ସାହିତ୍ୟ ଦର୍ପଣ) ରେ ରାଜତ୍ୱ କରୁଥିଲା, ସେକଥା ଆଜି ଅବିଶ୍ୱାସ ଲାଗିଲେ ମଧ୍ୟ ଶତକଡ଼ା ଶହେ ସତ । ସେଥିପାଇଁ କୁହାଯାଉଥିଲା, କଳିଙ୍ଗାଃ – ସାହାସିକାଃ । ପୁଣି ପୃଥିବୀର ଶ୍ରେଷ୍ଠ ନୌବାହିନୀ ବ୍ରିଟିଶ ରୟାଲ ନେଭି ଦୁର୍ଦ୍ଧର୍ଷ ଭାବେ ବିଖ୍ୟାତ ହୋଇଥିଲା ଷୋଡ଼ଶ ଶତାବ୍ଦୀରୁ । ମାତ୍ର ଖ୍ରୀଷ୍ଟ ଜନ୍ମର ବହୁ ପୂର୍ବରୁ କଳିଙ୍ଗର ସାଧବମାନେ ନୌବାଣିଜ୍ୟରେ ଏତେ ପ୍ରସିଦ୍ଧି ଲାଭ କରିଥିଲେ ଯେ ତତ୍କାଳୀନ ସମୟରେ ଈର୍ଷାର ପାତ୍ର ହୋଇଥିଲେ । ସେଥିପାଇଁ ନୌବାଣିଜ୍ୟରେ କଳିଙ୍ଗର ଏକାଧିପତ୍ୟକୁ ନ୍ୟୂନ କରିବା ଉଦ୍ଦେଶ୍ୟରେ ତତ୍କାଳୀନ ମଗଧ ସମ୍ରାଟ ଅଶୋକ ପ୍ରସିଦ୍ଧ କଳିଙ୍ଗ ଯୁଦ୍ଧ କରିଥିଲେ ଖ୍ରୀ.ପୂ.୨୬୧ରେ । (ଲାମା ତାରାନାଥ– ତିବ୍ବତ ଐତିହାସିକ ।)

ଖ୍ରୀଷ୍ଟପୂର୍ବ ୪୦୦ ରୁ ଖ୍ରୀଷ୍ଟାବ୍ଦ ୮୦୦ ପର୍ଯ୍ୟନ୍ତ ଦୀର୍ଘ ସମୟ ଧରି ଗଭୀର ନୀଳ ସମୁଦ୍ରରେ ନୌବାଣିଜ୍ୟ କରି କଳିଙ୍ଗ ସାଧବମାନେ ରାଜ୍ୟକୁ ବହୁଭାବେ ସମୃଦ୍ଧ କରିଥିଲେ । ଏହି ହେତୁରୁ ମହାକବି କାଳିଦାସ ରଘୁବଂଶ କାବ୍ୟରେ କଳିଙ୍ଗାଧିପତିଙ୍କୁ 'ମହୋଦଧିପତି' ଭାବେ ଉଲ୍ଲେଖ କରିଛନ୍ତି ।

ନୌବାଣିଜ୍ୟରେ ପଟୁଥିବା ଓଡ଼ିଆ ନାବିକମାନେ ଜାହାଜ ନିର୍ମାଣରେ ମଧ୍ୟ ସିଦ୍ଧି ଲାଭ କରିଥିଲେ । ସେତେବେଳେ ଜାହାଜକୁ କୁହାଯାଉଥିଲା 'ବୋଇତ' । ତତ୍କାଳୀନ ଓଡ଼ିଶାର ଘଞ୍ଚ ଜଙ୍ଗଲରେ ଲମ୍ବ ଶକ୍ତ ତଥା ହାଲୁକା କାଠ ପ୍ରଚୁର ପରିମାଣରେ ମିଳୁଥିଲା, ଯାହା ବୋଇତ ତିଆରିକୁ ସହଜ କରିଥିଲା । ସେତେବେଳର ଜାହାଜ ତିଆରି କାରଖାନା ଭାବେ ବିଖ୍ୟାତ ଥିଲା ଚିଲିକା କୂଳର ଗୋଳବାଇ । ନିକଟସ୍ଥ ଗୋଳବାଇ ଶାସନ ଖନନରୁ ଜାହାଜ ନିର୍ମାଣ ସମ୍ବନ୍ଧୀୟ ଅନେକ ପଦାର୍ଥ ଆବିଷ୍କୃତ । ଜାହାଜ କାରଖାନା ଭାବେ ବିଖ୍ୟାତ ଥିବା ଅନ୍ୟ ସ୍ଥାନଗୁଡ଼ିକ ହେଲା ବାଲେଶ୍ୱର, ଚାନ୍ଦବାଲି, ବୋଇତକୁଦ, ଅସ୍ତରଙ୍ଗ, ମାଣିକ ପାଟଣା ଓ ପାଲୁର ।

'ଯୁକ୍ତି କଳ୍ପତରୁ' ନାମକ ଏକ ସଂସ୍କୃତ ଗ୍ରନ୍ଥରେ ତତ୍କାଳୀନ ବୋଇତ ନିର୍ମାଣର ବିଶଦ ବିବରଣୀ ଅଛି । ରାଧାମୁକୁନ୍ଦ ବାବୁ ନାମକ ଗବେଷକଙ୍କ ଇଂରାଜୀ ପୁସ୍ତକ ଭାରତୀୟ ଅର୍ଣ୍ଣବ ପୋତ ଏ ଦିଗରେ ଉଦାହରଣୀୟ । ଏହି ପୁସ୍ତକ ଅନୁଯାୟୀ ବୋଇତ ଦୁଇ ପ୍ରକାର– ୧– ସାମାନ୍ୟ/ସାର୍ଥକ – ସ୍ଥାନୀୟ ଜଳଯାତ୍ରା ନିମିତ୍ତ ଉଦ୍ଦିଷ୍ଟ ବୋଇତ ଓ ୨– ବିଶେଷ ବା ଅର୍ଣ୍ଣବ ପୋତ– ଯାହା ସମୁଦ୍ର ଯାତ୍ରା ନିମିତ୍ତ ଉଦ୍ଦିଷ୍ଟ । 'କୋଲଣ୍ଡିଆ' ନାମକ ଜାହାଜ ମଧ୍ୟ କଳିଙ୍ଗ ପୋତ ଭାବେ ବିଖ୍ୟାତ ଥିଲା । ଅନ୍ୟ କେତେ ପ୍ରକାର ଜାହାଜ ହେଲା– ସ୍କୁନର– ଏହା ୟୁରୋପ ପର୍ଯ୍ୟନ୍ତ ଯାଇପାରୁଥିଲା, ଗ୍ରାବ୍– ଏହାର ମୁହଁ ଗୋଜିଆ ଓ ଏଥିରେ ୩ଟି ମାସ୍ତୁଲ ଥାଏ, ବ୍ରିଗ୍– ଏହି ଶ୍ରେଣୀୟ ଜାହାଜ କରମଣ୍ଡଳ ଓ ମାଲବାର ଉପକୂଳରୁ ଆସୁଥିଲା ଓ ପଟୁଆ– ଏଥିରେ ଆଦୌ ପାଲ ନଥିଲା– ଏହା ଉତ୍କଳୀୟ ନୌବାଣିଜ୍ୟର ଶେଷ ଅବସ୍ଥାରେ ଦେଖା ଯାଉଥିଲା । ତୃତୀୟ ଶତାବ୍ଦୀରେ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷା ବିଧାନରେ ସମୁଦ୍ରଯାତ୍ରା ଓ ସମୁଦ୍ରବାଣିଜ୍ୟ ଅନ୍ତର୍ଭୁକ୍ତ ଥିଲା । ଆଦିକବି ସାରଳା ଦାସଙ୍କ ମହାଭାରତର ସଭାପର୍ବରେ ବର୍ଣ୍ଣିତ

କୈବର୍ତ୍ତ ନୃପତିଙ୍କ ନିର୍ମିତ ସୁବର୍ଣ୍ଣ ବୋଇତରୁ ତତ୍କାଳୀନ ବୋଇତରେ ଯେ ଧାତୁ ବ୍ୟବହୃତ ହେଉଥିଲା ଏହା ପ୍ରମାଣିତ । ନୌକା ଗଠନରେ ଲୁହାର ବ୍ୟବହାରକୁ ନେଇ ଭକ୍ତକବି ଦୀନକୃଷ୍ଣ ପ୍ରସ୍ତାବ ସିନ୍ଧୁରେ ଲେଖିଛନ୍ତି–

'ସେ ଲୁହା କାଟଇ କରତପଟା,
ନାବ ଖଞ୍ଜିବାକୁ ଗଢ଼ାଇ କଣ୍ଟା,
ଦୁଇ ମୁଣ୍ଡ ପଟା ଭିତରେ ପଶେ,
ଯେସନେ ନାରାଚ ଦେହରେ ବସେ ।'

କଳିଙ୍ଗ ପୋତଗୁଡ଼ିକୁ ବୋଇତ କହିବାର ମଧ୍ୟ ବହୁ ତାତ୍ପର୍ଯ୍ୟ ରହିଛି । ଓଡ଼ିଶାର କିଛି ଉପକୂଳ ଅଞ୍ଚଳରେ ବୋଇତକୁନ୍ଦ ଏହାର ପ୍ରମାଣ । କାର୍ତ୍ତିକ ପୂର୍ଣ୍ଣିମାର ବୋଇତ ବନ୍ଦାଣ, ଭୁବନେଶ୍ୱରର ଓଲଟ ବୋଇତ ପରି ବୋଇତାଳ ମନ୍ଦିର ଏହାର ଏକ ଏକ ଉଦାହରଣ । ତତ୍କାଳୀନ ସମୁଦ୍ରଯାତ୍ରା ବହୁତ ଦିନ ଲାଗୁଥିଲା, ପାକଳ କଖାରୁ ଅନେକ ଦିନ ପର୍ଯ୍ୟନ୍ତ ଭଲ ରହୁଥିବାରୁ ଜାହାଜରେ ଖାଦ୍ୟ ନିମିତ୍ତ କଖାରୁ ନିଆଯାଉଥିଲା । ତେଣୁ ତା'ର ଏକ ନାମ ବୋଇତି କଖାରୁ । କିଛି କୈବର୍ତ୍ତ ବା କେଉଟ ନାବିକଙ୍କୁ ବୋଇତାଳ କେଉଟ ମଧ୍ୟ କୁହାଯାଉଥିଲା । ପୁରୀ, କୋଣାର୍କ ଓ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର (ଯେଉଁ ଚିତ୍ର ବର୍ତ୍ତମାନ ମ୍ୟୁଜିୟମରେ)ରେ ନୌବାଣିଜ୍ୟ ବା ବୋଇତର ବିଭିନ୍ନ ଚିତ୍ର ଓ ଖଣ୍ଡଗିରିସ୍ଥ ହାତୀଗୁମ୍ଫାରେ ଏକ ବୋଇତରେ ହାତୀ ସରବରାହ କରାଯାଉଥିବା କଳିଙ୍ଗ ଜଳଯାତ୍ରାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଗ୍ରୀକ୍ ପରିବ୍ରାଜକ/ଦାର୍ଶନିକ ଟଲେମୀ, ମେଘାସ୍ଥିନିସ୍ ଏବଂ ଚୀନ ପର୍ଯ୍ୟଟକ/ଭୌଗୋଳିକ ହୁଏନ୍‌ସାଂ, ଫାହିୟାନ ଓ ଆଇ. ସିଂ ଇତ୍ୟାଦିଙ୍କ ବିବରଣୀ ଓଡ଼ିଶା ନୌବାଣିଜ୍ୟ ଇତିହାସକୁ ବହୁଭାବେ ସମୃଦ୍ଧ କରିଛି । ଏହି ବିବରଣୀରୁ ଜଣାଯାଏ ଖ୍ରୀଷ୍ଟପୂର୍ବ ଓ ପର ସମୟରେ ଓଡ଼ିଶାରେ ନନିଗେନ–ପୁରୀ, କର୍କଦମ–କଟକ, କୋଣଗର–କୋଣାର୍କ, କୋଷମ୍ୟ–ବାଲେଶ୍ୱର, ଦୋଷରମ୍–ବୈତରଣୀ(ଧାମରା), ମନଦ–ମହାନଦୀ, ଅଦମନ–ସୁବର୍ଣ୍ଣରେଖା, କଳିଙ୍ଗନଗର–ବଂଶଧରା, ଚରିତ୍ର ବା ଚେଲିତାଲୋ ବା ଚିତ୍ରୋତ୍ପଳା ଓ ଦନ୍ତପୁରମ୍ ଆଦି ବନ୍ଦର ଭାବେ ବିଖ୍ୟାତ ଥିଲା । ପୁଣି ୧୧୦୦–୧୫୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କଳିଙ୍ଗ ନୌବାଣିଜ୍ୟ ଆଉ ଥରେ କଡ଼ ଲେଉଟାଇ ପୁନଶ୍ଚ ଉନ୍ନତିର ଶିଖର ଛୁଇଁଥିଲା । ସେସମୟର ବନ୍ଦରଗୁଡ଼ିକ ଥିଲା ବାଲେଶ୍ୱର– ଧାମରା, ଚାନ୍ଦିପୁର ଚୂଡ଼ାମନ, ଚିଲିକା (ଗୋଳବାଇ/ମାଣିକପାଟଣା) ପାଲୁର, ଗୋପାଳପୁର ଇତ୍ୟାଦି । ସମ୍ରାଟ ମହାମେଘବାହନ ଐର ଖାରବେଳଙ୍କ ସମୟ କଳିଙ୍ଗ ନୌବାଣିଜ୍ୟର ସୁବର୍ଣ୍ଣ ଯୁଗ ଥିଲା, ଯାହା ଗଜପତି ପ୍ରତାପରୁଦ୍ରଦେବଙ୍କ ପର୍ଯ୍ୟନ୍ତ ବଳବତ୍ତର ଥିଲା । ସେସମୟରେ ସାଧବମାନେ ବଡ଼ ବଡ଼ ବୋଇତରେ ହାତୀ, ହାତୀଦାନ୍ତ, ହାତୀଦାନ୍ତର ସୂକ୍ଷ୍ମ କାରୁକଳାପୂର୍ଣ୍ଣ ଦ୍ରବ୍ୟ, ଧାନ, ଚାଉଳ, ପାନ, ଗୁଆ, ନଡ଼ିଆ, ହଳଦୀ, ଗୁଡ଼, ଲୁଣ, ତୈଳଜାତ ଦ୍ରବ୍ୟ ଶଂଖ, ଚାନ୍ଦୁଆ, ସୂକ୍ଷ୍ମ ବସ୍ତ୍ର, ବିଭିନ୍ନ ଦୁର୍ମୂଲ୍ୟ ପଥର ଆଦି ନେଇ ଯାଉଥିଲେ ଏବଂ ବଦଳରେ ବିଭିନ୍ନ ପ୍ରକାର ମସଲା, ଚନ୍ଦନକାଠ, ଅଗୁରୁ, କର୍ପୂର, ମୁକ୍ତା, ସୁନା, ରୁପା ଆଦି ଧାତୁ ଦ୍ରବ୍ୟ ବୋହି ଆଣୁଥିଲେ ।

କୋଣାର୍କ ମନ୍ଦିରରେ ଜିରାଫକୁ ବୋଇତରେ ପରିବହନର ଦୃଶ୍ୟ ଆଫ୍ରିକା ମହାଦେଶ ସହିତ କଳିଙ୍ଗର ବାଣିଜ୍ୟ କାରବାରର ସୂଚନା ଦିଏ । କେତେକ ଖନନରୁ ଜଣାଯାଏ କଳିଙ୍ଗର ଆରବ, ଇଜିପ୍ଟ, ରୋମ୍ ଓ ପାରସ୍ୟ ସହିତ ମଧ୍ୟ ବାଣିଜ୍ୟ କାରବାର ଥିଲା । ଚୀନ୍ ଦେଶ ସହିତ ବାଣିଜ୍ୟର ରାଶି ରାଶି ପ୍ରମାଣ ବିଭିନ୍ନ ଖନନରୁ ମିଳିଛି । ବ୍ରହ୍ମଦେଶ, ଇଣ୍ଡୋନେସିଆ ପଥ ଦେଇ ଚୀନ୍‌କୁ ଏକ ସ୍ୱତନ୍ତ୍ର ଜଳପଥ ଥିଲା କଳିଙ୍ଗରୁ । ଖ୍ରୀ.ପୂ. ୭୦୦ରେ ବର୍ମାର ନାମ ଥିଲା କଳିଙ୍ଗରାଟ । ବର୍ମାର ୟଙ୍ଗନ ନାମକ ସ୍ଥାନରେ ଆବିଷ୍କୃତ ଏକ ଜାହାଜର ଅଂଶ ସାଧବମାନଙ୍କର ଥିଲା ବୋଲି ପ୍ରମାଣ ମିଳେ । ବର୍ମାର ପ୍ରୋମ୍ ନଗରୀର ନାମ କଳିଙ୍ଗ ଅଧିବାସୀମାନେ 'ଶ୍ରୀକ୍ଷେତ୍ର' ରଖିଥିଲେ । ବର୍ମାର ପବିତ୍ର ଗ୍ରନ୍ଥ 'ବୁଦ୍ଧାଗତ' କଳିଙ୍ଗ ସହିତ ସଂପର୍କର କଥା କହେ, ପେଗୁରୁ ମିଳିଥିବା ମୁଦ୍ରାରୁ ଏହା ପ୍ରମାଣିତ ।

କଳିଙ୍ଗର ଅନ୍ୟ ନାମ ଥିଲା କ୍ଲିଙ୍ଗ୍ । ଜାଭାର ଅଧିବାସୀମାନଙ୍କୁ ଚୀନ୍‌ମାନେ ହୋଲିଂ (କଳିଙ୍ଗର ଚୀନୀୟ ନାମ) ନାମରେ ଡାକୁଥିଲେ । ଜାଭା, କାମ୍ବୋଡ଼ିଆ ଏବଂ ଚମ୍ପା ଆଦି ଦେଶରେ ରାଜୁତି କରୁଥିବା ଜାଭାର ଶୈଳେନ୍ଦ୍ର ବଂଶ କଳିଙ୍ଗର ମୂଳ ଅଧିବାସୀ । ଓଡିଶାର ଜଣେ ପ୍ରଖ୍ୟାତ ରାଜାଙ୍କ ନାଁରେ ବାଲି ଦ୍ୱୀପର ନାମକରଣ ହୋଇଥିଲା । ବାଲି ସହିତ କଳିଙ୍ଗର ବାଣିଜ୍ୟ ଓ କଳା ସଂସ୍କୃତି ସଂପର୍କ ଅତି ନିବିଡ଼ ଥିଲା । ଯଥା, ଆମପରି ମୁଖା ପିନ୍ଧା ନାଚ, ଆମ ପରି ମଣ୍ଡା, ଏଣ୍ଡୁରୀ ପିଠା, କଦଳୀ ମଞ୍ଜା ଓ ସଜନା ଶାଗ ଆଦି ଖାଦ୍ୟ ପଦାର୍ଥ ବାଲିରେ ପ୍ରଚଳିତ । ବାଲିରେ ମଧ୍ୟ ଆମ ଲକ୍ଷ୍ମୀପୂଜା ପରି ତାଙ୍କ ଶ୍ରୀଦେବୀ ପୂଜାରେ ଧାନବେଣ୍ଟି ବ୍ୟବହାର ହୁଏ । କାମୋଡ଼ିଆର ପ୍ରଖ୍ୟାତ ଆଙ୍ଗକର ଭାଟ ମନ୍ଦିରରେ ଓଡ଼ିଶା ବା କଳିଙ୍ଗ କଳାର ପ୍ରଭାବ ଦୃଷ୍ଟିଗୋଚର ହୁଏ । ଆଠଶହ ଶତାବ୍ଦୀରେ କଳିଙ୍ଗର ରାଜା ଦକ୍ଷିଣ ବ୍ରହ୍ମଦେଶ

ଅଧିକାର କରି ଗଲା ପରେ ଏହା ପୂରା ଉପଦ୍ୱୀପକୁ ବ୍ୟାପୀ ଯାଇଥିଲା । ଆଧୁନିକ ମାଲେସିଆରେ ଭାରତୀୟମାନଙ୍କୁ କ୍ଲିଙ୍ଗ (କଳିଙ୍ଗ) ନାମରେ ଡକା ଯାଉଥିଲା ।

କଳିଙ୍ଗରୁ ସିଧା ସିଂହଳ ବା ଅଧୁନା ଶ୍ରୀଲଙ୍କାକୁ ୧୪ଦିନ ସମୟ ଲାଗୁଥିଲା । ପୁରୀ ବନ୍ଦରରୁ ନିର୍ମେଘ, ନିର୍ଜ୍ଜନ ରାତିରେ ଶ୍ରୀଲଙ୍କାର କାଣ୍ଡିଠାରେ ଥିବା ଭଗବାନ ବୁଦ୍ଧଙ୍କ ଦନ୍ତ(ଯାହା କଳିଙ୍ଗ ରାଜା ଗୁହଶିବ ତାଙ୍କ ଜାମାତା ଶ୍ରୀଲଙ୍କାର ରାଜକୁମାର ଦନ୍ତ କୁମାରଙ୍କୁ ଯୌତୁକ ସ୍ୱରୂପ ଦେଇଥିଲେ) ମନ୍ଦିରର ଆଲୋକ ଦେଖାଯାଉଥିବାର ଐତିହାସିକ ହୁଏନ୍‌ସାଂ ଉଲ୍ଲେଖ କରିଛନ୍ତି । ସିଂହଳର ପ୍ରଥମ ରାଜା ବିଜୟସିଂହ (ସିଂହଙ୍କ ନାମରୁ ସିଂହଳ) କଳିଙ୍ଗର ସିଂହପୁରରୁ ଯାଇଥିଲେ । ଯାହାଙ୍କ ଜେଜେ ମା' କଳିଙ୍ଗ ରାଜାଙ୍କ ଝିଅ ଥିଲେ । ସିଂହଳରେ ବୌଦ୍ଧଧର୍ମ ପ୍ରଚାର ନିମନ୍ତେ ସମ୍ରାଟ ଅଶୋକଙ୍କ ପୁତ୍ର ମହେନ୍ଦ୍ର ଓ କନ୍ୟା ସଂଘମିତ୍ରା କଳିଙ୍ଗର ଆଠଟି ପରିବାର ସହିତ ଯାଇଥିଲେ । କଳିଙ୍ଗ ରାଜା ନିଶଙ୍କ ମଲ୍ଲ, 'ମଘ' ଆଦି ସିଂହଳ ଅଧିକାର କରି ଥିବାର ବହୁ ବିବରଣୀ ରହିଛି । ସେଥିପାଇଁ କବି ଲେଖିଛନ୍ତି– 'ବୋଇତ ଲାଗିଲା ଯାଇ ସିଂହଳ ଦ୍ୱୀପରେ, ସାଧବ ଯୁବତୀମାନେ ଅତି ପ୍ରମୋଦରେ ଗଲେ ବୋଇତ ବନ୍ଦାଇ ।' ଓଡ଼ିଆମାନେ ହିଁ ଏହି ଦେଶଗୁଡ଼ିକରେ ଜଗନ୍ନାଥ ଧର୍ମ ପ୍ରଚାର କରିଥିଲେ । ଓଡିଆଙ୍କ ନୌବାଣିଜ୍ୟ ଯୋଗେ ବୌଦ୍ଧଧର୍ମ ଆବିଶ୍ୱ ପ୍ରସାରିତ ।

ଆଷାଢ଼ ମାସରେ ନଦୀଗୁଡ଼ିକ ଜଳପୂର୍ଣ୍ଣ ଥିବାରୁ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁରେ ଜଳସ୍ରୋତର ଅନୁକୂଳରେ କଳିଙ୍ଗ ସାଧବମାନେ ଦକ୍ଷିଣପୂର୍ବ ଏସୀୟ ରାଷ୍ଟ୍ରଗୁଡ଼ିକୁ ବହିଃବାଣିଜ୍ୟ ପାଇଁ ବୋଇତ ମେଲି ଦେଉଥିଲେ । ସିଂହଳ, ବ୍ରହ୍ମଦେଶ, ଦକ୍ଷିଣପୂର୍ବ ଏସୀୟ ରାଷ୍ଟ୍ର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବାଲି, କାମ୍ବୋଡ଼ିଆ ଇତ୍ୟାଦି ସହ ସୁଦୂର ଚୀନ୍ ସହିତ ମଧ୍ୟ ନୌବାଣିଜ୍ୟିକ ସଂପର୍କ ନିବିଡ଼ ଥିଲା । ଦୁର୍ଦ୍ଧର୍ଷ ସାଧବମାନଙ୍କ ଯୋଗୁଁ ଉତ୍କଳୀୟ ରାଜକୋଷ ବହୁଭାବେ ସମୃଦ୍ଧ ହୋଇ ଉଠିଥିଲା । ସେଥିପାଇଁ କବି କୃଷ୍ଣ ପ୍ରସାଦ ବସୁ ଲେଖିଛନ୍ତି–

ଯେ ଜାତି ବୋଇତ ଭସାଇ ସାତ ସମୁଦ୍ର ତେର ନଈରେ
ପରଦେଶୁ ଧନ ଦଉଲତ ଆଣୁ ନିଜ ଦେଶେ ବୋହିରେ
ସେ ଜାତିକି ହତଭାଗା ବୋଲି....
ଏଡ଼େ କାର ଛାଡ଼ି ଦେବ କହିରେ ।'

ଦୀର୍ଘ ୫ମାସ ସମୁଦ୍ରରେ କଟାଇବା ପରେ କାର୍ତ୍ତିକ ପୂର୍ଣ୍ଣିମା ସମୟକୁ ଶୀତ ଆଗମନରେ ଉତ୍ତର ପୂର୍ବ ମୌସୁମୀ ବାୟୁ ସାଧବମାନଙ୍କୁ ବାହୁଡାପଥ ବା ପ୍ରତ୍ୟାବର୍ତ୍ତନ ଯାତ୍ରା ପାଇଁ ସଫଳତା ଆଣିଦିଏ– (ଉତ୍କଳ ପ୍ରସଙ୍ଗ ନଭେମ୍ବର ୨୦୦୩) । ବୋଇତର ବ୍ୟବହାର ଚୈତ୍ରଠାରୁ ଶୀତରତୁ ପର୍ଯ୍ୟନ୍ତ ଭଲ ହୁଏ । ତେଣୁ ଓଡ଼ିଆରେ ଉକ୍ତି ଅଛି– 'ଚଇତ୍ର, ଶୀତଯାଏ ରହିତ ।' କାର୍ତ୍ତିକ ପୂର୍ଣ୍ଣିମାରେ ସେଇ ଦୁର୍ଦ୍ଧର୍ଷ ସାଧବ ପୁଅର ସଫଳତା କାମନା କରି ତାରି ସ୍ମୃତିରେ କାଗଜ, ସୋଲ ବା କଦଳୀ ପଟୁକାରେ ଡଙ୍ଗା କରି ସେଥିରେ ପାନ, ଗୁଆ, ଲବଙ୍ଗ, ଧାନ, ଚାଉଳ, ରାଶି ରଖି ବିଭିନ୍ନ ରଙ୍ଗୀନ କାଗଜ କନା ଏବଂ ଦୀପରେ ସଜାଇ ଦୀପ ଜାଳି ନଦୀ ପୁଷ୍କରିଣୀ, ସମୁଦ୍ର ବା ଜଳାଶୟରେ ଭସାଇ ଓଡ଼ିଆମାନେ ଗାଇ ଉଠନ୍ତି – ଆ.କା.ମା.ବୈ । ଅର୍ଥାତ୍ ଆଷାଢ଼–କାର୍ତ୍ତିକ ମାସ ମଧ୍ୟରେ ପ୍ରତ୍ୟାଗମନ କରିବି, ଭୟ କର ନାହିଁ ବା ନିର୍ଭୟରେ ରୁହ (ବୈ) । ଅନ୍ୟ ଏକ ଅର୍ଥରେ ଆ.କା.ମା.ବୈ., ଦକ୍ଷିଣପୂର୍ବ ଏସିଆ ଦେଶ ଆଏଁଳା, କାମ୍ବୋଡ଼ିଆ, ମାଲେସିଆ, ବର୍ମା ଓ ଇଳ ଦ୍ୱୀପପୁଞ୍ଜକୁ ମିଶାଇ ବ+ଇ(ବୈ) ପୂର୍ବେ ବାଣିଜ୍ୟ ସଂପର୍କ ରଖିଥିବା ଦେଶଗୁଡ଼ିକର ସ୍ମୃତିଚାରଣ କରିଥାନ୍ତି । କାର୍ତ୍ତିକମାସ ସାରା ଯେଉଁ ଆକାଶଦୀପ ଜଳୁଥାଏ ତାକୁ ବତୀଘର ସହ ତୁଳନା କରାଯାଇଛି । ବତୀଘର ପରି ଏକ ଲମ୍ବ ବାଉଁଶ ଅଗରେ ଦୀପ ଜଳାଯାଇଥାଏ । ଓଡ଼ିଶାର ପୁରପଲ୍ଲୀ ତଥା ସର୍ବତ୍ର ମହା ଆନନ୍ଦ ଉଲ୍ଲାସରେ ପାଳିତ ଖୁଦୁରୁକୁଣୀ/ତଅପୋଇ (ସାଧବ ଝିଅ) ବ୍ରତ କଥା ଉତ୍କଳୀୟ ନୌବାଣିଜ୍ୟ/ସାଧବ ପୁଅର ଏକ ଜୀବନ୍ତ ଉଦାହରଣ । କାର୍ତ୍ତିକ ଅମାବାସ୍ୟାରେ ପ୍ରତ୍ୟେକ ଓଡ଼ିଆର ଅଗଣାରେ ମୁରୁଜରେ ବୋଇତ ଚିତ୍ର କରାଯାଇ ଘରର ବାସନକୁସନ, ପେଡ଼ି ଆଦି ଆସବାବପତ୍ର ରଖି ବନ୍ଦାପନା କରାଯାଏ, ସାଧବ ପୁଅ ପରି ସୌଭାଗ୍ୟଲକ୍ଷ୍ମୀ ଘରକୁ ଆସିବା ଉଦ୍ଦେଶ୍ୟରେ । ଏଇ ସ୍ମୃତିରେ କବି ଲେଖିଛନ୍ତି – 'ବୋଇତ ଆସୁ, ବୋଇତ ଯାଉ ଆମ ଘର ଭଣ୍ଡାର ପୁରୁଥାଉ ।' ତତ୍କାଳୀନ ସମୁଦ୍ରଗାମୀ ଜଳପୋତଗୁଡ଼ିକୁ ଜଳଦସ୍ୟୁମାନଙ୍କ କବଳରୁ ସୁରକ୍ଷା ତଥା ଜାହାଜ ଚଳାଚଳକୁ ସୁନିୟନ୍ତ୍ରିତ କରିବା ସକାଶେ ଜଣେ ନବାଧକ୍ଷ ବା ନଓ୍ୱାର ରହୁଥିଲେ ଯିଏ ବନ୍ଦରଗୁଡ଼ିକରୁ ରାଜସ୍ୱ ଆଦାୟ କରୁଥିଲେ ଏ ସକାଶେ – ଚାଣକ୍ୟ ବା କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ।

ପୁରୀ ଜିଲ୍ଲାର ମାଣିକପାଟଣା (ଚିଲିକା) ତତ୍କାଳୀନ ଏକ ମୁଖ୍ୟ ବନ୍ଦର ଥିଲା । ମାଣିକପାଟଣା ନିକଟସ୍ଥ ସ୍ଥାନ ଖନନରୁ ନୌବାଣିଜ୍ୟ ସଂପର୍କିତ ଅନେକ କିଛି ପଦାର୍ଥ ଉପଲବ୍ଧ ହୋଇଛି । ବର୍ମା, ଶ୍ୟାମଦେଶ, ଆରବ ଓ ଚୀନ୍‌ର ବାସନକୁସନ, ଇଣ୍ଡୋନେସିଆର ଟେରାକୋଟା, ଧଳା, ନୀଳ, ମାଟିଆ ରଙ୍ଗର

ଉଜ୍ଜ୍ୱଳ ପୋରସଲିନ, ଉଜ୍ଜ୍ୱଳ ଟାଇଲ ଚୀନ୍ ଓ ସିଂହଳର ମୁଦ୍ରା, ରୋମର ରୋଲଟେଡ଼ ପାତ୍ର ଇତ୍ୟାଦି ।

ଚିଲିକା ତଟସ୍ଥ ପାଲୁର (ପାଲୋରା–ଟଲେମୀ) ମଧ୍ୟ ତତ୍କାଳୀନ କଳିଙ୍ଗର ଏକ ବିଖ୍ୟାତ ବନ୍ଦର ଥିଲା, ଅନେକ ଐତିହାସିକଙ୍କ ତଥ୍ୟରୁ ଏହା ସୁସ୍ପଷ୍ଟ । ପାଲୁର ନିକଟସ୍ଥ ଘଣ୍ଟଶିଳା ପାହାଡ଼ର ଶୀର୍ଷରେ ଏକ ବିରାଟ ଦୀପ ଆବିଷ୍କୃତ ହୋଇଛି ଯାହା ସେସମୟରେ ଚିଲିକା ଏବଂ ସମୁଦ୍ରରେ ଆତଯାତ ବୋଇତଗୁଡ଼ିକୁ ବତୀଘରର ସୁବିଧା ଯୋଗାଇ ଦେଉଥିଲା । ବର୍ତ୍ତମାନ ଏହାକୁ ସାଧାରଣ ଲୋକେ ଶିବଲିଙ୍ଗ ଭାବେ ପୂଜା କରୁଛନ୍ତି ।

ପରବର୍ତ୍ତୀ କାଳରେ ଗଞ୍ଜାମ ଜିଲ୍ଲାର ଗୋପାଳପୁର (ଇତିହାସର ମନସୁରକୋଟା) ଏକ ବିଖ୍ୟାତ ବନ୍ଦର ଥିଲା, ଯାହା ସ୍ୱାଧୀନତା ପର ପର୍ଯ୍ୟନ୍ତ କାର୍ଯ୍ୟ କରୁଥିଲା । ଏବେ ମଧ୍ୟ ଭଙ୍ଗା ପଡ଼ିବା ସମୟରେ ସମୁଦ୍ରରେ ବର୍ଥ କାମ ଦେଉଥିବା ଲୁହାଖୁଣ୍ଟଗୁଡ଼ିକର ଅବଶିଷ୍ଟାଂଶ ଦେଖାଯାଏ । ଗୋପାଳପୁର ସମୁଦ୍ର କୂଳରେ ବର୍ତ୍ତମାନ ମଣିଷଠାରୁ କିଛି ମାତ୍ରାରେ ବଞ୍ଚି ଯାଇଥିବା ତତ୍କାଳୀନ ଗୋଦାମ ଘରଗୁଡ଼ିକର କ୍ରିୟଦଂଶ ଦୃଷ୍ଟିଗୋଚର ହୁଏ । ଗୋପାଳପୁରରୁ ଯାତ୍ରୀମାନେ ମୁଖ୍ୟତଃ ରେଙ୍ଗୁନ ବା ବର୍ମା ଯାଉଥିଲେ ଓ ଆସୁଥିଲେ । ମାଲପତ୍ର ହିସାବରେ ଧାନ, ଚାଉଳ ମୁଖ୍ୟତଃ ଗୋପାଳପୁର ବନ୍ଦରରୁ ସରବରାହ ହେଉଥିଲା ।

ଆଧୁନିକ ସମୟର ଅନ୍ୟ ଏକ ବନ୍ଦର ଥିଲା ବାଲେଶ୍ୱର । ଉତ୍ତର ଓଡ଼ିଶାର ବାଲେଶ୍ୱର ବନ୍ଦର ଧାନ, ଚାଉଳ ରପ୍ତାନୀରେ ପ୍ରମୁଖ ସ୍ଥାନ ଅଧିକାର କରିଥିଲା । ବାଲେଶ୍ୱର ବନ୍ଦର ନିକଟରେ ବଡ଼ ବଡ଼ ଗୋଦାମ ଘର ଥିଲା ଖାଦ୍ୟ ଶସ୍ୟ ଭଣ୍ଡାର ନିମନ୍ତେ । ବ୍ୟାସକବି ଫକୀର ମୋହନ ଆତ୍ମଚରିତରେ ବାଲେଶ୍ୱର ବନ୍ଦରର ଅଝାଲ ସିଲାଇ, ନମକ ମାହାଲ କଥା ଉଲ୍ଲେଖ କରିଛନ୍ତି । ଅଝାଲ ସିଲାଇ ଅର୍ଥ ତତ୍କାଳୀନ ବୋଇତ ବା ଜାହାଜରେ ବ୍ୟବହାର ନିମନ୍ତେ ବଡ଼ ବଡ଼ ପାଲ ସିଲାଇ ବା ତିଆରି କରାଯାଉଥିଲା । ଫକୀର ମୋହନ କିଛି ଦିନ ଏହି କାର୍ଯ୍ୟ କରୁଥିଲେ । ନିକଟସ୍ଥ ବଡ଼ ବଡ଼ ଲୁଣ କିଆରୀକୁ ନମକ ମାହାଲ କୁହାଯାଉଥିଲା । ବାଲେଶ୍ୱରରୁ ପ୍ରତିବର୍ଷ ସାଢ଼େ ସାତଲକ୍ଷ ମହଣ ଲୁଣ ରପ୍ତାନୀ ହେଉଥିଲା । ଏହାଛଡ଼ା ବାଲେଶ୍ୱରରୁ ଶହ ଶହ ଜାହାଜ ପ୍ରତିବର୍ଷ ମାଟି ହାଣ୍ଡି ନେଇ ଜାଭା ପ୍ରଭୃତି ଦେଶକୁ ଯାଉଥିଲା (ଉତ୍କଳ ପ୍ରସଙ୍ଗ ନଭେମ୍ବର ୨୦୧୦) ଚାନ୍ଦିପୁର ସନ୍ନିକଟ ବତୀଘର ଏହାର ସ୍ମୃତି ବହନ କରେ ।

କଳିଙ୍ଗ, ଉଡ୍ର, ଉତ୍କଳ, ଉତ୍କଳିଙ୍ଗ ହୋଇ ଏବେ ଓଡ଼ିଶା ହୋଇଛି ସାଧବମାନଙ୍କର ସେହି 'କଳିଙ୍ଗ', ଯାହାର ପଦଚିହ୍ନ ଏବେ ମଧ୍ୟ ସମଗ୍ର ଦକ୍ଷିଣପୂର୍ବ ଏସିଆରେ ସୁସ୍ପଷ୍ଟ । ଅଧୁନା ଓଡ଼ିଶାର ଉପକୂଳ ୪୮୦କି.ମି. ବ୍ୟାପ୍ତ । ଏହି ଉପକୂଳ ଅତ୍ୟନ୍ତ ଭାବେ ଦନ୍ତୁରିତ ଏବଂ ନଦୀମାତୃକା ଓଡ଼ିଶାର ନଦୀଗୁଡ଼ିକ ସୁନାବ୍ୟା । ଏଣୁ ଅନ୍ତଃବାଣିଜ୍ୟ ଓ ବହିଃବାଣିଜ୍ୟ ଦିଗରେ ଓଡ଼ିଶାର ଉପକୂଳ ଅତ୍ୟନ୍ତ ଉପଯୋଗୀ । କ୍ଷୁଦ୍ର ବନ୍ଦର ପ୍ରତିଷ୍ଠା ସକାଶେ ଓଡ଼ିଶାରେ ପ୍ରଚୁର ପ୍ରାକୃତିକ ଉତ୍ସ ଓ ବିପୁଳ ସୁଯୋଗ ରହିଛି ଯାହାର ଉପଯୁକ୍ତ ସଦ୍‌ବିନିଯୋଗ ଏକାନ୍ତ ଅପରିହାର୍ଯ୍ୟ । ଏକ ନୌବାଣିଜ୍ୟିକ ରାଜ୍ୟଭାବେ ବିଖ୍ୟାତ ଥିବା ଓଡ଼ିଶାର ପ୍ରସିଦ୍ଧ ବନ୍ଦରଗୁଡ଼ିକ ପ୍ରାକୃତିକ/ପ୍ରଶାସନିକ/ରାଜନୈତିକ ଇତ୍ୟାଦି ବହୁବିଧ କାରଣରୁ ଧୀରେ ଧୀରେ ଅବଲୁପ୍ତ ହୋଇଯାଇଥିଲା ।

ସ୍ୱାଧୀନୋତ୍ତର ଓଡ଼ିଶାରେ ୨୦୦୪ ମସିହାରେ ଓଡ଼ିଶା ସରକାରଙ୍କ ପ୍ରଣୀତ ବନ୍ଦର ନୀତି ଅନୁଯାୟୀ ୧୩ଗୋଟି ସ୍ଥାନରେ କ୍ଷୁଦ୍ର ବନ୍ଦର ପ୍ରତିଷ୍ଠା ନିମନ୍ତେ ରାଜ୍ୟ ସରକାର ଘୋଷଣା କରିଛନ୍ତି । ସେଗୁଡ଼ିକ ହେଲା, ବାଲେଶ୍ୱର ଜିଲ୍ଲାର ବିଚିତ୍ରପୁର (ତାଳସାରୀ), ସୁବର୍ଣ୍ଣରେଖା ମୁହାଣ (କୀର୍ତ୍ତନିଆ), ବାହାବଳପୁର, ଚାନ୍ଦିପୁର ଓ ଇଞ୍ଚୁଡ଼ି, ଭଦ୍ରକ ଜିଲ୍ଲାର ଧାମରା ଓ ଚୂଡ଼ାମଣୀ, ଜଗତସିଂହପୁରର ଜଟାଧାର ମୁହାଣ, ପୁରୀ ଜିଲାର ଅସ୍ତରଙ୍ଗ ଓ ବାଲିହରଚଣ୍ଡୀ, ଗଞ୍ଜାମ ଜିଲ୍ଲାର ପାଲୁର, ଗୋପାଳପୁର ଓ ବାହୁଦା ମୁହାଣ (ସୋନପୁର) ।

ଏଗୁଡ଼ିକ ମଧ୍ୟରୁ ଓଡ଼ିଶା ସରକାରଙ୍କ ଦ୍ୱାରା ୧୯୮୭ ମସିହାରୁ କାର୍ଯ୍ୟାରମ୍ଭ କରିଥିବା ଗୋପାଳପୁର ବନ୍ଦର କିଛି ବର୍ଷ ଚାଲିବା ପରେ ୨୦୦୭ରୁ ଘରୋଇ ପରିଚାଳନାଧୀନ ଥାଇ ବର୍ତ୍ତମାନ ସବୁଦିନିଆ ବନ୍ଦର କାର୍ଯ୍ୟ ନିର୍ମାଣାଧୀନ । ଗୋପାଳପୁର ବନ୍ଦରର ସମସାମୟିକ ଆନ୍ଧ୍ରର କାକିନାଡ଼ା ବର୍ତ୍ତମାନ ଏକ ସ୍ୱୟଂସଂପୂର୍ଣ୍ଣ ବନ୍ଦର । ୧୯୬୨ ମସିହା ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ଥିବା ତତ୍କାଳୀନ ଧାମରା ଚାନ୍ଦବାଲି ବନ୍ଦର (ରାଜ୍ୟ ବନ୍ଦର ଅଧିକାରୀ ଚାନ୍ଦବାଲି) କାଳକ୍ରମେ ପୋତି ହୋଇ ବନ୍ଦ ହୋଇଯାଇଥିଲା । ୨୦୧୧ ମସିହାରୁ ରାଜ୍ୟ ସରକାର ଓ ଟାଟା /ଏଲ.ଆଣ୍ଡ ଟି କମ୍ପାନୀର ସହଭାଗିତାରେ ଅତ୍ୟାଧୁନିକ ଗଭୀର ପୋତାଶ୍ରୟ ଭାବେ ଧାମରା ଅଧୁନା ଓଡ଼ିଶାର ଏକମାତ୍ର କାର୍ଯ୍ୟକ୍ଷମ କ୍ଷୁଦ୍ର ବନ୍ଦର । ଅସ୍ତରଙ୍ଗ ଓ ସୁବର୍ଣ୍ଣରେଖା ମୁହାଣ ବନ୍ଦର ଦ୍ୱୟର ଜମି ଅଧିଗ୍ରହଣ କାର୍ଯ୍ୟ ଚାଲୁ ରହିଛି । କେନ୍ଦ୍ରଶାସିତ ଅଞ୍ଚଳ ଡାମନ ଓ ଡିଉରେ

କ୍ଷୁଦ୍ର ବନ୍ଦର ସଂଖ୍ୟା–୨, ଓଡ଼ିଶାଠାରୁ ଉନ୍ନତ ତୁଳନାରେ । ସେମିତି ଦେଖିଲେ କ୍ଷୁଦ୍ର ବନ୍ଦର ସଂଖ୍ୟାରେ ଗୁଜୁରାଟ–୪୦, ମହାରାଷ୍ଟ୍ର– ୫୩, କର୍ଣ୍ଣାଟକ–୧୦, ଆନ୍ଧ୍ର ପ୍ରଦେଶ–୧୨, କେରଳ–୧୩, ତାମିଲନାଡୁ– ୧୫, ଏମିତିକି ଆଣ୍ଡାମାନ ନିକୋବରର –୨୩ଟି ।

ଭାରତର ୧୨ଟି ବୃହତ୍ ବନ୍ଦର ମଧ୍ୟରୁ ଅନ୍ୟତମ ପାରାଦ୍ୱୀପ ବ୍ୟତିରେକେ ଗହଣା ଭିତରେ ନୀମକାଠି ଭଳି ଆଧୁନିକ ଓଡ଼ିଶାର ଏକମାତ୍ର କାର୍ଯ୍ୟକ୍ଷମ କ୍ଷୁଦ୍ର ବନ୍ଦର ଧାମରା ।

ଚିଲିକା ଯେ ଦିନେ ଏକ ପ୍ରସିଦ୍ଧ ବିରାଟ ବନ୍ଦର ଭାବେ କାର୍ଯ୍ୟ କରୁଥିଲା, ବହୁତଗୁଡ଼ିଏ ବଡ଼ ବଡ଼ ବୋଇତ ଚିଲିକାରେ ଭିଡ଼ ଜମାଉ ଥିଲେ ଏବଂ ଏଠାରୁ ସିଂହଳ, ଦକ୍ଷିଣ ପୂର୍ବ ଏସିଆ ଦେଶ ସମୂହ ସହିତ ଚୀନ୍ ଏମିତିକି ଆରବ, ଆଫ୍ରିକା, ରୋମ ସାମ୍ରାଜ୍ୟ ଓ ପାରସ୍ୟ ସହ ମଧ୍ୟ ବାଣିଜ୍ୟ କରି ସାଧବପୁଅ ଧନଧାନ୍ୟ, ମଣିମୁକ୍ତା ବୋହିଆଣି ଓଡ଼ିଶାକୁ ଋଦ୍ଧିମନ୍ତ କରୁଥିଲେ ଏକଥା ଭାବିଲେ ଆଜି ଆଶ୍ଚର୍ଯ୍ୟ ଲାଗୁଛି । ବ୍ରହ୍ମାଣ୍ଡ ପୁରାଣରେ ଲେଖାଅଛି – 'ଚିଲିକା ହ୍ରଦେ ସହସ୍ରଂ ତୁ ସୁନପାତଃ ଜଳଗାମିନୀ, ତାମ୍ରାଛାଦିତାଃ ବୈ ଦ୍ରୁତାଃ ସହସ୍ର ଜନଧାରକାଃ ।'

ଏଇ ସ୍ମୃତିରେ ୧୯୯୩ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଗୋପାଳପୁର ବନ୍ଦରରୁ ଏକ ସ୍ୱତନ୍ତ୍ର ବୋଇତରେ ଆୟୋଜିତ ହୋଇଥିଲା କଳିଙ୍ଗ ବାଲିଯାତ୍ରା ଇଣ୍ଡୋନେସିଆ ପର୍ଯ୍ୟନ୍ତ । ଓଡ଼ିଶାର ସେହି ପ୍ରାତଃ ସ୍ମରଣୀୟ ଜନନାୟକ ବିଜୁ ପଟ୍ଟନାୟକଙ୍କର ସ୍ୱପ୍ନ ଥିଲା ବ୍ୟାଙ୍କ ଅଫ୍ କଳିଙ୍ଗ ଏବଂ କଳିଙ୍ଗ ରେଜିମେଣ୍ଟ । ତାଙ୍କର ସୁପୁତ୍ର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଯଦି ଚିଲିକା ଓ ତାର ମୁହାଣ ଡ୍ରେଜିଂ (ଖୋଳି) କରି କଳିଙ୍ଗ ନୌବହର ବା 'କଳିଙ୍ଗ ନାଭାଲ କମାଣ୍ଡ' ନାମରେ ନୌବାହିନୀର ଏକ ବଡ଼ ଘାଟି ପ୍ରତିଷ୍ଠା କରିପାରନ୍ତେ ଅନ୍ତତଃ ଚିଲିକା (ପୁରାତନ ବିଖ୍ୟାତ ବନ୍ଦର) କଳିଙ୍ଗ ଓ ସାଧବ ପୁଅର ସେଇ ପୂର୍ବ ସୁନାମ ଫେରିଆସିପାରନ୍ତା । କଳିଙ୍ଗର ବରପୁତ୍ର ବିଜୁବାବୁଙ୍କ ସ୍ୱପ୍ନ ମଧ୍ୟ ପୂରଣ ହୋଇ ପାରନ୍ତା । କବିଙ୍କ ଗୀତି – 'ଉତ୍କଳସ୍ୟ ସମଦେଶୋ, ଦେଶୋ ନାସ୍ତି ମହୀତଳେ' ସାର୍ଥକ ହୋଇଯାଆନ୍ତା ।

ଉପ ବିଭାଗୀୟ ଅଧିକାରୀ
ବନ୍ଦର ନିର୍ଦ୍ଦେଶାଳୟ, ଏଜି ଛକ, ଭୁବନେଶ୍ୱର

# ଉତ୍କଳ ବନ୍ଦନା

**ଡକ୍ଟର କୃତ୍ତିବାସ ନାୟକ**

ଉତ୍କଳ ଜନନୀ କୋଳରେ ଜନମି ଧନ୍ୟ ହେଲା ମୋ ଜୀବନ
ତା'ର ଗୁଣଗାଇ ମଥାକୁ ନୁଆଁଇ ବୋଳିବି ମାଟିଚନ୍ଦନ ।

ଜଗତରନାଥ ରତ୍ନ ସିଂହାସନେ ଭାଇ ଭଉଣୀଙ୍କ ସାଥେ
ମାନବ ଜାତିକୁ ଦିଅନ୍ତି ସୁରକ୍ଷା ଧରି ଶଙ୍ଖ ଚକ୍ର ହାତେ ।
ଇତିହାସ ତା'ର ଗୌରବ ମଣ୍ଡିତ କୋଟି ପ୍ରାଣର ସ୍ପନ୍ଦନ ।

କଳିଙ୍ଗ ସାଗର ଉତ୍ତୁଙ୍ଗ ଲହଡି ଗାଉଛି ବନ୍ଦନା ତା'ର
ଲକ୍ଷେତୀର୍ଥ ପୀଠ ନିସର୍ଗ ସମ୍ପଦ ପ୍ରକୃତିର ଗନ୍ତାଘର ।

ସଂସ୍କୃତି ସମ୍ଭାର କଳା କାରିଗରୀ କୋଣାର୍କ ତା'ର ପ୍ରମାଣ ।
କେତେ ନଦନଦୀ ହୋଇଛନ୍ତି ବନ୍ଦୀ ସେ ମାଟି ମମତା ପାଇ ।
ଶରଧାରେ ଚାରିକୋଟି ସନ୍ତାନକୁ ଆହାର ଦିଏ ଯୋଗାଇ ।
ଲିପି ତା' ସୁନ୍ଦର ଭାଷାଟି ମଧୁର ଆଶା କରୁଛି ପୂରଣ ।

ନିର୍ଦ୍ଦେଶକ
ଆକାଶବାଣୀ, ଜୟପୁର
କୋରାପୁଟ–୭୬୪୦୦୫

# ଓଡ଼ିଶାରେ ମହିଳା ଉଦ୍ୟୋଗ ଓ ନାରୀ ସଶକ୍ତିକରଣ

**ତାପସ କୁମାର ସାହା**

'ଯହିଁ ନାରୀ ତହିଁ ଲକ୍ଷ୍ମୀ ତହିଁ ସ୍ୱର୍ଗଧାମ
ଶ୍ମଶାନ ସେ ଗୃହ ଯହିଁ ନାହିଁ ନାରୀ ନାମ ।
ଏପରି ନାରୀକୁ ଯେ ବା କରେ ଅନାଦର
ନିର୍ବୋଧ ରାକ୍ଷସ ସେହି ପାଷାଣ୍ଡ ପାମର ।'

ବ୍ୟାସ କବି ଫକୀର ମୋହନ ସେନାପତିଙ୍କ ଦ୍ୱାରା ଲିଖିତ କବିତାର ଉପରୋକ୍ତ ଉଦ୍ଧୃତାଂଶ କେତେକାଂଶରେ ସାମ୍ପ୍ରତିକ ସମାଜକୁ ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ ହେଁ, ସାମଗ୍ରିକ ଦୃଷ୍ଟିକୋଣରୁ ବିଚାର କଲେ ସମାଜରେ ନାରୀର ସ୍ଥାନ ଓ ଭୂମିକାରେ ଅଭୂତପୂର୍ବ ପରିବର୍ତ୍ତନ ଆସିଛି । ତତ୍କାଳୀନ ସମାଜରେ ନାରୀ ଶିକ୍ଷାର ଅଭାବ ଓ କୁସଂସ୍କାରକୁ ଲକ୍ଷ୍ୟ କରି କଥା ସମ୍ରାଟ ଫକୀର ମୋହନ ଯେଉଁ 'ରେବତୀ' ଗଳ୍ପ ଲେଖିଥିଲେ, ଆଜି ତାହା କେବଳ ଏକ ଗଳ୍ପ ହୋଇ ରହିଯାଇଛି । ସାମଗ୍ରିକ ଶିକ୍ଷା ବ୍ୟବସ୍ଥା ସମେତ ନାରୀ ଶିକ୍ଷା କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆସିଛି । ଶିକ୍ଷା କ୍ଷେତ୍ରରେ ଛାତ୍ରୀମାନେ ଯେପରି ପାରଦର୍ଶିତା ହାସଲ କରୁଛନ୍ତି ଏବଂ ପୁଅମାନଙ୍କୁ ସବୁ ବର୍ଗରେ ପଛରେ ପକାଇ ଶୀର୍ଷ ସ୍ଥାନ ହାସଲ କରୁଛନ୍ତି, ତାହା ନିଶ୍ଚିତ ରୂପେ ଓଡ଼ିଶାର ଶିକ୍ଷା ଜଗତରେ ଏକ ଶୁଭ ସଂକେତ ବହନ କରେ ।

ବିଗତ ଦିନରେ ଓଡ଼ିଶାର ଯେଉଁ ମହିଳାମାନେ କଠିନ ଅଧ୍ୟବସାୟ, ନିଷ୍ଠା ଓ ସାଧନା ବଳରେ ନିଜ ନିଜ କ୍ଷେତ୍ରରେ ପାରଦର୍ଶିତା ହାସଲ କରିବା ସହିତ ପୁରୁଷଙ୍କ ସହିତ ସମକକ୍ଷ ହୋଇ ପାରିଛନ୍ତି, ସେମାନେ ଆମ ସମସ୍ତଙ୍କର ପ୍ରାତଃ ସ୍ମରଣୀୟା । ସ୍ୱାଧୀନତା ସଂଗ୍ରାମରେ ମହିଳାମାନଙ୍କର ଯୋଗଦାନ ଏବଂ ସେମାନଙ୍କର ଆଦର୍ଶ, ତ୍ୟାଗ ଓ ବଳିଦାନ ଯୁଗେ ଯୁଗେ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଏକ ଆନ୍ତର୍ଜାତୀୟ ରିପୋର୍ଟ ଅନୁଯାୟୀ ଅନ୍ୟାନ୍ୟ ମାନଦଣ୍ଡ ତୁଳନାରେ ରାଜନୀତି ମାନଦଣ୍ଡରେ ଭାରତୀୟ ମହିଳାମାନେ ଅନ୍ୟ ବହୁ ବିକଶିତ ରାଷ୍ଟ୍ରର ମହିଳାମାନଙ୍କଠାରୁ ଢେର ଆଗୁଆ । ଭାରତୀୟ ସଂସଦ ତଥା ରାଜ୍ୟ ବିଧାନସଭା ଇତିହାସରେ ମହିଳାମାନଙ୍କ ନେତୃତ୍ୱ ଉଲ୍ଲେଖନୀୟ ହୋଇଥିବା ବେଳେ ପଞ୍ଚାୟତିରାଜ ବ୍ୟବସ୍ଥାରେ ମଧ୍ୟ ମହିଳାମାନଙ୍କ ଭାଗିଦାରୀରେ ଯଥେଷ୍ଟ ବୃଦ୍ଧି ପାଇଛି । ସମ୍ପ୍ରତି ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱାଧୀନ ରାଜ୍ୟ ସରକାରଙ୍କ ଦ୍ୱାରା ପଞ୍ଚାୟତିରାଜ ବ୍ୟବସ୍ଥା ଏବଂ ମ୍ୟୁନିସିପାଲିଟିରେ ମହିଳାମାନଙ୍କର ୫୦ ପ୍ରତିଶତ ସଂରକ୍ଷଣ ବ୍ୟବସ୍ଥା, ନାରୀ ସଶକ୍ତିକରଣ ଦିଗରେ ଏକ ଯୁଗାନ୍ତକାରୀ ପଦକ୍ଷେପ ଏବଂ ମାଇଲଖୁଣ୍ଟ ସଦୃଶ୍ୟ ସାବ୍ୟସ୍ତ ହୋଇଛି । ଏଥିସହିତ ମହିଳାମାନେ ଡାକ୍ତରୀ, ଇଞ୍ଜିନିୟରିଂ, ଅଧ୍ୟାପନା, କ୍ରୀଡ଼ା, ପ୍ରଶାସନିକ ସେବା, ପୋଲିସ ସେବା, ଓକିଲାତି ଏବଂ ବିଭିନ୍ନ ଘରୋଇ ଶିଳ୍ପ ଉଦ୍ୟୋଗ ଆଦି ପ୍ରତିଷ୍ଠା କ୍ଷେତ୍ରରେ ଉତ୍କର୍ଷତା ପ୍ରତିପାଦନ କରିବା ସହ ଓଡ଼ିଶାର ସାମାଜିକ ବ୍ୟବସ୍ଥାରେ ନିଜସ୍ୱ ଛାପ ସୃଷ୍ଟି କରିପାରିଛନ୍ତି ।

ତେବେ ପରିସଂଖ୍ୟାନ ଦୃଷ୍ଟିରୁ ମହିଳା ସଶକ୍ତିକରଣ ବେଶ ଉତ୍ସାହଜନକ ପ୍ରତୀୟମାନ ହେଉଥିଲେ ହେଁ ସାମଗ୍ରିକ ଭାବରେ ବିଚାର କଲେ ବାସ୍ତବରେ ମହିଳା ଓ ପୁରୁଷଙ୍କ ମଧ୍ୟରେ ଅନେକ ତାରତମ୍ୟ ପରିଲକ୍ଷିତ ହୁଏ, ଯାହାକୁ ସହଜରେ ଅଣଦେଖା କରାଯାଇ ପାରିବ ନାହିଁ । ମନେହୁଏ, ସମାଜରେ ଅସଲ କ୍ଷମତାର କେନ୍ଦ୍ରବିନ୍ଦୁ ଯେପରି ପୁରୁଷଙ୍କ ହାତରେ ରହିଛି । ତେଣୁ ମହିଳାମାନଙ୍କୁ ଯଥାର୍ଥରେ ନିଜକୁ ଶକ୍ତିଶାଳୀ ପ୍ରତିପାଦିତ କରିବାକୁ ହେଲେ ସେମାନଙ୍କୁ ସରକାରଙ୍କ ପକ୍ଷରୁ ମିଳୁଥିବା ସୁଯୋଗ ସୁବିଧା ଓ କ୍ଷମତାର ସୁବିନିଯୋଗ କରିବାକୁ ପଡିବ ।

ସାମ୍ପ୍ରତିକ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାରେ ମହିଳାମାନେ ଅଣସଂଗଠିତ କ୍ଷେତ୍ରରେ ବହୁଳ ଭାବରେ ନିୟୋଜିତ

ହୋଇଥାଆନ୍ତି । ଯେକୌଣସି ରାଜ୍ୟ ବା ରାଷ୍ଟ୍ରରେ ମୋଟ ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ହେଉଛନ୍ତି ମହିଳା । ତେଣୁ ରାଷ୍ଟ୍ରର ଅର୍ଥନୈତିକ ଉନ୍ନତି କ୍ଷେତ୍ରରେ ମହିଳାମାନଙ୍କର ଉପଯୁକ୍ତ ଭାଗିଦାରୀତା ଗୁରୁତ୍ୱପୂର୍ଣ୍ଣ ଅଟେ । ବିଭିନ୍ନ ଅର୍ଥନୈତିକ କାର୍ଯ୍ୟ କ୍ଷେତ୍ରରେ ମହିଳାମାନଙ୍କୁ ସାମିଲ କରାଯାଇ ପାରିଲେ ସେମାନଙ୍କର ଉତ୍ପାଦିକା ଶକ୍ତିକୁ ବିନିଯୋଗ କରି ଦେଶ ବା ରାଜ୍ୟର ସମୁଦାୟ ଘରୋଇ ଉତ୍ପାଦନ ବହୁ ଗୁଣରେ ବୃଦ୍ଧି ପାଇବ ଏବଂ ଦେଶର ଅର୍ଥନୈତିକ ଅଗ୍ରଗତି ହୋଇ ପାରିବ। ଏକ ସର୍ଭେ ରିପୋର୍ଟ ଅନୁଯାୟୀ ଯେଉଁସବୁ କମ୍ପାନୀ ପରିଚାଳନାରେ ମହିଳାମାନଙ୍କ ସଂଖ୍ୟା ଅଧିକ ରହିଛି, ସେସବୁ ଉଦ୍ୟୋଗଗୁଡିକ ବ୍ୟବସାୟିକ ଦୃଷ୍ଟିକୋଣରୁ ଅନ୍ୟ କମ୍ପାନୀଗୁଡିକଠାରୁ ଆଗୁଆ ରହିଛନ୍ତି ବୋଲି ପ୍ରମାଣିତ ହୋଇଛି । ଏତଦ୍‌ବ୍ୟତୀତ ସମାଜରୁ ଅର୍ଥନୈତିକ ବୈଷମ୍ୟ ଏବଂ ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ମହିଳାମାନଙ୍କୁ ଉତ୍ପାଦନ ଏବଂ ଅର୍ଥନୈତିକ କ୍ଷେତ୍ରରେ ଅଧିକରୁ ଅଧିକ ସାମିଲ ହେବାକୁ ପଡିବ ।

ତେଣୁ ଏସବୁକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ମହିଳା ସଶକ୍ତିକରଣ ଏବଂ ମହିଳା ଉଦ୍ୟୋଗ ପ୍ରତିଷ୍ଠା ନିମନ୍ତେ ସ୍ୱତନ୍ତ୍ର ଯୋଜନା ପ୍ରଣୟନ କରିଛନ୍ତି । ସାଧାରଣତଃ ମହିଳାମାନେ କୃଷି କ୍ଷେତ୍ରରେ ବହୁଳ ଭାବରେ ନିୟୋଜିତ ହେଉଥିବା ଦେଖିବାକୁ ମିଳେ । ପୁରୁଷମାନେ ଜମିରେ ହଳ କରୁଥିବା ବେଳେ ମହିଳା ଶ୍ରମିକମାନେ ବିହନ ବୁଣିବା, ପୋତିବା, ଘାସ ବାଛିବା ଏବଂ ଶସ୍ୟ ଅମଳ କରିବା କାର୍ଯ୍ୟ କରିଥାନ୍ତି । ରାଜ୍ୟରେ ୧୯୮୧ ମସିହାରେ ମୋଟ ଶ୍ରମଜୀବୀଙ୍କ ମଧ୍ୟରୁ ମହିଳାମାନଙ୍କ ସଂଖ୍ୟା ୪୨.୭୫ ପ୍ରତିଶତ ଥିବାବେଳେ ୧୯୯୧ ମସିହାରେ ଏହା ବୃଦ୍ଧି ପାଇ ୪୭.୦୭ ପ୍ରତିଶତ ହୋଇଥିଲା ଏବଂ ୨୦୧୧ ମସିହାରେ ଏହା ୭୦.୭୧ ପ୍ରତିଶତକୁ ବୃଦ୍ଧି ପାଇଛି । ସେହିପରି ୨୦୧୧ ମସିହା ପରିସଂଖ୍ୟାନ ଅନୁଯାୟୀ ଗ୍ରାମାଞ୍ଚଳ ମହିଳା ଶ୍ରମିକମାନଙ୍କ ହାର ୭୬.୨ ପ୍ରତିଶତ ଥିବାବେଳେ ସହରାଞ୍ଚଳରେ ଏହା ୧୧.୫ ପ୍ରତିଶତ ଥିଲା।

ଓଡ଼ିଶାର କୃଷି କ୍ଷେତ୍ରରେ ମହିଳାମାନଙ୍କ ଭାଗିଦାରୀ ଅଧିକ ଥିବାବେଳେ ଶିଳ୍ପ ଉଦ୍ୟୋଗ କ୍ଷେତ୍ରରେ ସେମାନଙ୍କର ଭାଗିଦାରୀ ବୃଦ୍ଧି ସହିତ ନୂତନ ଉଦ୍ୟୋଗ ପ୍ରତିଷ୍ଠା ନିମନ୍ତେ ରାଜ୍ୟ ସରକାରଙ୍କ ତରଫରୁ ବିଭିନ୍ନ ପ୍ରକାରର ପ୍ରୋତ୍ସାହନ ଯୋଗାଇ ଦିଆଯାଉଛି । ବୈଷୟିକ ମହିଳା ଉଦ୍ୟୋଗୀମାନଙ୍କୁ ଅଣୁ, କ୍ଷୁଦ୍ର ଏବଂ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ପୁଞ୍ଜି ନିବେଶ କ୍ଷେତ୍ରରେ ସ୍ୱତନ୍ତ୍ର ରିହାତିର ବ୍ୟବସ୍ଥା ପ୍ରଦାନ କରାଯାଉଛି । ଏଥିସହିତ ମହିଳା ଉଦ୍ୟୋଗୀମାନଙ୍କ ନିମନ୍ତେ ଅତିରିକ୍ତ ୨ବର୍ଷ ପର୍ଯ୍ୟନ୍ତ ଭାଟ୍‌ରେ ପ୍ରୋତ୍ସାହନ ଦିଆଯାଉଛି । ମହିଳା ଉଦ୍ୟୋଗ ପ୍ରତିଷ୍ଠା କ୍ଷେତ୍ରରେ ବ୍ୟାପକ ସଚେତନତା ଏବଂ ସକାରାତ୍ମକ ଦୃଷ୍ଟିଭଙ୍ଗୀ ଗଢି ତୋଳିବା ନିମନ୍ତେ ଚଳିତବର୍ଷ ନୂଆଦିଲ୍ଲୀଠାରେ ନଭେମ୍ବର ୧୪ ତାରିଖଠାରୁ ଅନୁଷ୍ଠିତ ହେଉଥିବା ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା–୨୦୧୪ ମସିହାର ବିଷୟବସ୍ତୁ 'ମହିଳା ଉଦ୍ୟୋକ୍ତା' ରଖାଯାଇଛି । ଏହାଦ୍ୱାରା ଭାରତବର୍ଷ ତଥା ଓଡ଼ିଶାରେ ଅଧିକରୁ ଅଧିକ ମହିଳାମାନଙ୍କୁ ଉଦ୍ୟୋଗ ପ୍ରତିଷ୍ଠା କ୍ଷେତ୍ରରେ ଅନୁପ୍ରାଣିତ କରିବ ବୋଲି ଆଶା କରାଯାଏ ।

ଏଥିସହିତ ଅର୍ଥନୈତିକ କ୍ଷେତ୍ରରେ ମହିଳାମାନଙ୍କ ଭାଗିଦାରୀ ବୃଦ୍ଧି କରି ରାଜ୍ୟର ସାମଗ୍ରିକ ଉତ୍ପାଦନ ବଢାଇବା ସହିତ ସେମାନଙ୍କୁ ଆର୍ଥିକ ଦୃଷ୍ଟିରୁ ସ୍ୱାବଲମ୍ବୀ କରାଇବା ଲକ୍ଷ୍ୟରେ ବର୍ତ୍ତମାନର ରାଜ୍ୟ ସରକାର ୨୦୦୧ ମସିହାରୁ ରାଜ୍ୟରେ ମିଶନ ଶକ୍ତି ଯୋଜନାର ଶୁଭାରମ୍ଭ କରିଥିଲେ। ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ୨୦୦୧ ମସିହା ମାର୍ଚ୍ଚ ମାସରେ ଏହାର ଶୁଭାରମ୍ଭ କରିବା ଅବସରରେ ସମଗ୍ର ରାଜ୍ୟରେ ୨ଲକ୍ଷ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନର ଲକ୍ଷ୍ୟଧାର୍ଯ୍ୟ କରିଥିଲେ, ଯେପରିକି ରାଜ୍ୟର ସମଗ୍ର ରାଜସ୍ୱ ଗ୍ରାମ ଏଥିରେ ସାମିଲ ହୋଇ ପାରିବ । ଉଦ୍ଦେଶ୍ୟ ଥିଲା ଗ୍ରାମାଞ୍ଚଳର ମହିଳାମାନେ ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରି ନିଜସ୍ୱ ସଂଚୟ ଏବଂ ବିଭିନ୍ନ ବ୍ୟାଙ୍କରୁ ଋଣ ସଂଗ୍ରହ କରି ଉଦ୍ୟୋଗ ଓ ବ୍ୟବସାୟ ପ୍ରତିଷ୍ଠା କରି ପାରିବେ । ଏହାଦ୍ୱାରା ସେମାନେ ଗ୍ରାମାଞ୍ଚଳର ତଥା ରାଜ୍ୟର ଅର୍ଥନୈତିକ କ୍ଷେତ୍ରରେ ଭାଗିଦାରୀ ହେବା ସହିତ ନିଜକୁ ନିୟୋଜିତ କରି ବିଭିନ୍ନ ଦ୍ରବ୍ୟ ଉତ୍ପାଦନରେ ସହାୟକ ହୋଇ ପାରିବେ । ଏହି ପ୍ରକ୍ରିୟାରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟାମାନେ ଆର୍ଥିକ ଲାଭ ପାଇବା ସହିତ ସ୍ୱାବଲମ୍ବୀ ହୋଇ ପାରିବେ । ରାଜ୍ୟ ସରକାରଙ୍କ ଦୃଢ ନେତୃତ୍ୱ ଏବଂ ଦିଗ୍‌ଦର୍ଶନ ବଳରେ ୨୦୦୮ ମସିହାରେ 'ମିଶନ ଶକ୍ତି' ଜରିଆରେ ରାଜ୍ୟରେ ୨ଲକ୍ଷ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନର ଧାର୍ଯ୍ୟଲକ୍ଷ୍ୟ ହାସଲ ହୋଇ ପାରିଥିଲା ।

ପରିସଂଖ୍ୟାନ ଅନୁଯାୟୀ ୨୦୧୩ ମସିହା ମାର୍ଚ୍ଚ ମାସ ଶେଷ ସୁଦ୍ଧା ରାଜ୍ୟରେ ମୋଟ ୫ଲକ୍ଷ ୩୬ ହଜାର ୩୭୫ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇଛି । ଏଥିରେ ମୋଟ ୬୪,୩୬,୫୦୦ଜଣ ମହିଳାଙ୍କୁ ସଦସ୍ୟାଭୁକ୍ତ କରାଯାଇଛି । ଏହି ସ୍ୱୟଂ ସହାୟକ ଗୋଷ୍ଠୀମାନେ ୪୧୯.୮୮

କୋଟି ଟଙ୍କା ସଂଚୟ କରିପାରିଥିବା ବେଳେ ବିଭିନ୍ନ ଲଘୁ ଉଦ୍ୟୋଗ ଏବଂ ବ୍ୟବସାୟ କରିବା ନିମନ୍ତେ ବ୍ୟାଙ୍କଗୁଡିକ ପକ୍ଷରୁ ୨୭୮୮.୮୩ କୋଟି ଟଙ୍କା ଋଣ ଆକାରରେ ପ୍ରଦାନ କରାଯାଇଛି । ଏଥିରେ ମୋଟ ୪ଲକ୍ଷ ୫୯ ହଜାର ୫୮୨ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ଋଣ ପ୍ରଦାନ କରାଯାଇଛି। ଏଥିମଧ୍ୟରୁ ୨୯୬,୦୫୮ଟି ଗୋଷ୍ଠୀ ଉଲ୍ଲେଖନୀୟ ସଫଳତା ହାସଲ କରିଥିବାରୁ ସେମାନଙ୍କୁ ପୁନଃ ଋଣ ଯୋଗାଇ ଦିଆଯାଇଛି ।

ରାଜ୍ୟ ସରକାରଙ୍କ ପରିବର୍ତ୍ତିତ ନୀତି ଅନୁଯାୟୀ ରାଜ୍ୟର ମୋଟ ୬୦,୪୩୩ଟି ବିଦ୍ୟାଳୟ ମଧ୍ୟରୁ ୪୩,୬୧୨ଟି ବିଦ୍ୟାଳୟରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମକୁ ସଫଳତାର ସହ ପରିଚାଳନା କରି ଛାତ୍ରଛାତ୍ରୀମାନଙ୍କୁ ମଧ୍ୟାହ୍ନ ଭୋଜନ ପରିବେଷଣ କରୁଛନ୍ତି । ଏତଦ୍‌ବ୍ୟତୀତ ୭୪୮୬ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଗ୍ରାମାଞ୍ଚଳରେ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନର ଦାୟିତ୍ୱ ଦିଆଯାଇଛି, ଯେଉଁମାନେ କିରୋସିନି ସବ୍ ହୋଲସେଲିଙ୍ଗ ଏବଂ ବିକ୍ରୟ ବ୍ୟବସ୍ଥା ହାତକୁ ନେଇଛନ୍ତି । ଗ୍ରାମାଞ୍ଚଳରେ ଥିବା ୧୫୦୦୦ ପୁଷ୍କରିଣୀ ମଧ୍ୟରୁ ୬୪୧୪ଟି ପୁଷ୍କରିଣୀକୁ ଲିଜ୍ ସୂତ୍ରରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ରନ୍ଧନ ଗ୍ୟାସ ବଣ୍ଟନ ଦାୟିତ୍ୱ ମଧ ଦିଆଯାଇଛି । ଏଥିସହିତ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନେ ପାରମ୍ପରିକ ଭାବେ ବଡି, ପାମ୍ପଡ, ଆଚାର, ଫୁଲଝାଡୁ, ଲଘୁ ବନଜାତ ଦ୍ରବ୍ୟ ବିକ୍ରୀ, ମସଲା ଓ ମସଲାଗୁଣ୍ଡ, ଟେରାକୋଟା, ନଡିଆକତାଜାତ ଦ୍ରବ୍ୟ, ଚାନ୍ଦୁଆ, ଶାଳପତ୍ର ଠୋଲା ଓ ପ୍ଲେଟ୍, ବିଭିନ୍ନ କାଠ, ବେତ ଏବଂ ପଥର ନିର୍ମିତ ମୂର୍ତ୍ତି ବାସନ ଆଦି ଉଦ୍ୟୋଗ ବହୁଳ ଭାବରେ ପ୍ରତିଷ୍ଠା କରାଯାଇ ରାଜ୍ୟର ଅର୍ଥନୀତିରେ ପ୍ରମୁଖ ଭୂମିକା ନିର୍ବାହ କରୁଛନ୍ତି ।

ଉପରୋକ୍ତ ପାରମ୍ପରିକ ଦ୍ରବ୍ୟ ବ୍ୟତିରେକେ ଓଡ଼ିଶାରେ ମହିଳା ଉଦ୍ୟୋଗୀମାନଙ୍କର ବିଭିନ୍ନ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା କରିବା ଓ ପରିଚାଳନା କରିବା ଦିଗରେ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ବେଶ ଉତ୍ସାହଜନକ । ଏକ ପରିସଂଖ୍ୟାନ ଅନୁଯାୟୀ ସର୍ବଭାରତୀୟ କ୍ଷେତ୍ରରେ ମୋଟ କ୍ଷୁଦ୍ର ଉଦ୍ୟୋଗ ମଧ୍ୟରୁ କେରଳରେ ମହିଳା ଉଦ୍ୟୋଗୀଙ୍କ ସଂଖ୍ୟା ୧୩.୦୯ ପ୍ରତିଶତ ଥାଇ ଶୀର୍ଷ ସ୍ଥାନ ଅଧିକାର କରିଥିବା ବେଳେ ଓଡ଼ିଶାର ମୋଟ ୩୮୨୩୩ଟି କ୍ଷୁଦ୍ର ଉଦ୍ୟୋଗ ମଧ୍ୟରୁ ୩.୫୯ ପ୍ରତିଶତ ମହିଳା ଉଦ୍ୟୋଗୀଙ୍କ ଦ୍ୱାରା ପରିଚାଳିତ, ଯାହାକି ଅନ୍ୟାନ୍ୟ ବହୁ ରାଜ୍ୟ ତୁଳନାରେ ଅଧିକା । ପରିସଂଖ୍ୟାନ ଦୃଷ୍ଟିରୁ ଏବଂ ପ୍ରତିଶତ ହାରକୁ ବିଚାରକୁ ନିଆଗଲେ ଓଡ଼ିଶା, ରାଜସ୍ଥାନ, ପଞ୍ଜାବ, ଦିଲ୍ଲୀ, ଆସାମ, ମଣିପୁର, ଛତିଶଗଡ, ହରିୟାନା, ଉତ୍ତରାଖଣ୍ଡ, ଝାଡଖଣ୍ଡ, ଜାମ୍ମୁ ଓ କାଶ୍ମୀର, ହିମାଚଳ ପ୍ରଦେଶ, ମିଜୋରାମ, ମେଘାଳୟ, ଚଣ୍ଡୀଗଡ, ପଣ୍ଡିଚେରୀ, ତ୍ରିପୁରା, ଗୋଆ, ନାଗାଲାଣ୍ଡ ଏବଂ ଅରୁଣାଚଳ ପ୍ରଦେଶଠାରୁ ମହିଳା ଉଦ୍ୟୋଗ ପ୍ରତିଷ୍ଠା କ୍ଷେତ୍ରରେ ଯଥେଷ୍ଟ ଆଗୁଆ । ଏ କ୍ଷେତ୍ରରେ କେରଳ ଶୀର୍ଷ ସ୍ଥାନରେ ରହିଥିବା ବେଳେ ତାମିଲନାଡୁ, କର୍ଣ୍ଣାଟକ, ମହାରାଷ୍ଟ୍ର, ଆନ୍ଧ୍ରପ୍ରଦେଶ, ଉତ୍ତରପ୍ରଦେଶ, ପଶ୍ଚିମବଂଗ, ମଧ୍ୟପ୍ରଦେଶ, ଗୁଜରାଟ ଏବଂ ବିହାର ଓଡ଼ିଶାଠାରୁ ଆଗରେ ଥିବାବେଳେ ରାଜ୍ୟ ସରକାରଙ୍କ ନୂତନ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ନୀତି ପ୍ରଣୟନ ଓ ଏଥିରେ ମହିଳାମାନଙ୍କୁ ଉଦ୍ୟୋଗ ପ୍ରତିଷ୍ଠା କ୍ଷେତ୍ରରେ ବିଶେଷ ପ୍ରୋତ୍ସାହନ ଦେବା ଦ୍ୱାରା ଅଧିକରୁ ଅଧିକ ମହିଳା ଉଦ୍ୟୋଗ ପ୍ରତିଷ୍ଠା ହୋଇ ପାରିବ ବୋଲି ଆଶା । ଏଥିସହିତ ନୂତନ ଶିଳ୍ପନୀତି ଏବଂ ଶିଳ୍ପ ଓ ପୁଞ୍ଜି ନିବେଶ କ୍ଷେତ୍ରରେ ଅନୁକୂଳ ବାତାବରଣ ସୃଷ୍ଟି ଏବଂ ବିଶେଷ ପ୍ରୋତ୍ସାହନ ଫଳରେ ଓଡ଼ିଶା ଭାରତବର୍ଷରେ ଉଦ୍ୟୋଗ ପ୍ରତିଷ୍ଠା କ୍ଷେତ୍ରରେ ଏବଂ ଅଗ୍ରଣୀ ରାଜ୍ୟ ଭାବରେ ଉଭା ହୋଇଛି । ଭରପୂର ପ୍ରାକୃତିକ ସମ୍ପଦ, ବିକଶିତ ଓ ଦକ୍ଷ ମାନବସମ୍ବଳ, ପର୍ଯ୍ୟାପ୍ତ ପରିମାଣରେ ଉପଲବ୍ଧ ବିଦ୍ୟୁତ୍ ଶକ୍ତି ଏବଂ ଭିତ୍ତିଭୂମିର ବିକାଶ ନିମନ୍ତେ ରାଜ୍ୟ ସରକାରଙ୍କ ଦ୍ୱାରା ବିଶେଷ ଦୃଷ୍ଟି ଦିଆଯାଉଥିବା ପରିପ୍ରେକ୍ଷୀରେ ରାଜ୍ୟରେ ଅଧିକରୁ ଅଧିକ ଶିଳ୍ପ ପ୍ରତିଷ୍ଠା ହେବାର ସୁଯୋଗ ସୃଷ୍ଟି ହୋଇଛି । ଏଥିସହିତ ରାଜ୍ୟ ସରକାରଙ୍କ 'ନିଯୁକ୍ତି ମିଶନ' ଜରିଆରେ ପ୍ରତିବର୍ଷ ୧.୫ଲକ୍ଷ ଯୁବକ ଓ ଯୁବତୀମାନଙ୍କ ଦକ୍ଷତା ବୃଦ୍ଧି ନିମନ୍ତେ ଆବଶ୍ୟକ ତାଲିମ ପ୍ରଦାନ କରି ସେମାନଙ୍କୁ ଶିଳ୍ପ ଓ ଉଦ୍ୟୋଗ ପ୍ରତିଷ୍ଠା ନିମନ୍ତେ ପ୍ରସ୍ତୁତ କରିବା ପାଇଁ ରାଜ୍ୟ ସରକାର ଲକ୍ଷ୍ୟ ରଖିଛନ୍ତି ।

ଏହି ମର୍ମରେ ରାଜ୍ୟରେ ଅଧିକଠୁ ଅଧିକ ମହିଳା ଉଦ୍ୟୋଗୀ ଶିଳ୍ପ ଓ ବିକାଶ ସଂସ୍ଥାନ ପ୍ରତିଷ୍ଠା କରିବା ଦିଗରେ ଆଗେଇ ଆସି ନିଜର ଓ ଅନ୍ୟମାନଙ୍କ ନିଯୁକ୍ତି ପାଇଁ ସୁଯୋଗ ସୃଷ୍ଟି କରିବା ଆବଶ୍ୟକ । ଶିକ୍ଷା ଓ ତାଲିମ ସମାପ୍ତ ପରେ ସରକାରୀ ଚାକିରି ଅନ୍ୱେଷଣ ନକରି ଉଦ୍ୟୋଗ ପ୍ରତିଷ୍ଠା କରି ପାରିଲେ ନିଜର କର୍ମସଂସ୍ଥାନ ହୋଇପାରିବା ସହିତ ଅନ୍ୟମାନଙ୍କୁ ଫଳପ୍ରଦ ନିଯୁକ୍ତି ଦେଇହେବ । ଏଥିନିମନ୍ତେ ଯୁବକ ଓ ଯୁବତୀମାନଙ୍କ ମଧ୍ୟରେ ମାନସିକତାର ପରିବର୍ତ୍ତନ ଆବଶ୍ୟକ । ରାଜ୍ୟ ସରକାର ମହିଳା ସଶକ୍ତିକରଣକୁ ସର୍ବାଧିକ ଗୁରୁତ୍ୱ ଦେଉଥିବା ଦୃଷ୍ଟିରୁ ମହିଳାମାନଙ୍କ ଉନ୍ନତି ନିମନ୍ତେ ବିଭିନ୍ନ କଲ୍ୟାଣକାରୀ ଯୋଜନା ପ୍ରଣୟନ କରିଛନ୍ତି ।

ଶିକ୍ଷା କ୍ଷେତ୍ରରେ ବାଳିକା ଓ ଛାତ୍ରୀମାନଙ୍କ ନିମନ୍ତେ ଅନେକଗୁଡ଼ିଏ ସ୍ୱତନ୍ତ୍ର ଯୋଜନା ପ୍ରଣୟନ କରାଯାଇ ମହିଳା ସାକ୍ଷରତା ହାରକୁ ଆଶାତୀତ ଭାବରେ ବୃଦ୍ଧି କରାଯାଉଥିବା ବେଳେ ମହିଳାମାନଙ୍କ ସଶକ୍ତିକରଣ ନିମନ୍ତେ 'ବାଳିକା ଓ ମହିଳା ନୀତି' ପ୍ରଣୟନ କରାଯାଇ ନାରୀ ସୁରକ୍ଷା, ସମ୍ମାନ, ଭୂମି ଅଧିକାର ସହିତ ନିମ୍ନ ଆୟ ବର୍ଗର ଘର ଡିହ ନଥିବା ମହିଳାମାନଙ୍କୁ ୪ ଡେସିମିଲ ପରିମିତ ଘର ଡିହ ମାଗଣାରେ ପ୍ରଦାନ ଏବଂ ଭିନ୍ନକ୍ଷମ ମହିଳାଙ୍କ ନିମନ୍ତେ ସ୍ୱତନ୍ତ୍ର ସହାୟତା ପ୍ୟାକେଜ ଯୋଗାଇ ଦିଆଯାଉଛି ।

ଉତ୍ପାଦନ ଓ ଅର୍ଥନୈତିକ କ୍ଷେତ୍ରରେ ମହିଳାମାନଙ୍କର ଭାଗିଦାରୀଙ୍କୁ ବୃଦ୍ଧି କରି ସମାଜରେ ସମାନତା ପ୍ରତିଷ୍ଠା କରିବା ସହିତ ସେମାନଙ୍କର ଉତ୍ପାଦିକା ଶକ୍ତିକୁ ରାଜ୍ୟର ମୋଟ ଉତ୍ପାଦନରେ ସାମିଲ କରାଇବା ଲକ୍ଷ୍ୟ ନେଇ ରାଜ୍ୟ ସରକାର ହାତକୁ ନେଇଥିବା ବିଭିନ୍ନ ଯୋଜନାର ସଫଳ ରୂପାୟନ ନିମନ୍ତେ ଉଭୟ ମହିଳା ଓ ପୁରୁଷମାନଙ୍କ ଆଭିମୁଖ୍ୟରେ ବ୍ୟାପକ ପରିବର୍ତ୍ତନ ଲୋଡ଼ା । ସମାଜରେ ଏକ ବୃହତ୍ତର ଏବଂ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ ନିମନ୍ତେ ମହିଳାମାନେ ଆଗେଇ ଆସିବା ଉଚିତ୍ । ଏଥିନିମନ୍ତେ ସେମାନଙ୍କ ପାଇଁ ଏକ ଅନୁକୂଳ ବାତାବରଣ ଓ ସୁଯୋଗ ସୃଷ୍ଟି କରିବା ଆମ ସମସ୍ତଙ୍କ ନିମନ୍ତେ ଏକ ବିରାଟ ଆହ୍ୱାନ। ସରକାରଙ୍କ ଦ୍ୱାରା ଦୀର୍ଘ ମିଆଦୀ ଯୋଜନା କାର୍ଯ୍ୟକାରୀ ହେଉଥିବା ପରିପ୍ରେକ୍ଷୀରେ ସମସ୍ତଙ୍କର ସମୁଚିତ ବିକାଶ ନିମନ୍ତେ ପ୍ରତି କ୍ଷେତ୍ରରେ ଆନ୍ତରିକ ଉଦ୍ୟମ ହେବା ଆବଶ୍ୟକ । ଏଥିସହିତ ନାରୀ ଓ ପୁରୁଷ ମଧ୍ୟରେ ଥିବା ତାରତମ୍ୟ ଓ ବ୍ୟବଧାନକୁ ଏପରି ସଂକୁଚିତ କରିବାକୁ ପଡିବ ଯେପରି ନାରୀ ଓ ପୁରୁଷ, ସମାଜର ଏକ ଓ ଅଭିନ୍ନ ଅଂଗ ଭାବରେ ବିବେଚିତ ହେବା ସହିତ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ଭାବରେ ପରିଗଣିତ ହେବେ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

## ବନଜାତ ଦ୍ରବ୍ୟର ପ୍ରକୃଷ୍ଟ ବଜାର ସୃଷ୍ଟି ନିମନ୍ତେ ନୂତନ ପଦକ୍ଷେପ

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଅନ୍ତର୍ଗତ ଆଦିବାସୀ ଉନ୍ନୟନ ସମବାୟ ନିଗମ, ଓଡ଼ିଶା ଲିମିଟେଡ଼ ୧୯୬୪ ମସିହାରେ ସ୍ଥାପିତ ହୋଇଥିଲା । ଟି.ଡ଼ି.ସି.ସି.ଓ.ଏଲ୍‌ର ମୁଖ୍ୟ ଉଦ୍ଦେଶ୍ୟ ହେଉଛି, ଜନଜାତିମାନଙ୍କ ଦ୍ୱାରା ସଂଗୃହୀତ ଲଘୁବନଜାତ ଦ୍ରବ୍ୟ, ଉତ୍ପାଦିତ ହେଉଥିବା ବଳକା କୃଷିଜାତ ଦ୍ରବ୍ୟ, ହସ୍ତଶିଳ୍ପ, ହସ୍ତକଳା ଓ ଆଦିବାସୀ ଚିତ୍ରକଳାର ଉପଯୁକ୍ତ ବ୍ୟବସାୟୀକରଣ । ଏହାଦ୍ୱାରା ଜନଜାତିମାନେ ସଂଗ୍ରହ କରୁଥିବା ବିଭିନ୍ନ ଜଙ୍ଗଲଜାତ ଦ୍ରବ୍ୟ ଓ ଆଦିବାସୀ ହସ୍ତଶିଳ୍ପୀମାନେ ସେମାନଙ୍କର ଦ୍ରବ୍ୟର ଉଚିତ୍ ମୂଲ୍ୟ ପାଇପାରିବେ । ଏଥିପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଟ୍ରାଇବାଲ ୱାର୍ଲ୍ଡ଼ ଆଉଟ୍‌ଲେଟ୍ ଖୋଲାଯାଇଛି । ବର୍ତ୍ତମାନ ସୁଦ୍ଧା ଏହିଭଳି ଛଅଟି ଜନଜାତି ଆଉଟ୍‌ଲେଟ୍ ଖୋଲାଯାଇଛି । ୨୦୧୫ ମସିହା ସୁଦ୍ଧା ଆଉ ପାଞ୍ଚଟି ଆଉଟ୍‌ଲେଟ୍ କାର୍ଯ୍ୟକ୍ଷମ ହେବ ।

ନଭେମ୍ବର ୩ ତାରିଖ ପୂର୍ବାହ୍ନରେ ସ୍ଥାନୀୟ ଟି.ଡ଼ି.ସି.ସି.ଓ.ଏଲ୍ ପରିସରରେ ବନଜାତ ଦ୍ରବ୍ୟର ପ୍ରକୃଷ୍ଟ ବଜାର ସୃଷ୍ଟି ନିମନ୍ତେ ନୂତନ ପଦକ୍ଷେପ ସ୍ୱରୂପ 'ଭ୍ରାମ୍ୟମାଣ ଜନଜାତି ଦୁନିଆ' ଭ୍ୟାନ୍‌ର ଆରମ୍ଭ ହୋଇଛି । ଟି.ଡ଼ି.ସି.ସି.ଓ.ଏଲ୍‌ର ପରିଚାଳନା ନିର୍ଦ୍ଦେଶକ ସୁଶାନ୍ତ କୁମାର ନନ୍ଦ ପତାକା ହଲାଇ ଏହି ଭ୍ୟାନ୍‌ର ଶୁଭାରମ୍ଭ କରିଛନ୍ତି । ଏହା ଦ୍ୱାରା ସହରାଞ୍ଚଳ ବାସିନ୍ଦାଙ୍କ ନିକଟରେ ଆଦିବାସୀମାନଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ଦ୍ରବ୍ୟ ସହଜରେ ଉପଲବ୍ଧ ହୋଇପାରିବ । ଭୁବନେଶ୍ୱର ସହର ମଧ୍ୟରେ ଜନଜାତିମାନଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ଜିନିଷକୁ ବିକ୍ରୟ ନିମନ୍ତେ 'ଜନଜାତି ଦୁନିଆ' ଭ୍ୟାନ୍‌ଟିକୁ ଆଦିବାସୀ ଡ଼ିଜାଇନ୍‌ରେ ନିର୍ମାଣ କରାଯାଇଛି । ଏହି ଭ୍ରାମ୍ୟମାଣ ଭ୍ୟାନ୍‌ଟି ଭୁବନେଶ୍ୱର ସହର ମଧ୍ୟରେ ପରିକ୍ରମା କରିବ । ଏହି ଭ୍ୟାନ୍‌ଟି ବିଶେଷତଃ ରେଳଷ୍ଟେସନ, ବସ୍‌ଷ୍ଟାଣ୍ଡ, ଖଣ୍ଡଗିରି, ଉଦୟଗିରି, ହୋଟେଲ, ଆପାର୍ଟମେଣ୍ଟ, ମଲ୍ ଆଦି ସ୍ଥାନଗୁଡ଼ିକରେ ରଖାଯିବାର ପ୍ରସ୍ତାବ ରହିଛି ବୋଲି ଟି.ଡ଼ି.ସି.ସି.ଓ.ଏଲ୍‌ର ଏମ୍.ଡ଼ି. ସୁଶାନ୍ତ ନନ୍ଦ ପ୍ରକାଶ କରିଛନ୍ତି । ପରବର୍ତ୍ତୀ ସମୟରେ ଏହି ଭ୍ୟାନ୍‌କୁ ପୁରୀ, କଟକ, ଢ଼େଙ୍କାନାଳ ଆଦି ସ୍ଥାନରେ ଜନସାଧାରଣଙ୍କ ନିମନ୍ତେ ରଖାଯିବ । ପ୍ରକାଶଥାଉ କି, ଏହି ଭ୍ରାମ୍ୟମାଣ 'ଜନଜାତି ଦୁନିଆ' ଭ୍ୟାନ୍‌ରେ ପ୍ରାୟ ୫୦୦ ପ୍ରକାରର ବିଭିନ୍ନ ଜିନିଷ ପ୍ରଦର୍ଶନ ସହ ବିକ୍ରି ନିମନ୍ତେ ବ୍ୟବସ୍ଥା କରାଯାଇଛି । ଏହି ଭ୍ୟାନ୍‌ଟିରେ ଟି.ଡ଼ି.ସି.ସି.ଓ.ଏଲ୍ ଆଉଟ୍‌ଲେଟ୍‌ଗୁଡ଼ିକରେ ମିଳୁଥିବା ବିଭିନ୍ନ ଦ୍ରବ୍ୟ ସମ୍ବନ୍ଧରେ ଭିଡ଼ିଓ ଏବଂ ଅଡ଼ିଓ ମାଧ୍ୟମରେ ଜନସାଧାରଣଙ୍କୁ ସୂଚନା ଦେବାର ମଧ୍ୟ ବ୍ୟବସ୍ଥା ରହିଛି ।

# କମଳା ପ୍ରସାଦ ଗୋରାପ ଓ କାଳି ପ୍ରସାଦ ଗୋରାପରେ ନୌବାଣିଜ୍ୟ ଚିତ୍ର

ଡକ୍ଟର ସର୍ବେଶ୍ୱର ସେଣ

କଥା ସମ୍ରାଟ ଫକୀର ମୋହନ ସେନାପତି । ତାଙ୍କର ଦୁଇଟି ଚମତ୍କାର ଗଳ୍ପ କମଳା ପ୍ରସାଦ ଗୋରାପ, କାଳି ପ୍ରସାଦ ଗୋରାପ । ଏହି ଦୁଇ ନାମକରଣ କୌଣସି ମାନବ ଅବା ମାନବେତର ଚରିତ୍ରକୁ ନେଇ ହୋଇ ନାହିଁ । ଏଗୁଡ଼ିକ ଅଝାଲ ଟଣା ଦୁଇଟି ବୋଇତର ନାମ । ଏଥିରେ ଫକୀର ମୋହନ ଅତୀତ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ନୌବାଣିଜ୍ୟ ସମ୍ପର୍କିତ ତଥ୍ୟ ପ୍ରଦାନ କରିଛନ୍ତି । ଏତଦ୍‌ଭିନ୍ନ ତାଙ୍କର ବାଲେଶ୍ୱରୀ ପଙ୍ଗା ଲୁଣ, କେତେକ ପ୍ରବନ୍ଧ, ଆତ୍ମ ଜୀବନ ଚରିତରେ ଆମ ନୌବାଣିଜ୍ୟ କୀର୍ତ୍ତି କୃତି ସହିତ ପତନର କାରଣମାନ ଉଲ୍ଲେଖ ରହିଛି । ସମସ୍ତ କଥାବସ୍ତୁ ବାଲେଶ୍ୱର, ବାଲେଶ୍ୱର ବନ୍ଦର କୈନ୍ଦ୍ରିକ ହେଲେ ହେଁ, ସାରା ଦେଶର ଅତୀତ ସାଧବ ପୁଅଙ୍କ ନୌବାଣିଜ୍ୟ ଚିତ୍ର ଏଥିରୁ ଅନୁମେୟ ।

ଫକୀର ମୋହନଙ୍କ ବାଲ୍ୟକାଳ ଅଝାଲ ସିଲେଇରେ କଟିଛି । ବାପା, ବଡ଼ବାପାଙ୍କ ସିରସ୍ତାରେ କାର୍ଯ୍ୟରତ ଗୁମାସ୍ତାଙ୍କ ସହାୟକ ଭାବେ ସେ କାର୍ଯ୍ୟ କରିଥିଲେ । ବଳକା ସମୟରେ ଅଝାଲ ସିଲେଇ କରୁଥିଲେ । ଫଳରେ ବାଲେଶ୍ୱର ବନ୍ଦରରେ ଜାହାଜାତି କାର୍ଯ୍ୟରେ ତାଙ୍କର ଥିଲା ପ୍ରଚୁର ଅନୁଭୂତି । ଏହି ବାସ୍ତବ ଅନୁଭୂତିର ସଫଳ ରୂପାୟନ ଘଟିଛି ତାଙ୍କ ସାହିତ୍ୟ କୃତିରେ । ସେଗୁଡ଼ିକରୁ ଶୈଳ୍ପିକ ଦିଗକୁ ବାଦ୍ ଦେଲେ ବିଷୟବସ୍ତୁ ନିତାନ୍ତ ବାସ୍ତବ । ଅତୀତ ଓଡ଼ିଶାର ସ୍ୱର୍ଦ୍ଧିତ ନୌବାଣିଜ୍ୟର କଥା ଓ ବ୍ୟଥାକୁ ନେଇ କମଳା ପ୍ରସାଦ ଗୋରାପ, କାଳିପ୍ରସାଦ ଗୋରାପ ଗତିଶୀଳ ।

ସପ୍ତଦଶ ଶତାବ୍ଦୀ ଓଡ଼ିଶା ନୌବାଣିଜ୍ୟ ଇତିହାସର ସୁବର୍ଣ୍ଣଯୁଗ । ଏହି ସମୟରେ ବାଲେଶ୍ୱର ବନ୍ଦର ଥିଲା ସଦାସର୍ବଦା ଗହଳଚହଳ । ବାଣିଜ୍ୟ ବ୍ୟବସାୟରେ ଏହାର ଖ୍ୟାତି ଥିଲା ଦିଗନ୍ତ ବିସ୍ତାରୀ । ଏହି କଥାକୁ ଫକୀର ମୋହନ ମଧ୍ୟ ଚମତ୍କାର ଢଙ୍ଗରେ କହିଛନ୍ତି, କ୍ଷୀରାବ୍ଧି ତନୟା ରମା । ଲକ୍ଷ୍ମୀଙ୍କର ପିତୃଭବନ ସମୁଦ୍ର କୂଳରେ ଅବସ୍ଥିତ ଥିବାରୁ ଚିରଦିନ ଲକ୍ଷ୍ମୀ ଏହି ଜିଲ୍ଲାରେ ବିରାଜିତା ଥିଲେ । ସମୁଦ୍ର କୂଳବର୍ତ୍ତୀ ବାଣିଜ୍ୟ ସ୍ଥାନର ନାମ ବନ୍ଦର । ଏଥିପାଇଁ ଏହାର ନାମ ବନ୍ଦର ବାଲେଶ୍ୱର । ତିନିଶତ ବର୍ଷ ପୂର୍ବେ ଓଲନ୍ଦାଜ, ଫରାସୀ, ଦିନେମାର ଓ ଇଂରେଜ ବଣିକମାନେ ଏଠାରେ ଦୋକାନ ମେଲି ଥିଲେ । ବାଲେଶ୍ୱର ଥିଲା ଲକ୍ଷ୍ମୀମନ୍ତ, ଦୁଇଚାରି ବର୍ଷ ଅକାଳ ପଡ଼ିଲେ ସମ୍ଭାଳି ନେଉଥିଲା । କ୍ରମେ ଲବଣ ପ୍ରୋକ୍ତାନ ଉଠିଲା (୧୮୬୧) । ବାଲେଶ୍ୱର ଯେମିତି ହେଲା ଲକ୍ଷ୍ମୀଛଡ଼ା । ବିଦେଶୀୟ ମାରୱାଡ଼ି, କଚ୍ଛୀ, ଭାଟିଆ, ନାଖୋଦାମାନେ ଏହି ଜିଲ୍ଲାକୁ ମାଡ଼ି ବସିଲେ । ବିଚରା ଓଡ଼ିଆଙ୍କ ହାତରେ ଧନ କାହିଁ ଯେ ଧନବନ୍ତ ବିଦେଶୀଙ୍କ ସହ ଟକ୍କର ଦେବେ ? ଲବଣ ଆମଦାନୀ ରପ୍ତାନି ବନ୍ଦ ହେଲା । ଏଣିକି ବାଲେଶ୍ୱର ଆପଣାର ଅତୀତ ନୌବାଣିଜ୍ୟ ସ୍ମୃତିଚାରଣ କରିବା ହିଁ ସାର ହେଲା ।

ଅତୀତ ଓଡ଼ିଶା ନୌବାଣିଜ୍ୟ ଚାଲୁଥିଲା ଅଝାଲଟଣା ବୋଇତରେ । ପରବର୍ତ୍ତୀ ପର୍ଯ୍ୟାୟରେ ଏହାକୁ ଜାହାଜ କୁହାଗଲା । କମଳା ପ୍ରସାଦ ଗୋରାପ, କାଳି ପ୍ରସାଦ ଗୋରାପ ଦୁଇଟି ବଡ଼ ବୋଇତ । ପ୍ରଥମେ କୌଣସି ଦେବାଦେବୀଙ୍କ ନାମରେ ପ୍ରସାଦ ଯୋଗ ପୂର୍ବକ ତତ୍କାଳୀନ ବୋଇତର ନାମକରଣ କରାଯାଉଥିଲା । ଦୁଇଡୁଲିଆ ବଡ଼ ଜାହାଜର ନାମ ଗୋରାପ । ଏକଡୁଲିଆ ସାନ ଜାହାଜର ନାମ ଶ୍ଳୋପା, ସବା ସାନର ନାମ ଦୁଉଣୀ । ଖଣ୍ଡେ ଖଣ୍ଡେ ଗୋରାପ ଆଠ ଦଶ ହଜାର ମହଣ ପର୍ଯ୍ୟନ୍ତ ମାଲ ବୋଝେଇ ନିଏ । ଗୋଟେ ଜାହାଜ ପାଇଁ ଦଶ କୋଡ଼ିଏ କର୍ମଚାରୀ । ଚାଳକର ଉପାଧି ମାଝି, ତା'ର ସହକାରୀ ତେଣ୍ଡଲ, ଅନ୍ୟସବୁ କର୍ମଚାରୀଙ୍କ ଉପାଧି ଖଲାସୀ । ଫକୀର ମୋହନଙ୍କ ସମକାଳରେ ଜାହାଜ କର୍ମଚାରୀ ପ୍ରାୟ ସାଢ଼େ ଚାରି ହଜାର । ଏହାବାଦ୍ ଜାହାଜ ନିର୍ମାଣକାରୀ ବଢ଼େଇ, କମାର, କଳାପିଠିଆ, ସଢ଼ସିଲାଇ, ଦରଜି, ଅନ୍ୟାନ୍ୟ ଚାକର ସଂଖ୍ୟାକୁ ମିଶାଇଲେ ପ୍ରାୟ ସାଢ଼େ ପାଞ୍ଚ ହଜାର ।

ଗୋଟିଏ କଥାରେ କହିଲେ ସେସମୟରେ ଅନ୍ତର୍ବାଣିଜ୍ୟ ଅବା ବହିର୍ବାଣିଜ୍ୟ ଥିଲା ବାଲେଶ୍ୱରବାସୀଙ୍କ ହାତରେ। ବାଲେଶ୍ୱରୀ ଜାହାଜମାନ ଗୋପାଳପୁର, ବିଶାଖାପଟ୍ଟନ, ମାନ୍ଦ୍ରାଜ୍, ରେଙ୍ଗୁନ ତଥା ଅନ୍ୟାନ୍ୟ ଦ୍ୱୀପକୁ ଗତାୟତ କରୁଥିଲା।

ଜାହାଜ ଚାଳକ ମାଝିର ଏକ ସ୍ୱତନ୍ତ୍ର ସୁବିଧା ଥିଲା। ସମୁଦାୟ ବୋଝେଇ ମାଲ୍‌ର ଦୁଇପଣି ପାଲ ବିନା ଭଡ଼ାରେ ମାଝି ନିଏ। ଗୋଟେ ଜାହାଜରେ ଆଠହଜାର ମହଣ ବୋଝେଇ ହେଲେ, ହଜାରେ ମହଣ ମାଝିର। ଏହାକୁ ବିକ୍ରିବଟା କରି ସେ ଟଙ୍କା ରଖେ। ମାଲ୍ କିଣିବା ପାଇଁ ବାବୁଘର ଚାକର ବାକର, ବୋହୂ, ଝିଅ, ଗୁମାସ୍ତା, ପାଇକ ସେମାନଙ୍କ ଇଚ୍ଛା ମୁତାବକ ମାଝିକୁ ଟଙ୍କା ଉଧାର ଦିଅନ୍ତି, ଏହାର ନାମ ବଟମ୍। ପ୍ରାପ୍ତ ଲାଭରୁ ବଟମ୍‌ଦାର ଅର୍ଦ୍ଧେକ ପାଏ ମାତ୍ର ଦୁର୍ଭାଗ୍ୟବଶତଃ ଜାହାଜ ଦୁର୍ଘଟଣାଗ୍ରସ୍ତ ହେଲେ ମାଝିର ଭେଳା ବୁଡ଼େ। ତାହା ହିଁ ଘଟିଛି କମଳା ପ୍ରସାଦ ଗୋରାପରେ। ଜାହାଜ ମାନ୍ଦ୍ରାଜରୁ ଫେରୁଥିବା ବେଳେ ଝଡ଼ବାତ୍ୟାରେ ପଡ଼ିଯାଇଛି। ବଞ୍ଚିଛି ସ୍ୱରୂପ ମାଝି। ମାତ୍ର ବଟମ୍ ସୁଝି ନପାରି ସେ ଏବେ ନିଃସ୍ୱ। ଏମିତି ଦରିଆପାରି ବେପାର ବଣିଜ, ବଟମ ଟଙ୍କାରେ ଜିନିଷ ବିକ୍ରି ଖର୍ଦ୍ଦିକୁ ନେଇ ମାଝିମାନଙ୍କର ଉଠପଡ଼ ସଂସାର।

କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ମୌସୁମୀ ସମ୍ପୂର୍ଣ୍ଣ ଘରବାହୁଡ଼ା। ପାଣିପାଗ ଅନୁକୂଳ, ପାଲଟଣା ଜାହାଜମାନଙ୍କର ସମୁଦ୍ର ଯାତ୍ରା। କମଳା ପ୍ରସାଦ ଗୋରାପରେ ସବୁ ସଜବାଜ, ଆଜି ପୂର୍ଣ୍ଣିମା– ସହଜରେ କଟାଳ ଜୁଆର। ଦିନ ବାରଟା ବେଳେ ଜୁଆର ଭାଟିବ। ଠିକ୍ ସେତିକିବେଳେ ପଡ଼ିଛି ଅମୃତଯୋଗ। ଆଜି ଢେର ଜାହାଜ ଗଡ଼ି ଯିବାର ସ୍ଥିର ହୋଇଛି। ଚାରିପାଞ୍ଚ ଦିନ ହେଲା ମାଝି, ଖଲାସୀମାନେ କାମରେ ଭାରି ଲାଗିଯାଇଥିଲେ। ଜାହାଜକୁ ସଫାସୁତରା କରି ଡୋଲ ଉପରେ ସବର, ଗଭର, ଟଭର – ପଛକୁ କଲମି ଡୋଲ ଆଉ ବରଗାମାନ ଟେକିଦେଇ ଶେଡ଼ଗୁଡ଼ାଇ ଠିକ୍ କରି ରଖି ଦେଇଛନ୍ତି। ଆଗରେ ପଛରେ ଡୋଲର, ସବା ଉପରେ ଲାଲ, ଧଳା, ହଳଦିଆ ପତାକାମାନ ଫର୍‌ଫର୍ ଉଡୁଛି। ପୁରୋହିତ ପୂଜାର୍ଚ୍ଚନା ଶେଷ ପୂର୍ବକ ମାଲିକ, ମାଝି ମୁଣ୍ଡରେ ଚନ୍ଦନ, ବେକରେ ଫୁଲମାଳ ପକାଇ ଦିଅନ୍ତି। ବାବୁ ପୁରୋହିତ ଜ୍ୟୋତିଷ ପାଞ୍ଜିର ଯୋଗଲଗ୍ନ ଅନୁଯାୟୀ ଅମୃତ, ମାହେନ୍ଦ୍ର ବେଳାରେ ଦିଅନ୍ତି ଇସାରା। ଜାହାଜ ଯାତ୍ରାର ଶୁଭାରମ୍ଭ ହୁଏ। ମାଝି ଡାକେ, ହା–ବିସ୍। ତେଣ୍ଡଲ ଡାକେ ଓ–ହୋଓ, ଖଲାସୀ ଡାକନ୍ତି ଓ–ହୋଓ, ଏମିତି ଡାକ, ପୀର୍ କୋରାମଡ୍, ଏଁ–ୟାଁ, ସାହେବ ସଲାମତ, ଏଁ–ୟାଁ, କାମେ ଖବର, ଏଁ–ୟାଁ, ତା' ପରେ ବାଉରଯନ୍ତ୍ର ପଖା ବାଡ଼ରେ ଏକ ଝିଙ୍କାରେ ଲଙ୍ଗର ପାଣି ଉପରକୁ ଉଠେ। ଚାଲେ ଜାହାଜ ସମୁଦ୍ର ଆଡ଼େ। ସବୁ ଶୁଭ କାମନା ସତ୍ତ୍ୱେ ସମୟେ ସମୟେ ଅଦିନିଆ ଝଡ଼ତୋଫାନ, ବର୍ଷା, ଜାହାଜର ପ୍ରଭୁତ କ୍ଷତି କରେ। ଏହି କଥାଟି ବର୍ଣ୍ଣିତ କମଳା ପ୍ରସାଦ ଗୋରାପରେ, ଅଧରାତି ସରିକି ତୋଫାନ ଆଉ ବୃଷ୍ଟି ପ୍ରବଳ ହେଲା। ଚାରିଜଣ ଲୋକେ ଜାହାଜ ସମ୍ଭାଳି ରଖି ପାରିଲେ ନାହିଁ। ଗୋଟିଏ ବାଲିଚଡ଼ାରେ ଲାଗିଗଲା। ସକାଳୁ ସକାଳୁ ମାଝି ଖଲାସୀ ଧାଇଁଛନ୍ତି– ଜାହାଜ ଅବସ୍ଥା ଦେଖି ମୁଣ୍ଡ ବାଡ଼େଇ ଦେଲେ। ଅନୁକୂଳ ବାଣିଜ୍ୟ ବାୟୁ ସହିତ ପ୍ରକୃତିର ହସ ସରସ ପଣରୁ ଆମ ସାଧବପୁଅମାନଙ୍କର ନୌବାଣିଜ୍ୟ ସୁରୁଖୁରୁରେ ଚାଲେ। ସମୁଦ୍ରରେ ଲୁଚି ରହିଥାଏ ବାଲିଚଡ଼ା, ଛୋଟବଡ଼ ପାହାଡ଼, ତାହା ବୋଇତମାନଙ୍କ ପାଇଁ ବିପଦ ସୃଷ୍ଟି କରେ। କମଳା ପ୍ରସାଦ ଗୋରାପ ମଧ୍ୟ ଏକ ଆସନ୍ନ ଦୁର୍ଘଟଣାରୁ ବର୍ତ୍ତିଥିଲା। ପୂର୍ଣ୍ଣିମା ତିଥି କଟାଳ ଜୁଆର ପହଞ୍ଚିବାରୁ ଚଡ଼ା ଜଳପୂର୍ଣ୍ଣ ହେଲା। ପୁନଶ୍ଚ ଜାହାଜଟି ଭାସିଭାସି ଆସିଥିଲା। ସମ୍ପ୍ରତି ଜ୍ଞାନବିଜ୍ଞାନର ଅଗ୍ରଗତି, ଦରିଆ କୂଳରେ ବତୀଘରମାନ ଜାହାଜମାନଙ୍କୁ ସତର୍କ ସୂଚନା ଦେଇଥାଏ, ଯାହା ସେସମୟରେ ନଥିଲା।

ସାଧବପୁଅମାନଙ୍କ ନୌବାଣିଜ୍ୟରେ ପ୍ରଧାନ ବାଧକ ଥିଲେ ଜଳଦସ୍ୟୁ। ବିଶେଷ କରି ଫିରିଙ୍ଗି, ପର୍ତ୍ତୁଗୀଜମାନେ ଏ କାମରେ ଧୁରନ୍ଧର। ଜଳଦସ୍ୟୁମାନଙ୍କର ଜାହାଜ ଲୁଟି ଘଟଣାଟି କାଳିପ୍ରସାଦ ଗୋରାପର କଥାବସ୍ତୁ। ବାବୁ ଶିବ ପ୍ରସାଦ ଚୌଧୁରୀଙ୍କ ଏହି ସୁନ୍ଦର ଜାହାଜଟିକୁ କବଳିତ କରିଛନ୍ତି ଜଳଦସ୍ୟୁ। ସେମାନଙ୍କଠାରୁ ମୁକୁଳି ଆସିଥିଲା ହଗୁ ତେଣ୍ଡଲ। ତା'ରି ବୟାନ ଥିଲା, ସେ ଦେଶରେ ଗୋଟିଏ ରାଜା ଅଛି, ସେଇଟା ଭଲ ରାଜା ନୁହେଁ। ଡକାୟତ ରାଜା। ସେଟାର ନାମ ଗଞ୍ଜେଇନିଶ (Ganjalish) ଆହୁରି ବି ସେ ରାଜାର କେତେଜଣ ସର୍ଦ୍ଦାର ଅଛନ୍ତି, କାପ୍ତାନ ମାଲପିକା (Captain Malpica), ଜୁକରହିଆ (Jucarte), ହଗ୍ରୀବୁସ୍ (Haxary Buse), ମେଷ୍ଟର ଦିକସ୍ତ (Mister Decsta), ଆହୁରି ବି ସର୍ଦ୍ଦାର ଅଛନ୍ତି, ଫିରିଙ୍ଗି ପାଇକ, ତୁର୍କ ପାଇକ ବି ଢେର ଅଛନ୍ତି । ଏକଥା ଜାହାଜ ମାଲିକମାନଙ୍କୁ ବ୍ୟଥା ଦେଇଛି। କାରଣ ଚୋରଗୁଡ଼ାକ ଫିରିଙ୍ଗି ଜାତି। ସେମାନଙ୍କ ସହ କାରବାର ମନା। ଏଥିସହିତ ଡଚ୍, ଓଲନ୍ଦାଜଙ୍କ ସହ କାରବାର ବନ୍ଦ ହେଲେ ସେମାନେ ଆପେ ପଳାଇବେ। ଆଉ କେତେକ ମହାଜନ ମତ ଦିଅନ୍ତି, ଫିରିଙ୍ଗିମାନେ ଜାତିରେ ମ୍ଳେଚ୍ଛ ସିନା– ମଦ ମାଉଁସ

ଖାଆନ୍ତି। ଯେତେହେଲେ ସେମାନେ ଲକ୍ଷ୍ମୀପୁତ୍ର। ମୋଟା କାରବାର। ରଗଡ଼ ଝଗଡ଼ ନାହିଁ। କଥା ପଦକେ ସଉଦା। ସେମାନଙ୍କୁ ଦେଶରୁ ତଡ଼ିଦେଲେ, ସମସ୍ତେ ମିଳିମିଶି ଦରିଆରେ ଡକାୟତି କରିବେ– ଏମିତି ନାନା ଚିନ୍ତା, ଦୁଃଶ୍ଚିନ୍ତା, ତଥାପି ସବୁ ବାଧା ପ୍ରତିବନ୍ଧକ ସତ୍ତ୍ୱେ ଓଡ଼ିଶାର ସାଧବପୁଅମାନେ ଦରିଆ ପାରି ବେପାରରେ ଆପଣାର କୃତିତ୍ୱ ପ୍ରଦର୍ଶନ କରିଯାଇଛନ୍ତି ।

ସମୟର ଅବଲୀଳା କ୍ରମେ ନୌବାଣିଜ୍ୟ ବିଲୁପ୍ତ ହେବାକୁ ଲାଗିଲା । ଏହାର କାରଣ ମଧ୍ୟ ଫକୀର ମୋହନ ଦେଇଛନ୍ତି, ବାଲେଶ୍ୱର ବନ୍ଦରର ଦୁର୍ଭାଗ୍ୟର ମୂଳ କାରଣ ନିମକ ପୋକ୍ତାନ ବନ୍ଦ। ଦ୍ୱିତୀୟ କାରଣ ଷ୍ଟିମର ଓ ରେଳ କାରବାର। ତୃତୀୟ କାରଣ ଅବା ସବିଶେଷ କାରଣ, ବାଲେଶ୍ୱର ନଦୀମୁହାଣ ପୋତା ପଡ଼ିଲାଣି, ଅମାବାସ୍ୟା ପୂର୍ଣ୍ଣିମା କଟାଳ ଜୁଆର ସମୟ ବିନା ଅନ୍ୟ ସମୟରେ ଜାହାଜ ସମୁଦ୍ରରୁ ନଦୀ ଭିତରକୁ ପଶିପାରୁ ନାହିଁ। ଇଷ୍ଟଇଣ୍ଡିଆ କମ୍ପାନୀର ଚତୁରତା ତଥା ସେମାନଙ୍କ ଯନ୍ତ୍ରଚାଳିତ ଜାହାଜ ନିକଟରେ ସମୟକ୍ରମେ ଅନ୍ୟାନ୍ୟ ୟୁରୋପୀୟମାନଙ୍କ ପରି ଓଡ଼ିଶା ପାଲଟଣା ଜାହାଜମାନେ ବିଲୟ ଭଜିଲେ।

ଆମ ଅତୀତ ନୌବାଣିଜ୍ୟ ଇତିହାସରେ ବାଲେଶ୍ୱର ବନ୍ଦରର ସ୍ଥାନ ଅତୀବ ଗୁରୁତ୍ୱପୂର୍ଣ୍ଣ। ଓଡ଼ିଶାର ଥାନ, ଝିନ, ଟସର ବସ୍ତ୍ର ୟୁରୋପୀୟ ବଣିକମାନଙ୍କ ମୁଖ୍ୟ ଆକର୍ଷଣ ଥିଲା। ସେ ଦେଶର ଅପ୍ସରାମାନେ ଆପଣା ଆପଣା ସୌନ୍ଦର୍ଯ୍ୟର ପରାକାଷ୍ଠା ପ୍ରଦର୍ଶନ ପାଇଁ ସୂକ୍ଷ୍ମ ବସ୍ତ୍ର ସକାଶେ ବାଲେଶ୍ୱରକୁ ଚାହିଁ ବସୁଥିଲେ। ଫଳତଃ ବାଲେଶ୍ୱରର ଆର୍ଥନୀତିକ ମାନଦଣ୍ଡ ଥିଲା ଖୁବ୍ ସୁଦୃଢ଼। ଏକଥାକୁ ଫକୀର ମୋହନ ବର୍ଣ୍ଣନା କରିଛନ୍ତି।

ଆସିଛି କାର୍ତ୍ତିକ ପୂର୍ଣ୍ଣିମା, ଜାଗାଜାଗା ଦରିଆ କୂଳରେ ବାଲିଯାତ୍ରା। କଟକ ମହାନଦୀ ଗଡ଼ଗଡ଼ିଆ ଘାଟରେ ଅନୁକୂଳ ବ୍ୟବସ୍ଥା। ଚଳଚଞ୍ଚଳ ଓଡ଼ିଶାର ଜନଜୀବନ। ଇତିହାସର ପୁନଃ ରୋମନ୍ଥନ। ଓଡ଼ିଆ ସାଧବପୁଅର କୀର୍ତ୍ତି ଖ୍ୟାତିକୁ ସ୍ମରଣ କରି ଦେଶବାସୀ ବିଭୋର। ମାତ୍ର କାହିଁଗଲା ଗୌରବାବହ ଅତୀତ ! ଆଜି କାର୍ତ୍ତିକ ପୂର୍ଣ୍ଣିମାରେ ବାଲେଶ୍ୱର ନିଶ୍ଚଳ, ନିସ୍ପନ୍ଦ, ଚିରକାଳ କାହାରି ସମାନ ଯାଏନାହିଁ। ଉତ୍ଥାନ ପତନ ଜଗତର ନିୟମ। ସ୍ମରଣାତୀତ କାଳ ପୂର୍ବରୁ ଯେଉଁ ବାଲେଶ୍ୱରର ନଦୀକୂଳ ସହସ୍ର ସହସ୍ର ଲୋକ ଯୋଗେ କୋଳାହଳମୟ ଥିଲା, ଆଜି ଯାଇ ଦେଖନ୍ତୁ, ସେ ସ୍ଥାନ ନିରବ, ନିର୍ଜନ, ଅରଣ୍ୟମୟ, ଶ୍ମଶାନତୁଲ୍ୟ ନିସ୍ତବ୍ଧ। ନଦୀଟା ମଧ୍ୟ ପୋତିହେଇ ପଡ଼ିଲାଣି। ବାଲେଶ୍ୱରବାସୀ ଜାହାଜୀ ଧନୀ ଓ ବଣିକମାନେ ଉଚ୍ଛନ୍ନ ହୋଇଯିବାରୁ ବାଲେଶ୍ୱରବାସୀଙ୍କ ହାତରୁ ଦେଶର ଆଭ୍ୟନ୍ତରିକ ଏବଂ ବୈଦେଶିକ ସମସ୍ତ ପ୍ରକାର ବାଣିଜ୍ୟ ଦେଶବାସୀଙ୍କ ହସ୍ତଛଡ଼ା ହୋଇଯାଇଛି। ଏହା ହିଁ ଥିଲା ଫକୀର ମୋହନଙ୍କ ଖେଦୋକ୍ତି। କେବଳ ବାଲେଶ୍ୱର ନୁହେଁ, ସାରା ରାଜ୍ୟର ଅତୀତ ନୌବାଣିଜ୍ୟ ପାଇଁ ଏହା ପ୍ରଯୁଜ୍ୟ। ଆଜି କାର୍ତ୍ତିକ ପୂର୍ଣ୍ଣିମାରେ ଅଝାଲଟଣା ବୋଇତ ନୁହେଁ ମାଳମାଳ କାଗଜ, ସୋଲଡଙ୍ଗା ଭାସୁଛି ନଦୀ, ସମୁଦ୍ରରେ। ସତରେ,

କର୍ପୂର ଯାଇ କନା ଥିଲେ ପଡ଼ି
କନା ଧରିଥାଏ କର୍ପୂର ସ୍ମୃତି
କନା ଯାଇ ନାଶ ରହିଲେ ପାଉଁଶ
ତା' ଦେଖି କିଏ ସେ ଧରିବ ଧୃତି।

ତଥାପି, ଫିସନ ପରି ଏ ସନ ମଧ୍ୟ ଓଡ଼ିଆଣୀର ବୋଇତ ବନ୍ଦାଣ, ଦିନଟିଏ ହେଲେ ବି ଶୁଭୁଛି 'ଆ–କା–ମା–ବୈ', ଉଖାରି ଦେଉଛି ଆମ ଅତୀତ ନୌବାଣିଜ୍ୟ ସ୍ମୃତିକୁ।

ସା/ପୋ: ପୁରୁଷୋତ୍ତମପୁର
ଭାୟା– କରିଲୋପାଟଣା
କେନ୍ଦ୍ରାପଡ଼ା, ପିନ–୭୫୪୨୨୩



# ଓଡିଶା ରାଜ୍ୟ ବାଳିକା ଓ ମହିଳା ନୀତି, ୨୦୧୪ ଓ ଏହାର ବୈଶିଷ୍ଟ୍ୟ

ମୂଳ ଇଂରାଜୀ: ଅମ୍ରିତା ପଟେଲ୍
ଅନୁବାଦ: ବିକ୍ରମ ମହାରଣା

**ରା**ଜ୍ୟର ବାଳିକା ଓ ମହିଳାମାନଙ୍କ ସାମଗ୍ରିକ ବିକାଶ ନିମନ୍ତେ ଏକ ବିସ୍ତୃତ ଓ ସକ୍ରିୟ କାର୍ଯ୍ୟଧାରା ଆରମ୍ଭ କରିବା ଦିଗରେ ଓଡିଶା ରାଜ୍ୟ ବାଳିକା ଓ ମହିଳା ନୀତି ପ୍ରଣୟନ କରାଯାଇଛି। ଏହା ଏପରି ଏକ ଦସ୍ତାବିଜ୍, ଯାହା ସକ୍ରିୟ ଓ ନିର୍ଦ୍ଦିଷ୍ଟ ସମସ୍ୟାଗୁଡିକୁ ଉପସ୍ଥାପିତ କରିବା ସହ ଏକ ନିର୍ଦ୍ଧାରିତ ପଦ୍ଧତି ମଧ୍ୟ ଦେଇ ସମସ୍ୟାର ସଠିକ୍ ସମାଧାନ କରିପାରିବ । ଏହି ନୀତି ବିଭିନ୍ନ ମତାମତକୁ ଗୁରୁତ୍ୱ ଦେଇ ଡେସ୍କ ସମୀକ୍ଷା, ଜାତୀୟ ଏବଂ ଅନ୍ୟ ରାଜ୍ୟର ମହିଳା ଓ ବାଳିକାମାନଙ୍କ ନିମନ୍ତେ ପ୍ରଣୀତ ହୋଇଥିବା ନୀତିର ସମୀକ୍ଷା ତଥା ଏହାର ବିଭିନ୍ନ ଅଂଶୀଦାରମାନଙ୍କ ସହ ପର୍ଯ୍ୟାୟଗତ ଆଲୋଚନାର ନିର୍ଯ୍ୟାସରୁ ପ୍ରଣୟନ କରାଯାଇଛି । ଜୀବନ ଚକ୍ର ଆଧାରରେ ବାଳିକା ଓ ମହିଳାମାନଙ୍କ ଜନ୍ମ, ଶୈଶବ, କୈଶୋର, ବୟସ୍କ ଓ ବୃଦ୍ଧାବସ୍ଥାର ଉଦ୍‌ବେଗକୁ ଦୃଷ୍ଟିରେ ଏହି ନୀତି ପ୍ରଣୀତ ହୋଇଛି ।

ଏହି ନୀତି ଜୀବନଧାରଣ, ସ୍ୱାସ୍ଥ୍ୟ ଏବଂ ପୁଷ୍ଟିସାଧନ, ଶିକ୍ଷା, ଜୀବିକା ( ଆନୁଷ୍ଠାନିକ ଏବଂ ଅଣଆନୁଷ୍ଠାନିକ କ୍ଷେତ୍ରରେ ଥିବା ମହିଳାଙ୍କ ନିମନ୍ତେ ) ସଂପତ୍ତି ମାଲିକାନା, ନିଷ୍ପତ୍ତି ଗ୍ରହଣ, ଅଂଶଗ୍ରହଣ ଏବଂ ରାଜନୈତିକ ପ୍ରତିନିଧିତ୍ୱ, ସୁରକ୍ଷା, ନିରାପତ୍ତା ତଥା ସ୍ୱତନ୍ତ୍ର ଆବଶ୍ୟକତା ଅନୁଭବ କରୁଥିବା ବାଳିକା ଓ ମହିଳାମାନଙ୍କୁ ଦୃଷ୍ଟିରେ ରଖି ୭ଗୋଟି କେନ୍ଦ୍ରିତ ବିଭାଗରେ ବିଭକ୍ତ ହୋଇଛି ।

ବାଳିକା ଏବଂ ମହିଳାମାନଙ୍କ ନିମନ୍ତେ ବର୍ଦ୍ଧିତ ସାମର୍ଥ୍ୟ ସୃଷ୍ଟି ଏବଂ ବଳିଷ୍ଠ ଆନୁଷ୍ଠାନିକ ଓ ନ୍ୟାୟିକ କାର୍ଯ୍ୟଧାରା ଉପରେ ଏହି ନୀତି ଗୁରୁତ୍ୱ ଦିଏ । ବିଭିନ୍ନ ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ବ୍ୟବସ୍ଥା ଦ୍ୱାରା ଯୋଜନା ପ୍ରଣୟନ ଓ ରୂପାୟନ ପାଇଁ ଏହି ନୀତି ଏକ ବିସ୍ତାରିତ ପଥପ୍ରଦର୍ଶକ ପଦ୍ଧତି ରୂପେ କାର୍ଯ୍ୟ କରିବ, ଯଦ୍ୱାରା ବାଳିକା ଓ ମହିଳାମାନଙ୍କ ଆବଶ୍ୟକତା ସୁସଂହତ ଭାବେ ପୂରଣ ହେବ ।

ଏହି ନୀତି ପ୍ରଣୟନ ସମୟରେ ନୀତି ନିର୍ଦ୍ଧାରଣର ମାନକ ରୂପେ ୧୯ ଗୋଟି ରାଜ୍ୟସ୍ତରୀୟ ଏବଂ ୨୮ ଗୋଟି ଜିଲ୍ଲାସ୍ତରୀୟ ଏପରି ୪୭ଗୋଟି ପରାମର୍ଶକୁ ଆଧାର କରାଯାଇଥିଲା । ଏହି ପରାମର୍ଶଗୁଡିକର ସିଦ୍ଧାନ୍ତକୁ ଆଧାର କରିବା ସହ ଯୋଜନାର ଡେସ୍କ ସମୀକ୍ଷା, ରାଜ୍ୟରେ ଥିବା ବାଳିକା ଓ ମହିଳାମାନଙ୍କ ନିମନ୍ତେ ଗୃହୀତ କାର୍ଯ୍ୟକ୍ରମ ଓ ପଦକ୍ଷେପ ଏବଂ ସ୍ୱାସ୍ଥ୍ୟ ଓ ସାମାଜିକ ବିକାଶ ସୂଚକାଙ୍କଗୁଡିକରେ ଥିବା ଲିଙ୍ଗଗତ ପ୍ରଭେଦକୁ ଦୃଷ୍ଟିରେ ରଖି ଏହି ନୀତିର ମୂଳଭିତ୍ତି ପ୍ରସ୍ତୁତ କରାଯାଇଥିଲା । ଚିଠା ନୀତି ପ୍ରଣୟନ କାଳରେ ଏହା ବିଭିନ୍ନ ବିଭାଗୀୟ ପରାମର୍ଶ ଲୋଡିଥିଲା ଏବଂ ପ୍ରତ୍ୟେକ ବିଭାଗ ଆଧାରରେ ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଦେଶାବଳୀ ଉପରେ ତଥ୍ୟ ଆହରଣ ସକାଶେ ବୈଠକମାନ ଅନୁଷ୍ଠିତ ହୋଇଥିଲା । ଏହି ନୀତି ନିର୍ଦ୍ଧାରଣର ପ୍ରକ୍ରିୟାରେ ନାଗରିକ ସମାଜ ସଂଗଠନର ସଦସ୍ୟ, କ୍ଷେତ୍ରୀୟ ଅଭିଜ୍ଞ ବ୍ୟକ୍ତିବିଶେଷ, ଶିକ୍ଷିତ ବର୍ଗ, ଛାତ୍ରଛାତ୍ରୀ, ସରକାରୀ କ୍ଷେତ୍ରୀୟ ଅଧିକାରୀଙ୍କର ଅବଦାନ ରହିଥିଲା ।

୭ ଗୋଟି କେନ୍ଦ୍ରୀୟ ବିଭାଗରେ ଥିବା କେତେକ ପ୍ରମୁଖ ସୁପାରିଶ:

**୧. ଜୀବନଧାରଣ, ସ୍ୱାସ୍ଥ୍ୟ ଏବଂ ପୁଷ୍ଟି ସାଧନ**

(କ) ନିର୍ଦ୍ଦିଷ୍ଟ କ୍ଷେତ୍ରୀୟ କାର୍ଯ୍ୟାନୁଷ୍ଠାନଭିତ୍ତିକ ଯୋଜନାଗୁଡିକ ଜରିଆରେ ପ୍ରତିକୂଳ ଶିଶୁ ଲିଙ୍ଗଗତ ଅନୁପାତର ସମାଧାନ, ପ୍ରି କନ୍‌ସେପ୍‌ସନ୍ ଏଣ୍ଡ ପ୍ରି ନାଟାଲ୍ ଡାୟାଗ୍ନୋଷ୍ଟିକ୍ ଟେକ୍‌ନିକ୍ୟୁଜ୍ (ପିସିପିଏନ୍‌ଡିଟି) ଆକ୍ଟ, ୧୯୯୪ର ସକ୍ରିୟ

କାର୍ଯ୍ୟକାରିତା ଏବଂ ବାଳିକାମାନଙ୍କର ମୂଲ୍ୟବୋଧଭିତ୍ତିକ ଉନ୍ନତି ଦିଗରେ ଗୋଷ୍ଠୀଗତ ପ୍ରଚେଷ୍ଟା ସକାଶେ ପ୍ରଚାରପ୍ରସାର ଆୟୋଜନ ।

(ଖ) ଯୌନଗତ, ଗର୍ଭଧାରଣ କାଳୀନ ସ୍ୱାସ୍ଥ୍ୟ ସମସ୍ୟା, ବୟସ ପୂର୍ବରୁ ବିବାହ ଏବଂ ଗର୍ଭଧାରଣକୁ ରୋକିବା ଦିଗରେ ନିର୍ଦ୍ଦିଷ୍ଟ ପଦକ୍ଷେପ ସହ ସୁବିଧାସୁଯୋଗ ଓ ଗୋଷ୍ଠୀଭିତ୍ତିକ କାର୍ଯ୍ୟକ୍ରମ ଜରିଆରେ କିଶୋରୀମାନଙ୍କ ସ୍ୱାସ୍ଥ୍ୟର ଉନ୍ନତି ।

(ଗ) ଆଦୃତି ଲାଭ କରିଥିବା 'ମମତା' ଯୋଜନାରେ କନ୍ୟା ସନ୍ତାନ ଜନ୍ମକୁ ପ୍ରୋତ୍ସାହିତ କରିବା ଓ ପିଭିଟିଜି ଅନ୍ତର୍ଗତ ଆଦିବାସୀ ହିତାଧିକାରୀଙ୍କ ନିମନ୍ତେ ବିବାହର ପ୍ରଥମ ପାଂଚ ବର୍ଷ ମଧ୍ୟରେ ଦୁଇଟି ସନ୍ତାନ ଜନ୍ମ ପାଇଁ ଥିବା ସର୍ତ୍ତ କୋହଳ ।

(ଘ) ନିରାପଦ ପ୍ରସବ ବିଶେଷକରି ଅନୁନ୍ନତ ଅଂଚଳରେ ଏପରି ନିରାପଦ ପ୍ରସବ ପାଇଁ ଅନୁକୂଳ ପରିବେଶ ସୃଷ୍ଟି ଦ୍ୱାରା ମାତୃ ମୃତ୍ୟୁହାର ହ୍ରାସ । ମାତୃ ମୃତ୍ୟୁ ଜନିତ ତଥ୍ୟ ସଂପର୍କରେ ବାଧ୍ୟବାଧକତା ।

(ଚ) ସଚେତନତା ସୃଷ୍ଟି ଉଦ୍ଦେଶ୍ୟରେ କାର୍ଯ୍ୟକ୍ରମର ପରିଚାଳନା ଓ ପରିସର ବୃଦ୍ଧି, ଗର୍ଭାଶୟ ଏବଂ ସ୍ତନ କର୍କଟର ପ୍ରତିଷେଧକ ଏବଂ ଚିକିତ୍ସା ବ୍ୟବସ୍ଥା।

**୨. ଶିକ୍ଷା**

(କ) ପ୍ରତି ବ୍ଲକ୍‌ରେ କସ୍ତୁର୍‌ବା ଗାନ୍ଧୀ ବାଳିକା ବିଦ୍ୟାଳୟ ପରି ଆବାସିକ ସୁବିଧା ପ୍ରଦାନ ଏବଂ ପୂର୍ବରୁ ଥିବା କେଜିବିଭିଗୁଡିକର ସାମର୍ଥ୍ୟ ବୃଦ୍ଧି କରି ମାଧ୍ୟମିକ ସ୍ତରକୁ ଉନ୍ନୀତ କରିବା ।

(ଖ) ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକସ୍ତରୀୟ ସମସ୍ତ ବାଳିକାମାନଙ୍କୁ ପ୍ରୋତ୍ସାହନ ମୂଳକ ମାଗଣା ପାଠ୍ୟପୁସ୍ତକ ବଣ୍ଟନ, ୟୁନିଫର୍ମ ପ୍ରଦାନ, ନିରାପଦ ଗମନାଗମନର ସୁବିଧା ଏବଂ ବିଦ୍ୟାଳୟ ଦେୟ ଛାଡ ।

(ଗ) ଉଚ୍ଚ ମାଧ୍ୟମିକ ଓ ତତ୍‌ପରବର୍ତ୍ତୀ ଶିକ୍ଷା ଲାଭ ନିମନ୍ତେ ବାଳିକାମାନଙ୍କୁ ମେଧା ଏବଂ ଆର୍ଥିକ ଦୃଷ୍ଟିକୋଣରୁ ବିଚାର କରି ଛାତ୍ରବୃତ୍ତି ପ୍ରଦାନ ।

(ଘ) ଜୁନିଅର୍ କଲେଜ, ଡିଗ୍ରୀ କଲେଜ ଓ ବିଶ୍ୱ ବିଦ୍ୟାଳୟର ବାଳିକାମାନଙ୍କ ନିମନ୍ତେ ପାଂଚ ବର୍ଷ ପାଇଁ ଆବାସିକ ସୁବିଧା ବୃଦ୍ଧି ।

(ଚ) ଉପଯୁକ୍ତ ପଦକ୍ଷେପ ଜରିଆରେ ଶିକ୍ଷାନୁଷ୍ଠାନଗୁଡିକର ବାଳିକା ଓ ମହିଳାମାନଙ୍କର ନିରାପତ୍ତାକୁ ସୁନିଶ୍ଚିତ କରିବା ଲକ୍ଷ୍ୟରେ ଏକ ବଳିଷ୍ଠ ନୀତି ପ୍ରଣୟନ । ଅଧିକ ସଂଖ୍ୟକ ଛାତ୍ରୀ ଥିବା ଶିକ୍ଷାନୁଷ୍ଠାନ ପରିସରରେ ପର୍ଯ୍ୟାପ୍ତ ମହିଳା କର୍ମଚାରୀ ମୁତୟନ । ମାନ୍ୟକ୍ରମର ଉନ୍ନତି, ଛାତ୍ରୀଙ୍କ ଉଦ୍ଦେଶ୍ୟରେ ଗ୍ରହଣ କରାଯାଇଥିବା ସମସ୍ତ ପଦକ୍ଷେପଗୁଡିକର ତଦାରଖ ଏବଂ କୌଣସି ଅସଦାଚରଣ ସଂପର୍କରେ ଜଣାଇବା ।

**୩. ଜୀବିକା**

**ଆନୁଷ୍ଠାନିକ କ୍ଷେତ୍ର**

(କ) ମହିଳାମାନଙ୍କର କୌଶଳ ବୃଦ୍ଧି ଏବଂ ନିଯୁକ୍ତି ସମ୍ବନ୍ଧିତ ପ୍ରଶିକ୍ଷଣକୁ ପ୍ରୋତ୍ସାହିତ ଓ ତଦାରଖ କରିବା ନିମନ୍ତେ ଓଡିଶା ରାଜ୍ୟ ନିଯୁକ୍ତି ମିଶନ୍‌ରେ ଏକ ଉତ୍ସର୍ଗୀକୃତ ୟୁନିଟ୍ ସ୍ଥାପନ ।

(ଖ) ସରଳ କାର୍ଯ୍ୟ ନିର୍ଘଣ୍ଟ, ମାତୃତ୍ୱ ସମୟର ସହାୟତା, ଶିଶୁ ଯତ୍ନ ସହାୟତା, ସ୍ୱତନ୍ତ୍ର ଶୌଚାଳୟ ଏବଂ କାର୍ଯ୍ୟକ୍ଷେତ୍ରରେ ନର୍ସରୀ ସୁବିଧା ଦିଗରେ କାର୍ଯ୍ୟକ୍ରମ ।

**ଅଣଆନୁଷ୍ଠାନିକ କ୍ଷେତ୍ର**

(ଗ) ମହିଳା କୃଷକମାନଙ୍କୁ ପ୍ରୋତ୍ସାହିତ କରିବା । ମହିଳା କୃଷକମାନଙ୍କ ପାଇଁ କୃଷି ସଂପର୍କିତ କାର୍ଯ୍ୟକଳାପରେ ବୈଷୟିକ କୌଶଳ ବୃଦ୍ଧି ଉଦ୍ଦେଶ୍ୟରେ ସଂପୂର୍ଣ୍ଣ ପ୍ରାଧାନ୍ୟ ।

(ଘ) ଶସ୍ୟ, ଆର୍ଥିକ ସେବା, ପ୍ରଯୁକ୍ତି, ନିବେଶ ତଥା ବଜାର ସମ୍ବନ୍ଧରେ ମହିଳା କୃଷକମାନଙ୍କୁ ବ୍ୟାପକ ସହାୟତା ଯୋଗାଇଦେବା ନିମନ୍ତେ ଏକକ ବାତାୟନ ବ୍ୟବସ୍ଥା ।

(ଚ) ମହିଳାମାନଙ୍କ ପାଇଁ ଗୋଷ୍ଠୀକେନ୍ଦ୍ରିତ ଜୀବିକା ଉପରେ ଗୁରୁତ୍ୱ ଦେଇ ଗ୍ରାମ ସ୍ତରରେ ସମ୍ବଳ କେନ୍ଦ୍ରକୁ ପ୍ରୋତ୍ସାହନ ।

(ଛ) ବାଳିକା ଓ ମହିଳାମାନଙ୍କର ଅଧିକାର ଓ ସେମାନଙ୍କୁ ପ୍ରଦତ୍ତ ବିଶେଷ ସୁବିଧାର ସୁରକ୍ଷା ନିମନ୍ତେ ସେମାନଙ୍କୁ ସକ୍ଷମ କରିବା ନିମନ୍ତେ ଉତ୍ସ ଓ ଲକ୍ଷ୍ୟ ସ୍ଥଳରେ ବାହ୍ୟ ସହାୟତା ପ୍ରଦାନ ।

(ଜ) କୁଟୀର ଶିଳ୍ପ, ପାରମ୍ପରିକ ହସ୍ତଶିଳ୍ପ, ହସ୍ତତନ୍ତ ଏବଂ କୌଳିକ ବୃତ୍ତି ଯଥା ମତ୍ସ୍ୟଚାଷ, ଗୋପାଳନ, କୁକୁଡା ପାଳନ ଓ ପ୍ରାଣୀସଂପଦ କ୍ଷେତ୍ରରେ ତାଲିମ୍ ଏବଂ ବୈଷୟିକ କୌଶଳକୁ ପ୍ରୋତ୍ସାହନ ।

**୪. ସଂପତ୍ତି ମାଲିକାନା**

(କ) ମହିଳାମାନଙ୍କ ନାମରେ କ୍ରୟ ହୋଇଥିବା ଜମି ଓ ଗୃହ ଏବଂ ସେମାନଙ୍କୁ ଉପହାର ସ୍ୱରୂପ ପ୍ରଦତ୍ତ ସ୍ଥାବର ସଂପତ୍ତି ଦଲିଲ୍‌ର ପଂଜୀକରଣ ନିମନ୍ତେ ଷ୍ଟାମ୍ପ ଶୁଳ୍କ ହ୍ରାସ ।

(ଖ) ଗ୍ରାମାଚଂଳରେ ଥିବା ସ୍ୱଳ୍ପ ରୋଜଗାରୀ ମହିଳା, ଯେଉଁମାନଙ୍କର କୌଣସି ଗୃହ/ଫ୍ଲାଟ୍ କିମ୍ବା ବାସୋପଯୋଗୀ ଜମି ନଥିବ ଅଥବା ସେମାନେ (କ) ୪୫ ବର୍ଷ କିମ୍ବା ତଦୂର୍ଦ୍ଧ୍ୱ ବୟସର ବିଧବା, ଅବିବାହିତା, କୋର୍ଟ କିମ୍ବା ପ୍ରଥା ଜନିତ ଆଦେଶ ବଳରେ ଛାଡପତ୍ର ପାଇଥିବା ମହିଳା କିମ୍ବା ସ୍ୱାମୀ ପରିତ୍ୟକ୍ତା ହୋଇଥିବେ କିମ୍ବା (ଖ) ଯେଉଁ ମହିଳାମାନେ ୩୦ ବର୍ଷ ବା ତଦୂର୍ଦ୍ଧ୍ୱ ବୟସର ଏବଂ ସେମାନେ ୪୦ ପ୍ରତିଶତରୁ ଅଧିକ ଭିନ୍ନକ୍ଷମ ହୋଇଥିବେ ସେମାନଙ୍କୁ ୪ ଡିସିମିଲ୍ ପରିମିତ ବାସୋପଯୋଗୀ ଜମି ପ୍ରଦାନ ।

(ଗ) ଉତ୍ପାଦନଭିତ୍ତିକ କାର୍ଯ୍ୟକ୍ରମ ନିମନ୍ତେ ମହିଳା ଗୋଷ୍ଠୀଙ୍କ କ୍ଷେତ୍ରରେ ସ୍ୱଳ୍ପ ଦରରେ ଜମି ଲିଜ୍ ବୃଦ୍ଧି । କୃଷି ଓ ଉଦ୍ୟାନକୃଷି ଉଦ୍ଦେଶ୍ୟରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ସାମୟିକ ଲିଜ୍ ଆଧାରରେ ଚାଷୋପଯୋଗୀ ସରକାରୀ ଜମି ପ୍ରଦାନ ।

**୫. ନିଷ୍ପତ୍ତି ଗ୍ରହଣ, ଅଂଶ ଗ୍ରହଣ ଏବଂ ରାଜନୈତିକ ପ୍ରତିନିଧିତ୍ୱ**

(କ) ଗ୍ରାମ ପଂଚାୟତ ସ୍ତରରେ ମହିଳା ସଭା ଗଠନ, ପଲ୍ଲୀ ଏବଂ ଗ୍ରାମସଭାରେ ଅଂଶଗ୍ରହଣକୁ ପ୍ରୋତ୍ସାହନ । ବାଳିକା ଓ ମହିଳାମାନଙ୍କ ସମସ୍ୟା ତଥା ସେମାନଙ୍କ କ୍ଷେତ୍ରରେ ଘଟୁଥିବା ହିଂସାକୁ ପଲ୍ଲୀସଭା ଓ ଗ୍ରାମସଭାରେ ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ରୂପେ ଉପସ୍ଥାପନ ।

(ଖ) ମହିଳାମାନଙ୍କୁ ପ୍ରତ୍ୟକ୍ଷ ଅଂଶଗ୍ରହଣରୁ ବଂଚିତ କରୁଥିବା କୌଣସି ବାଛବିଚାରକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ଓଡିଶା ଗ୍ରାମ ପଂଚାୟତ, ପଂଚାୟତ ସମିତି ଏବଂ ଜିଲ୍ଲା ପରିଷଦ ନିୟମ ଓ ଅଧିନିୟମରେ ଯଥୋଚିତ ସଂଶୋଧନ ।

(ଗ) ବିଭିନ୍ନ କ୍ଷେତ୍ରରେ ସଫଳତା ହାସଲ କରିଥିବା ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ୱୀକୃତି ଓ ପୁରସ୍କାରର ପ୍ରଚଳନ ।

**୬. ନିରାପତ୍ତା ଓ ସୁରକ୍ଷା**

(କ) ବାଳିକା ଓ ମହିଳାମାନଙ୍କ କ୍ଷେତ୍ରରେ ଘଟୁଥିବା ହିଂସା ସଂପର୍କିତ ଘଟଣାଗୁଡିକର ନିରାକରଣ, ତଦାରଖ ଏବଂ ତଦନ୍ତ ସହାୟତା ନିମନ୍ତେ ଗୃହ ବିଭାଗରେ ଏକ କ୍ଷମତାପ୍ରାପ୍ତ ୟୁନିଟ୍ ପ୍ରତିଷ୍ଠା ।

(ଖ) ହିଂସାର ଶୀକାର ହୋଇଥିବା ମହିଳାମାନଙ୍କ ନିମନ୍ତେ ୱାନ୍ ଷ୍ଟପ୍ କ୍ରାଇସିସ୍ ସେଣ୍ଟର୍ ପ୍ରତିଷ୍ଠା । ବାଳିକା ଓ ମହିଳାମାନଙ୍କ ବିରୁଦ୍ଧରେ ଘଟୁଥିବା ଯୌନ ଉତ୍ପୀଡନ କ୍ଷେତ୍ରରେ ଉପଯୁକ୍ତ ଚିକିତ୍ସା–ନ୍ୟାୟିକ ସହାୟତା ନିମନ୍ତେ ଉଚିତ୍ ପଦକ୍ଷେପ ଗ୍ରହଣ ।

(ଗ) ହିଂସାର ଶୀକାର ହୋଇଥିବା ବାଳିକା ଓ ମହିଳାମାନଙ୍କୁ ପରାମର୍ଶ ଦେବା, ସେମାନଙ୍କର ନିରାପଦ ରହଣୀ, ପୁନଃ ଥଇଥାନ ଏବଂ ସାମାଜିକ ସହାବସ୍ଥାନ ପାଇଁ ତଥା ସେମାନଙ୍କ ସୁରକ୍ଷା ନିମନ୍ତେ ଏକ ଯୋଜନାର ପ୍ରଣୟନ ଓ କାର୍ଯ୍ୟକାରିତା ।

(ଘ) ବିବାହର ସାର୍ବଜନୀନ ପଂଜୀକରଣ ନିମନ୍ତେ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ ।

(ଚ) ହିଂସା ଘଟଣା ଏବଂ ବାଳିକା ଓ ମହିଳା ଚାଲାଣ ସଂପର୍କରେ ଅନୁସନ୍ଧାନ, ତଦାରଖ ଓ ବିବରଣୀ ପ୍ରଦାନ କରିବା ପାଇଁ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଆଇନ୍‌ଗତ ସହାୟତା ଯୋଗାଇ ଦେଉଥିବା କର୍ମୀ ରୂପେ ସାମିଲ୍ କରିବା ଏବଂ ଗୋଷ୍ଠୀସ୍ତରୀୟ ମଂଚ ଗଠନ ନିମନ୍ତେ ପ୍ରୋତ୍ସାହନ ଦେବା ।

**୭. ସ୍ୱତନ୍ତ୍ର ଆବଶ୍ୟକତା ଅନୁଭବ କରୁଥିବା ବାଳିକା ଓ ମହିଳା**

(କ) ଅନାଥ ଶିଶୁ ଓ ପରିତ୍ୟକ୍ତ ବାଳିକାମାନଙ୍କର ଯତ୍ନ, ସୁରକ୍ଷା, ଶିକ୍ଷା ଓ ସାମଗ୍ରିକ ବିକାଶ ନିମନ୍ତେ ସର୍ବାଧିକ ଗୁରୁତ୍ୱ ପ୍ରଦାନ ।

(ଖ) ସ୍ୱତନ୍ତ୍ର ସହାୟତା ଲୋଡୁଥିବା ବାଳିକା ଓ ମହିଳାମାନଙ୍କ ଯଥାଯଥ ନିଯୁକ୍ତି ପାଇଁ ନିଯୁକ୍ତି ସୁଯୋଗ ଥିବା କୌଶଳ ବୃଦ୍ଧି ଓ ପ୍ରଶିକ୍ଷଣ ପାଠ୍ୟକ୍ରମରେ ନାମଲେଖା ନିମନ୍ତେ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ ଏବଂ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରଚଳନ । ଦୁଃଖରେ କାଳାତିପାତ କରୁଥିବା, ବିଭିନ୍ନ ଅନୁଷ୍ଠାନରେ ଥିବା, ପୂର୍ବ ପରିଚିତ ଏବଂ ନ୍ୟାୟ ପାଇଁ ଲଢେଇ କରୁଥିବା ବାଳିକା ଓ ମହିଳାମାନଙ୍କୁ ଏହି କାର୍ଯ୍ୟକ୍ରମରେ ସାମିଲ୍ କରିବା ସହ ସେମାନଙ୍କ ସମସ୍ୟା ସମାଧାନ ସକାଶେ ସ୍ୱତନ୍ତ୍ର ପଦକ୍ଷେପ ।

(ଗ) ଭିନ୍ନକ୍ଷମ ମହିଳା ସାମିଲ୍ ଥିବା ସ୍ୱୟଂ ସହାୟକ ଗୋଷ୍ଠୀ, ସହରାଚଂଳ ବସ୍ତିବାସିନ୍ଦା ମହିଳା, ସଂଖ୍ୟାଲଘୁ ସଂପ୍ରଦାୟର ମହିଳା, ଦୁର୍ଦ୍ଦଶା ତଥା ସମସ୍ୟା ଜର୍ଜରିତ ମହିଳା ଏବଂ ବିଭିନ୍ନ ଅନୁଷ୍ଠାନରେ ଆଶ୍ରୟ ନେଇଥିବା ମହିଳାଙ୍କ ସାମୂହିକ ଅଭିବୃଦ୍ଧିକୁ ପ୍ରୋତ୍ସାହନ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ଉତ୍କଳରେ ନୌବାଣିଜ୍ୟର ପରମ୍ପରା

କାଞ୍ଚି ନାରାୟଣ ମହାନ୍ତି

ଅର୍ଥଶାସ୍ତ୍ରରେ ଅଛି–

ସପ୍ତାହବୃତ୍ତମାଷଢ଼ୀଂ କାର୍ତ୍ତିକୀଂ ଚାନ୍ତରାନ୍ତରଃ
କାର୍ମିକ ପ୍ରତ୍ୟୟଂ ଦଦ୍ୟାତ୍ ନିତ୍ୟଂ ଚାହ୍ନିକମାବହେତ୍ ।

ଅର୍ଥାତ୍ ଆଷାଢ଼ ସପ୍ତମୀଠାରୁ କାର୍ତ୍ତିକ ମାସ ପର୍ଯ୍ୟନ୍ତ ଜଳଯାତ୍ରା କରିବା ପ୍ରଶସ୍ତ । ଆଷାଢ଼ ମାସରେ ବୃଷ୍ଟି ଯୋଗୁଁ ସର୍ବତ୍ର ଜଳପୂର୍ଣ୍ଣ ହୁଏ ଏବଂ ପ୍ରାୟ କାର୍ତ୍ତିକ ମାସ ବେଳକୁ ଉଦ୍‌ବୃତ୍ତ ଜଳ ସବୁ ନିଷ୍କାସିତ ହୋଇଯାଏ । ସୁତରାଂ ଆଷାଢ଼ଠାରୁ କାର୍ତ୍ତିକ ମାସ ଯାଏ ବଡ଼ ବଡ଼ ଜାହାଜ ସବୁ ନଦୀସ୍ରୋତ ବାଟେ ଦେଶ ଭିତରେ ପ୍ରବେଶ କରିବା ସୁବିଧାଜନକ । ପୁଣି ଏହି କେତେକ ମାସ ମୌସୁମୀ ବାୟୁ ଦକ୍ଷିଣ–ପଶ୍ଚିମ ଦିଗରୁ ପ୍ରବାହିତ ହେବାର ସମୟ । ଏହି ହେତୁରୁ ଶ୍ରୀଲଙ୍କା ଓ ଅନ୍ୟାନ୍ୟ ଦକ୍ଷିଣସ୍ଥ ସ୍ଥାନମାନଙ୍କରୁ ଏହି ସମୟରେ ଜାହାଜ ଫେରାଇବା ସୁବିଧାଜନକ । ଏହି ସମୟରେ ଉତ୍ତରଗାମୀ ପୋତ ଅଳ୍ପ ଆୟାସରେ ମୁହାଣକୁ ଆସି ନଦୀର ଉନ୍ନତ କଳେବର ସାହାଯ୍ୟରେ ଦେଶ ମଧ୍ୟରେ ପ୍ରବେଶ କରିପାରେ । ସେଥିପାଇଁ ବୋଧ ହୁଏ ପୂର୍ବେ ଜଳଯାତ୍ରୀମାନେ ଆଷାଢ଼ଠାରୁ କାର୍ତ୍ତିକ ପର୍ଯ୍ୟନ୍ତ ସମୟକୁ ଜଳଯାତ୍ରା ପାଇଁ ପ୍ରଶସ୍ତ ମନେ କରିଥିଲେ ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ କଳିଙ୍ଗ ଇତିହାସରେ ଏକ ସ୍ମରଣୀୟ ଶତାବ୍ଦୀ । ଏହି ଶତାବ୍ଦୀର କେତେ ଶତ ବର୍ଷ ପୂର୍ବରୁ କଳିଙ୍ଗର ଲୋକେ ଜଳପଥରେ ଯାଇ ବ୍ରହ୍ମଦେଶ, ଜାଭା, ମଲ୍ଲକ୍କା ଓ ସିଂହଳ ଦ୍ୱୀପ ସଙ୍ଗେ ବାଣିଜ୍ୟ କରୁଥିଲେ । କିନ୍ତୁ ଏହି ଶତାବ୍ଦୀରେ ସେମାନଙ୍କର ବାଣିଜ୍ୟ ସ୍ଥାୟୀ ଆକାରରେ ପରିଣତ ହେଲା ଏବଂ ଏହି ଶତାବ୍ଦୀଠାରୁ ସେମାନଙ୍କର ବାଣିଜ୍ୟ ପୂର୍ବ ସାଗରସ୍ଥ ଦେଶ ଓ ଦ୍ୱୀପମାନଙ୍କ ସଙ୍ଗେ ବୃହତ୍ତର ଆକାରରେ ପରିଚାଳିତ ହେଲା । ବାଣିଜ୍ୟ ଉଦ୍ଦେଶ୍ୟରେ ଯାଇ ସେମାନେ କାଳକ୍ରମେ ଦେଶ ବିଦେଶରେ ଉପନିବେଶ ସ୍ଥାପନ କଲେ । ୭୫ ଖ୍ରୀଷ୍ଟାବ୍ଦରେ କେତେଜଣ କଳିଙ୍ଗ ନାବିକ ଜାଭା ଉପକୂଳରେ ଉପନିବେଶ ସ୍ଥାପନ କରିଥିଲେ । ସେହିବର୍ଷଠାରୁ ଜାଭା ଦ୍ୱୀପରେ ଏକ ନୂତନ ଅଙ୍କ ଚଳି ଆସୁଅଛି । ଆଦିମ କଳିଙ୍ଗ ନାବିକମାନଙ୍କର ବଂଶଧରମାନେ ଅଧ୍ୟାବଧି ଜାଭା ଦ୍ୱୀପରେ ବାସ କରୁଅଛନ୍ତି ଏବଂ ସେମାନେ ଅଦ୍ୟାବଧି 'କ୍ଲିଙ୍ଗ' ଉପାଧିଦ୍ୱାରା ଜାଭା ଦ୍ୱୀପର ଅନ୍ୟାନ୍ୟ ଅଧିବାସୀମାନଙ୍କଠାରୁ ଚିହ୍ନିତ ହେଉଅଛନ୍ତି । ଆଜିକାଲି ମଧ୍ୟ ମଲକ୍କା ଦ୍ୱୀପର ସିଙ୍ଗାପୁରଠାରେ 'କ୍ଲିଙ୍ଗ' ଉପାଧିଧାରୀ ଅନେକ ଅଧିବାସୀ ଦେଖାଯାନ୍ତି । ବ୍ରହ୍ମଦେଶରେ କଳିଙ୍ଗ ନାବିକମାନେ ଉପନିବେଶ ସ୍ଥାପନ କରିବାର କିୟତ୍‌କାଳ ପରେ ସେମାନେ ସେଠାରେ ପ୍ରଭୁତ୍ୱ ବିସ୍ତାର କରିଥିଲେ । ଫଳରେ ସେମାନେ କାଳକ୍ରମେ କଳିଙ୍ଗଠାରୁ ବିଚ୍ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ଜାତି ରୂପେ ପରିଗଣିତ ହୋଇଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଆଧୁନିକ ଆସାମୀ ଭାଷା ଓ ଓଡ଼ିଆ ଭାଷା ମଧ୍ୟରେ ବହୁ ସାମ୍ୟ ଦେଖାଯାଏ ।

କଳିଙ୍ଗର ଉପରୋକ୍ତ ବାଣିଜ୍ୟୋନ୍ନତି ବେଳେ ଦେଶର ଅଭ୍ୟନ୍ତରରେ ତଥା ଉପକୂଳରେ ଅନେକ ନଗର ଓ ବନ୍ଦର ଥିବା ସ୍ୱାଭାବିକ । ସିଉକି ନାମକ ବୌଦ୍ଧ ଗ୍ରନ୍ଥରୁ ଜଣାଯାଏ, କଳିଙ୍ଗ ଉପକୂଳରେ ସେତେବେଳେ ଅନେକଗୁଡ଼ିଏ ବନ୍ଦର ଥିଲା । ଐତିହାସିକ ଟଲୋମି ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ତାହାଙ୍କର ଭୂଚିତ୍ର ଲେଖିଅଛନ୍ତି । ସେ ଓଡ଼ିଶାର କେତେଗୁଡ଼ିଏ ପ୍ରଧାନ ପ୍ରଧାନ ନଦୀ ଓ ନଗରର ନାମ ଉଲ୍ଲେଖ କରିଅଛନ୍ତି, ଯଥା– ପଲୁରା– ଗଞ୍ଜାମ ସନ୍ନିକଟସ୍ଥ ନଗର । ନନିଗେନ– ପୁରୀ । କଡିକର୍ଦ୍ଦମ– କଟକ । କୋଣଗର– କୋଣାର୍କ । କୋଶମ୍ଭ– ବାଲେଶ୍ୱର । ପଲୁର– ଜଳେଶ୍ୱର । ମନଦ– ମହାନଦୀ । ତିନ୍ଦିସ–ବ୍ରାହ୍ମଣୀ । ଦୋସରମ–ବୈତରଣୀ । ଅଦମସ୍– ସୁବର୍ଣ୍ଣରେଖା ।

ଏହାଛଡ଼ା ତାମ୍ରଲିପ୍ତ ଓ କଳିଙ୍ଗ ପ୍ରଭୃତି ଅନ୍ୟାନ୍ୟ କେତୋଟି ପ୍ରାଚୀନ ନଗରମାନଙ୍କ ମଧ୍ୟରୁ ପୁରୀ, କୋଣାର୍କ, ବାଲେଶ୍ୱର,

ତାମ୍ରଲିପ୍ତି ଓ କଳିଙ୍ଗନଗର ସମୁଦ୍ର କୂଳରେ ଅବସ୍ଥିତ । ବାଲେଶ୍ୱରର ବାଣିଜ୍ୟ ଅଳ୍ପ ଦିନ ହେଲା ଲୁପ୍ତ ହୋଇଅଛି । କେବଳ ପୁରୀ ଏବଂ କୋଣାର୍କ ସମ୍ବନ୍ଧରେ କାହାରି କାହାରି ସନ୍ଦେହ ହୋଇପାରେ କିନ୍ତୁ ଏଭଳି ସନ୍ଦେହ ସମ୍ପୂର୍ଣ୍ଣ ଅମୂଳକ । ଆମ୍ଭମାନଙ୍କ ଦୃଢ଼ ବିଶ୍ୱାସ, ବାଲିଚଡ଼ା ହେତୁରୁ କାଳକ୍ରମେ ପୁରୀ ଏବଂ କୋଣାର୍କ ଉପକୂଳବର୍ତ୍ତୀ ସ୍ଥାନମାନ ବର୍ଷକୁ ବର୍ଷ ସମୁଦ୍ରଠାରୁ ଅପସାରିତ ହେଉଅଛି । ଓଡ଼ିଶାରେ ତାମ୍ରଲିପ୍ତ ପ୍ରଭୃତି ଅନ୍ୟାନ୍ୟ ବନ୍ଦରମାନଙ୍କର ମଧ୍ୟ ଏହି ଦଶା । ନୀଳଗିରି ପାହାଡ଼ରେ ତମୁରା ଓ ତମୁରାଣୀ ନାମରେ ଦୁଇଟି ପ୍ରସ୍ତର ମୂର୍ତ୍ତି ଅଛି । ଏମାନେ ସମୁଦ୍ର ଆଡ଼କୁ ହାତ ବଢ଼ାଇ ଅଛନ୍ତି । ଲୋକେ କହନ୍ତି, ଏ ଦିଓଟି ଦେବତା । ପୂବେ ଏମାନେ ସେହିଠାରେ ବସି ବନସିଦ୍ୱାରା ସମୁଦ୍ରରୁ ମାଛ ଧରୁଥିଲେ । ସମୁଦ୍ର ପାହାଡ଼ଠାରୁ ଦୂରକୁ ଘୁଞ୍ଚିଯିବାରୁ ସେମାନେ ଆଉ ମାଛ ଧରି ପାରୁନାହାନ୍ତି । କେବଳ ସମୁଦ୍ର ପୁଣି ଫେରି ଆସିବା ଯାଏ ସେମାନେ ସେହିଠାରେ ଅପେକ୍ଷା କରି ବସି ରହି ଅଛନ୍ତି । ସମୁଦ୍ର ବର୍ଷକୁ ବର୍ଷ ଓଡ଼ିଶାର ଉପକୂଳରୁ ଅପସାରିତ ହେଉଥିବା ବିଷୟ ବୋଧହୁଏ ଏହି କିମ୍ବଦନ୍ତୀ ଦ୍ୱାରା ପରୀକ୍ଷିତ ହୋଇଅଛି । ଚିଲିକା ହ୍ରଦ ଏକ ସମୟରେ ବିଦେଶାଗତ ବାଣିଜ୍ୟ ପୋତଦ୍ୱାରା ଆଚ୍ଛାଦିତ ହେଉଥିଲା । ବର୍ତ୍ତମାନ ଏହି ହ୍ରଦର ମୁହାଣ ପ୍ରାୟ ବନ୍ଦ । ଏହାର ଦୁରବସ୍ଥା ପ୍ରତି ଦୃଷ୍ଟିପାତ କଲେ ଓଡ଼ିଆ ଜାତିର ହୃଦୟ ଫାଟିଯାଏ । ଓଡ଼ିଶାର ମହାନଦୀ, ବୈତରଣୀ ଓ ସୁବର୍ଣ୍ଣରେଖା ପ୍ରଭୃତି ନଦୀ ଟୋଲେମିଙ୍କ ଭୂଚିତ୍ରରେ ସ୍ଥାନ ପାଇବାର କାରଣ ବୋଧହୁଏ ସେସବୁ ନଦୀର ତଦାନୀନ୍ତନ ବାଣିଜ୍ୟ– ସୁବିଧା କିନ୍ତୁ ସେହି ନଦୀଗୁଡ଼ିକ ବର୍ତ୍ତମାନ ବାଣିଜ୍ୟର ସୁବିଧା କରାଇବା ଦୂରେ ଥାଉ, କେବଳ ବର୍ଷକୁ ବର୍ଷ ଓଡ଼ିଶାର ସର୍ବନାଶ କରୁଅଛି । ମୁହାଣରେ ବାଲି ଜମି ସେହିସବୁ ନଦୀର ଏଭଳି ଦୁରବସ୍ଥା ସୃଷ୍ଟି ହୋଇଛି ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ପୂର୍ବରୁ କଳିଙ୍ଗର ଲୋକେ ସମୁଦ୍ର ପାର ହୋଇ ବିଦେଶରେ ବାଣିଜ୍ୟ କରୁଥିଲେ । ଏହି ଶତାବ୍ଦୀରେ ସେମାନେ ବିଦେଶରେ ଉପନିବେଶ ସ୍ଥାପନ କରିବାକୁ ଆରମ୍ଭ କଲେ ଏବଂ ସେମାନଙ୍କ ବିଦେଶ ବାଣିଜ୍ୟ ବୃହତ୍ତର ଆକାର ଧାରଣ କଲା । କିନ୍ତୁ କେଉଁ ଦ୍ରବ୍ୟରେ ସେମାନେ ବାଣିଜ୍ୟ କରୁଥିଲେ ? ପେରିପ୍ଲସ ନାମକ ପୁସ୍ତକ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଲିଖିତ ହୋଇଥିଲା । ଏହି ପୁସ୍ତକରେ ଅଛି, ସେତେବେଳେ ଓଡ଼ିଶାରେ ପ୍ରଚୁର ହାତୀଦାନ୍ତ ମିଳୁଥିଲା ଏବଂ ସୂକ୍ଷ୍ମ ବସ୍ତ୍ର ତାମ୍ରଲିପ୍ତି ବନ୍ଦରରେ ପ୍ରଧାନ ବାଣିଜ୍ୟ– ଦ୍ରବ୍ୟ ଥିଲା । ଅର୍ଥଶାସ୍ତ୍ରରୁ ମଧ୍ୟ ଜଣାଯାଏ ଯେ ଚନ୍ଦ୍ରଗୁପ୍ତଙ୍କ ସମୟରେ କଳିଙ୍ଗର ଅରଣ୍ୟରେ ବହୁ ହାତୀ ବାସ କରୁଥିଲେ । ବୋଧହୁଏ, କଳିଙ୍ଗର ଲୋକେ ହାତୀଦାନ୍ତ ଓ ସୂକ୍ଷ୍ମ ବସ୍ତ୍ର ପ୍ରଭୃତି ଅନ୍ୟାନ୍ୟ କେତେକ ପ୍ରକାର ଦ୍ରବ୍ୟ ବିନିମୟରେ ବିଦେଶରୁ ସୁନା ଓ ମୁକ୍ତା ଆଦି ମୂଲ୍ୟବାନ୍ ବସ୍ତୁ ଆମଦାନୀ କରୁଥିଲେ । ପ୍ରାଚୀନ କଳିଙ୍ଗ ସୂକ୍ଷ୍ମବସ୍ତ୍ର ନିମନ୍ତେ ପ୍ରସିଦ୍ଧ । କଥିତ ଅଛି କଳିଙ୍ଗ ରାଜ ଅଯୋଧ୍ୟାରାଜଙ୍କୁ ଖଣ୍ଡିଏ ସୂକ୍ଷ୍ମ ବସ୍ତ୍ର ଉପହାର ଦେଇଥିଲେ ଓ ସେହି ବସ୍ତ୍ର ଖଣ୍ଡିକୁ ଜଣେ ବୌଦ୍ଧ ସନ୍ନ୍ୟାସିନୀ ପରିଧାନ କରିଥିଲେ । କିନ୍ତୁ ଏହି ପରିଧାନଟି ଏତେ ସୂକ୍ଷ୍ମ ଥିଲା ଯେ, ଲୋକେ ଏହାକୁ ତପସ୍ୱିନୀଙ୍କ ଦେହରେ ହଠାତ୍ ଦେଖି ନପାରି ତାଙ୍କୁ ଉଲଗ୍ନା ମନେ କରି ତିରସ୍କାର କଲେ । ଓଡ଼ିଶାର ରଣପୁର, ତିଗିରିଆ ଓ କଳାପଥର ପ୍ରଭୃତି ସ୍ଥାନମାନଙ୍କରେ ଅଦ୍ୟାବଧି ତନ୍ତୀମାନେ ଏହିପରି ସୂକ୍ଷ୍ମ ବସ୍ତ୍ର ବୁଣି ପାରନ୍ତି । କିନ୍ତୁ ପୋଷାକ ଓ ପ୍ରୋତ୍ସାହନ ଅଭାବରୁ ଏହି କଳା କ୍ରମଶଃ ଲୁପ୍ତ ହେଉଅଛି । ରାତ୍ରରେ ସୂକ୍ଷ୍ମ ବସ୍ତ୍ରକୁ ଘାସ ଉପରେ ବିଛାଇ ଦିଆଯାଏ । ସକାଳେ ଶିଶିର ହେତୁ ସେହି ବସ୍ତ୍ର ଖଣ୍ଡି ଯଦି ଅଳ୍ପ ଦୂରରୁ ଘାସଠାରୁ ବାରି ହୋଇ ନ ପାରେ, ତାହା ହେଲେ ସେହି ବସ୍ତ୍ରଟି ସୂକ୍ଷ୍ମ ବସ୍ତ୍ର ମଧ୍ୟରେ ଗଣ୍ୟ ହୁଏ । ଏହା ଓଡ଼ିଶାରେ ସୂକ୍ଷ୍ମବସ୍ତ୍ରର ପରୀକ୍ଷା । କେହି କହେ ମନେ କରନ୍ତି, ଦାକ୍ଷିଣାତ୍ୟବାସୀମାନେ କଳିଙ୍ଗରୁ ସୂକ୍ଷ୍ମ ବସ୍ତ୍ର ନିର୍ମାଣ ପଦ୍ଧତି ସଂପର୍କରେ ଶିକ୍ଷା କରିଥିଲେ । ସେଥିପାଇଁ ପ୍ରାଚୀନ ତାମିଲ୍ ଭାଷାରେ ବସ୍ତ୍ରକୁ କଳିଙ୍ଗ କୁହାଯାଏ ।

କଳିଙ୍ଗର ସୂକ୍ଷ୍ମ ବସ୍ତ୍ରର ଚାରିଆଡ଼େ ଖ୍ୟାତି ଥିଲା । କୌଟିଲ୍ୟ ମଧ ତାଙ୍କ ରଚିତ ଅର୍ଥଶାସ୍ତ୍ରରେ ଏ ବିଷୟ ଉଲ୍ଲେଖ କରିଛନ୍ତି । କୁହାଯାଏ, କଳିଙ୍ଗର ସୂକ୍ଷ୍ମବସ୍ତ୍ର ହାତମୁଠା ଓ ବାଉଁଶ ନଳୀରେ ରହିପାରୁଥିଲା । କୋଶଳର କୋଷବସ୍ତ୍ର ଓ କାର୍ପାସ ମଧ୍ୟ ପୃଥିବୀ ପ୍ରସିଦ୍ଧ ଥିଲା । ସମ୍ବଲପୁର କୋଶଳର ହୀରାକୁଦଠାରୁ ହୀରା, ସୁନା, ରୂପା, ପାନ୍ନା, ପଦ୍ମରାଗ, ନୀଳମଣି, ପୋଖରାଜ, ସ୍ଫଟିକ ଓ ରକ୍ତମଣି ସଂଗୃହୀତ ହୋଇ ବିଦେଶରୁ ରପ୍ତାନି କରାଯାଉଥିଲା । କଳିଙ୍ଗ ବନ୍ଦରମାନଙ୍କରୁ ସମ୍ବଲପୁରର ହୀରା ପାରସ୍ୟ, ଗ୍ରୀସ୍ ଓ ରୋମ୍ ପର୍ଯ୍ୟନ୍ତ ରପ୍ତାନି ହେଉଥିବାର ଐତିହାସିକ ବର୍ଣ୍ଣନା ରହିଛି । ପୂର୍ବ ଭାରତ ଦ୍ୱୀପ ପୁଞ୍ଜରୁ ଅଳେଇଚ, ମରିଚ, ଲବଙ୍ଗ, ଗୁଆ ଇତ୍ୟାଦି ଚୀନ୍‌ରୁ ରେଶମୀ ବସ୍ତ୍ର ଓ ବଙ୍ଗଦେଶରୁ ମସ୍‌ଲିନ୍ ପ୍ରଭୃତି ଆମଦାନୀ କରାଯାଉଥିବା ଐତିହାସିକ ପ୍ରମାଣସିଦ୍ଧ।

ପ୍ରାଚୀନ କାଳରେ କଳିଙ୍ଗ ଉପକୂଳ ତଥା ନଦୀ ମୁହାଣମାନଙ୍କରେ ଅନେକ ବନ୍ଦର ଥିବାର ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନରୁ ଜଣାପଡ଼େ । ଚିଲିକା କୂଳରେ ପାଲୁର ଏକ ପ୍ରଧାନ ବନ୍ଦର ଥିଲା । ଗ୍ରୀକ୍ ନାବିକ ଟୋଲେମି ଏଠାରୁ ମଳୟ ଦ୍ୱୀପକୁ ବାଣିଜ୍ୟ ପଥରେ ଯାଇଥିବାର ତାଙ୍କ ସମୁଦ୍ର ଭ୍ରମଣ ବୃତ୍ତାନ୍ତରେ

ବର୍ଣ୍ଣନା କରିଛନ୍ତି । ବ୍ରହ୍ମାଣ୍ଡ ପୁରାଣରେ ମଧ୍ୟ ଚିଲିକା ହ୍ରଦରେ ସହସ୍ର ପୋତ ଭାସୁ ଥିବାର ବର୍ଣ୍ଣନା କରାଯାଇଛି:

ଚିଲିକା ହ୍ରଦେ ସହସ୍ରଂନ୍ତୁ ସୁପୋତା ଜଳଗାମିନଃ ।

ଚନ୍ଦ୍ରଭାଗା ନଦୀ ସେତେବେଳେ କୋଣାର୍କ ନିକଟରେ ସମୁଦ୍ରରେ ମିଶି ଥିଲା । ଟୋଲେମି ଏହି କୋଣାର୍କ ବନ୍ଦରକୁ କନ୍ଧଗର ବା କୋଣନଗର ବୋଲି ବର୍ଣ୍ଣନା କରିଛନ୍ତି । ଏଥିରୁ ସ୍ପଷ୍ଟ ଜଣାପଡେ ଯେ ପ୍ରାଚୀନ କାଳରେ କୋଣାର୍କ ଏକ ବିଶାଳ ନଗର ତଥା ପୋତାଶ୍ରୟ ଥିଲା । ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ଏବେ ଅନେକ ବହିର୍ଦେଶୀୟ ପ୍ରତ୍ନ ଉପାଦନ ଏଠାରୁ ଆବିଷ୍କୃତ ହୋଇଛି । ଅନ୍ୟ ଏକ ବନ୍ଦର ପୁରୀଠାରେ ଥିଲା । ଏହା ଆଦାମାସ ଓ ଚେଳିତାଳ ନାମରେ ବିଦେଶୀ ପର୍ଯ୍ୟଟକମାନଙ୍କ ଲେଖନୀରେ ବର୍ଣ୍ଣିତ । ଅଧୁନା ମେଦିନୀପୁର ଜିଲ୍ଲାର ତାମ୍ରଲିପ୍ତି ବନ୍ଦର ମଧ୍ୟ ପ୍ରାଚୀନ କଳିଙ୍ଗର ଅନ୍ତର୍ଭୁକ୍ତ ଥିଲା ।

ଟୋଲେମି ମହାନଦୀକୁ ମନଦ ବୋଲି ଅଭିହିତ କରିଛନ୍ତି ଓ ଏହାର କୂଳରେ ସମ୍ବଲକ (ସମ୍ବଲପୁର) ବନ୍ଦର ନଗର ଥିବାର ଉଲ୍ଲେଖ ଅଛି । ତାଙ୍କ ବର୍ଣ୍ଣନାରେ ଦୋସରା ନାମକ ଆଉ ଏକ ବନ୍ଦର, ମୁଣ୍ଡା ଓ ଶବରମାନଙ୍କର ରାଜ୍ୟ ସମ୍ବଲପୁରଠାରେ ଥିବାର ଜଣାପଡ଼େ । ଏହା ତେଲ ନଦୀ କୂଳରେ ଆଧୁନିକ ବଲାଙ୍ଗୀର ଜିଲ୍ଲାର ତୋଷରା ବୋଲି ଚିହ୍ନିତ କରାଯାଇଛି । ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ଦ୍ୱାରା ପ୍ରାଚୀନ ସଭ୍ୟତାର ଅନେକ ସ୍ମୃତିଚିହ୍ନ ଏବେ ଏଠାରେ ଠାବ କରାଯାଇଛି । ବୋଧହୁଏ ପ୍ରାଚୀନ କାଳରେ ତୋଷରା ଯାହା, ବର୍ତ୍ତମାନ 'ତୁଷରା' ତାହା କୋଶଳର ରାଜଧାନୀ ଓ ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର ଥିଲା । ବୌଦ୍ଧ ଜାତକ କାହାଣୀରେ ମଧ୍ୟ ତେଲବାହ ନଦୀରେ ବାଣିଜ୍ୟ ବ୍ୟବସାୟ କାର୍ଯ୍ୟ ଚାଲିଥିବାର ବର୍ଣ୍ଣନା ରହିଛି । ଏହି ତେଲ ନଦୀ କୋରାପୁଟ ଓ ବସ୍ତର ଜିଲ୍ଲାର ସୀମାବର୍ତ୍ତୀ ତେଲବନ୍ଧଠାରୁ ବାହାରି କଳାହାଣ୍ଡି ବାଟେ ସୋନପୁରଠାରେ ମହାନଦୀରେ ମିଶିଛି । ପ୍ରାଚୀନ ସୁକ୍ତିମତୀ (ସୁକତେଲ) ନଦୀ କୂଳରେ ସୁକ୍ତିମତୀପୁର ନାମରେ ଆଉ ଏକ ବାଣିଜ୍ୟ ପେଣ୍ଠ ଥିବାର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣରୁ ଜଣାପଡେ । ବଲାଙ୍ଗୀର ଜିଲ୍ଲାର ସକମା ଗ୍ରାମ ସୁକ୍ତିମତୀପୁର ଭାବରେ ଏବେ ଚିହ୍ନିତ ହୋଇଛି । ଅନ୍ତର୍ଦେଶୀୟ ଜଳପଥ ଦ୍ୱାରା ପଣ୍ୟ ସଂଗ୍ରହ ଓ ବିନିମୟ କରାଯାଉଥିଲା । ସମୁଦ୍ର ପଥରେ ବାଣିଜ୍ୟ କରାଯାଉଥିଲା । ତାମ୍ରଲିପ୍ତରୁ ଦାମୋଦର, ରୂପନାରାୟଣ ଓ ଗଙ୍ଗାବାଟେ ଗଙ୍ଗାରାଇଡ ଅଞ୍ଚଳରେ ଦେଶୀୟ ବାଣିଜ୍ୟ ଚଳୁଥିଲା । ନୌକା ଯୋଗେ ପଣ୍ୟ ହସ୍ତିନୀ ନଗରୀ ପର୍ଯ୍ୟନ୍ତ ଯାଉଥିଲା । ଧାମରା ବନ୍ଦରରୁ ବ୍ରାହ୍ମଣୀ, ବୈତରଣୀ ସାଳନ୍ଦୀ ବାଟେ ଉତ୍କଳ ଅଞ୍ଚଳରେ ବ୍ୟବସାୟ ଚାଲୁଥିଲା । ବାଲେଶ୍ୱର ପ୍ରଭୃତିର ପଣ୍ୟ ସୁବର୍ଣ୍ଣରେଖା ବାଟେ ଆସୁଥିଲା । ଗଞ୍ଜାମ ଶବ୍ଦର ଅର୍ଥ ପଣ୍ୟ ଭୂମି । ପ୍ରାଚୀନ କାଳରେ ଗଞ୍ଜାମ ସମୃଦ୍ଧ ଓ ବିଭବଶାଳୀ ଥିଲା । ଏଠାକାର ପଣ୍ୟ କାରବାର ଋଷିକୂଲ୍ୟା ଓ ଗୋଦାବରୀ ଜଳପଥ ସାହାଯ୍ୟରେ କରାଯାଉଥିଲା । ସଂପ୍ରତି ବ୍ରହ୍ମପୁର ମଧ୍ୟ ଓଡ଼ିଶାର ସମୃଦ୍ଧ ବାଣିଜ୍ୟର ଲକ୍ଷ୍ମୀକ୍ଷେତ୍ର ।

କୋଶଳ ରାଜ୍ୟରେ ବ୍ୟବସାୟ ବିନିମୟର ପ୍ରଧାନ ଜଳପଥ ଥିଲା ମହାନଦୀ । ପୂର୍ବେ ଏହା ଉତ୍ପତ୍ତିସ୍ଥଳଠାରୁ ସୁନାବ୍ୟା ଥିଲା । ଏହି ବାଟେ ସୈନ୍ୟ ଓ ଯୁଦ୍ଧ ସାମଗ୍ରୀ ତଥା ତୋପ କମାଣ ଆଦି ନିଆଅଣା କରାଯାଉଥିଲା । ମହାନଦୀର ଉତ୍ପତ୍ତି ସ୍ଥଳଠାରୁ କଟକ ପର୍ଯ୍ୟନ୍ତ ମହାନଦୀ କୂଳରେ ବଡ଼ ବଡ଼ ବାଣିଜ୍ୟ ପେଣ୍ଠ ବିଶିଷ୍ଟ ସହର ସବୁ ଗଢ଼ି ଉଠିଥିଲା । ଏବେସୁଦ୍ଧା ମହାନଦୀ କୂଳରେ ଶ୍ରୀପୁର, ରାଜିମ, ସୌରିନାରାୟଣ ପ୍ରଭୃତି ନଗର ଅଧୁନା ଛତିଶଗଡ ସହରରେ ରହିଛି । ଓଡିଶାର ପଦ୍ମପୁର, ଚିଲିକା, ସମ୍ବଲପୁର, ସୋନପୁର, ଚରଦା, ବୌଦ, କଣ୍ଟିଲୋ, କଟକ ଆଳି ଆଦି ପ୍ରସିଦ୍ଧ ନଗର ଓ ଶିଳ୍ପ ବାଣିଜ୍ୟର କେନ୍ଦ୍ର ଥିଲା । ସୋନପୁରରୁ ତେଲନଦୀ ବାଟେ ତୋଷରା ପର୍ଯ୍ୟନ୍ତ ପଣ୍ୟ ଯାଉଥିଲା । ସୁକତେଲ ନଦୀ ପଥରେ ପ୍ରାଚୀନ ସୁକ୍ତିମତୀପୁର ଅର୍ଥାତ ଆଧୁନିକ ସକମା ଅଞ୍ଚଳ ପର୍ଯ୍ୟନ୍ତ ଜଳ ପଥରେ ବାଣିଜ୍ୟ କାରବାର ଚାଲୁଥିଲା । ଏପରିକି ମରହଟ୍ଟା ରାଜତ୍ୱ କାଳରେ ପୁରୀ ଯାତ୍ରୀମାନେ ସମ୍ବଲପୁରରୁ କଟକ ପର୍ଯ୍ୟନ୍ତ ନୌକା ଚଢ଼ି ଯାଉଥିବାର ନଜିର ରହିଛି । ନଦୀଗୁଡ଼ିକ ଅନାବ୍ୟା ହେବା ଋତୁରେ ବଣିକମାନେ ସ୍ଥଳପଥରେ ବ୍ୟବସାୟ କରୁଥିଲେ । ଭାରବାହୀ ମନୁଷ୍ୟ, ଗୋରୁଗାଡି, ଘୋଡା, ଗଧ ଓ ବଳଦ ପିଠିରେ ପଣ୍ୟମାନ ସ୍ଥାନାନ୍ତରିତ ହେଉଥିଲା । ବେଳେବେଳେ ବଣିକମାନେ ଦଶ ବାର ହଜାର ପଶୁଙ୍କୁ ଘେନି ଏକତ୍ର ଗମନାଗମନ କରୁଥିଲେ । ସେମାନଙ୍କୁ ବଞ୍ଜାରା ଦଳ କୁହାଯାଉଥିଲା । ଏହା ବାଣିଜ୍ୟ ଶବ୍ଦରୁ ଆନୀତ । ମୋଗଲ ଯୁଗୀୟ ପାଶ୍ଚାତ୍ୟ ପର୍ଯ୍ୟଟକମାନେ ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ଅନେକ ବଞ୍ଜାରା ଦଳ ଦେଖିଥିବାର ବର୍ଣ୍ଣନା କରିଛନ୍ତି । ସଂସ୍କୃତ ସାହିତ୍ୟରେ ମଧ୍ୟ ଏମାନଙ୍କର ବର୍ଣ୍ଣନା ଦେଖିବାକୁ ମିଳେ । ମହାଭାରତରୁ ଜଣାଯାଏ ଯେ ଚେଦି ରାଜାମାନେ ଏ ପ୍ରକାର ବାଣିଜ୍ୟରେ ମୂଳଧନ ଖଟାଉଥିଲେ । ଦଳେ ବଣିକ ତାଙ୍କ ପକ୍ଷରୁ ଦେଶ ବିଦେଶରେ ବାଣିଜ୍ୟ କରୁଥିଲେ । ମହାଭାରତ ଏମାନଙ୍କୁ ସାର୍ଥ ଓ ଦଳପତିଙ୍କୁ ସାର୍ଥବାହା ବୋଲି ବର୍ଣ୍ଣନା କରିଛି । ବଣିକମାନେ ନିଘଞ୍ଚ ଜଙ୍ଗଲ ବାଟେ

ଦଳବଦ୍ଧ ହୋଇ ଯାତ୍ରା କରୁଥିଲେ । ପଣ୍ୟ ସଙ୍ଗେ ବହୁମୂଲ୍ୟ ରତ୍ନ ମଧ୍ୟ ରହୁଥିଲା । ସ୍ଥଳ ବିଶେଷରେ ହସ୍ତୀ, ଅଶ୍ୱ ଓ ଯାନ ସାହାଯ୍ୟରେ ଜିନିଷ ସ୍ଥାନାନ୍ତରିତ ହେଉଥିଲା । ପ୍ରାଚୀନ ଭାରତରେ ଅନେକ ସାର୍ଥବାହ ପଥ ସବୁ ଥିଲା । ସାଞ୍ଚି, ପିତ୍ତଲ ଖେରା ଆଦି ଧାର୍ମିକ ସ୍ଥଳ ପ୍ରାଚୀନ ସାର୍ଥବାହ ପଥ ପାର୍ଶ୍ୱରେ ଗଢ଼ି ଉଠିଥିଲା । ମହାନଦୀ ନରାଜଠାରେ ୩ ଭାଗରେ ବିଭକ୍ତ । ପ୍ରଧାନ ଶାଖା ଦୟାର ପ୍ରଶାଖା ପ୍ରାଚୀ ବା କୁଶଭଦ୍ରା ଓ ଏହାର ପ୍ରଶାଖା ଭାର୍ଗବୀ ଗଭୀର ଓ ସୁନାବ୍ୟା ଥିଲା । ଏବେ ବାଲୁକା ରାଶିରେ ପୋତି ହୋଇ ନଦୀର ଅସ୍ତିତ୍ୱ ପର୍ଯ୍ୟନ୍ତ ନାହିଁ । ପ୍ରଧାନ ସ୍ରୋତ ଦୟା ନରାଜଠାରୁ ଚିଲିକା ପର୍ଯ୍ୟନ୍ତ ପ୍ରସାରିତ ଥିଲା ଭାର୍ଗବୀ ପୁରୀ ନିକଟରେ ସମୁଦ୍ରରେ ପଡ଼ିଥିଲା । କୁଶଭଦ୍ରା ଭୁବନେଶ୍ୱର ଦକ୍ଷିଣ ପାର୍ଶ୍ୱ ଦେଇ କୋଣାର୍କ ନିକଟରେ ସମୁଦ୍ରରେ ମିଶିଥିଲା । ସେ ସମୟରେ ଚିଲିକା, ପୁରୀ ଓ କୋଣାର୍କ ପ୍ରଧାନ ପୋତାଶ୍ରୟ ରୂପେ ଗଢ଼ି ଉଠିଥିଲା । 'ସାର୍ଥବାହ' ଶବ୍ଦରୁ ଓଡିଶାରେ ସାଧବ ଶବ୍ଦର ସୃଷ୍ଟି ହୋଇଛି । ସାଧବମାନେ ଧନୀ ଥିଲେ ବାଣିଜ୍ୟ କାରବାର ପାଇଁ ସେମାନଙ୍କ ପାଖରେ ବିପୁଳ ବଳ, ପୁଞ୍ଜି ଓ ସମ୍ପତ୍ତି ଥିଲା । ସେମାନେ ବ୍ୟକ୍ତିଗତ ପ୍ରଚେଷ୍ଟା ବା ସଂଘବଦ୍ଧ ଭାବରେ ଏକାଧିକ ବୋଇତ ଚଳାଉଥିଲେ । ଏମାନଙ୍କ ସମ୍ବନ୍ଧରେ ଏବେ ଅନେକ କିମ୍ବଦନ୍ତୀ ଓ କାହାଣୀ ଗଢ଼ି ଉଠିଛି । ଅଦ୍ୟାବଧି ପ୍ରଚଳିତ 'ସାଧବ ଘର' ଓ 'ସାଧବ ବୋହୂ' କଥାମାନଙ୍କରୁ ସାଧବମାନଙ୍କର ଓଡ଼ିଆ ସମାଜରେ ବିଶିଷ୍ଟ ସ୍ଥାନ ଓ ପ୍ରତିପତ୍ତି ଥିବାର ସୂଚନା ମିଳେ । ସାଧବମାନେ ଶ୍ରୀମନ୍ଦିରର ଦକ୍ଷିଣଦ୍ୱାର ଦେଇ ପ୍ରବେଶ କରୁଥିଲେ । ଜଳଯାତ୍ରାରେ ଯିବାପୂର୍ବରୁ ସେମାନେ ପ୍ରଭୁଙ୍କୁ ଦର୍ଶନ ଓ ଶୁଭଯାତ୍ରାର ଅନୁକୂଳ ପ୍ରଣାମୀ ଦେଇ ଯାତ୍ରାରମ୍ଭ କରୁଥିଲେ । ଫେରିଲା ପରେ ସେହି ଦ୍ୱାର ଦେଇ ପ୍ରବେଶ କରି ପ୍ରଭୁଙ୍କ ପାଦରେ ଦୁଃମୂଲ୍ୟ ଦ୍ରବ୍ୟ ସମ୍ଭାର ସମର୍ପଣ କରୁଥିଲେ ତାହାକୁ ଭେଟି କୁହାଯାଉଥିଲା । ଦକ୍ଷିଣଦ୍ୱାରକୁ ସାଧବଦ୍ୱାର ବୋଲି ମଧ୍ୟ କୁହାଯାଏ । ଏହି ଦ୍ୱାରବାଟେ ରାଜା ଓ ରାଜପରିବାର ପ୍ରବେଶ କରୁଥିଲେ, ଏହାକୁ 'ଧନଦ୍ୱାର' ମଧ୍ୟ କୁହାଯାଉଥିଲା । ସାଧବମାନେ ବଙ୍ଗୋପସାଗରରେ ବାଣିଜ୍ୟ କାରବାର କରୁଥିଲେ । କଳିଙ୍ଗ ସାଧବମାନେ ଏହାକୁ କଳିଙ୍ଗ ସାଗର ନାମରେ ନାମିତ କରିଥିଲେ । ପୂର୍ବଭାରତୀୟ ଦ୍ୱୀପପୁଞ୍ଜର ବାଣିଜ୍ୟରେ କଳିଙ୍ଗର ରାଜବଂଶମାନେ ମଧ୍ୟ ସଂଶ୍ଲିଷ୍ଟ ଥିବାର ଜଣାଯାଏ । ଚେଦିରାଜାମାନେ ବାଣିଜ୍ୟ ସମ୍ପର୍କରେ ଆସି ପ୍ରାଚୀ କଳିଙ୍ଗ, ଗଙ୍ଗ-ରାଇଢ କଳିଙ୍ଗ ଓ ମଗ କଳିଙ୍ଗରେ ତ୍ରିକଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । ଶୈଳେନ୍ଦ୍ର ବା ଶୈଳୋଦ୍‌ଭବ ରାଜାମାନେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜକୁ ସମୁଦ୍ର ପାର ହୋଇ ଯାଇ ଶୈଳେନ୍ଦ୍ର ସାମ୍ରାଜ୍ୟ ସ୍ଥାପନ କରିଥିଲେ ।

ଓଡ଼ିଆ ସାଧବ ପୁଅର ଏହି ବାଣିଜ୍ୟ ଯାତ୍ରା କଥା ଗ୍ରୀକ୍ ପର୍ଯ୍ୟଟକ ଟୋଲେମି ମଧ୍ୟ ଉଲ୍ଲେଖ କରିଛନ୍ତି । କାର୍ତ୍ତିକ ମାସ ଶେଷରେ ଅର୍ଥାତ୍ ଅକ୍ଟୋବର/ନଭେମ୍ବର ମାସରେ ଉତ୍ତରା ପବନ ଅନୁକୂଳ ହୁଏ । ସେତେବେଳେ ଓଡିଶା ଉପକୂଳରୁ କଳିଙ୍ଗ ସାଗରରେ ବୋଇତଗୁଡ଼ିକ ପଣ୍ୟ ସମ୍ଭାର ଘେନି ସମୁଦ୍ର ପାରି ବାଣିଜ୍ୟ ନିମନ୍ତେ ପୂର୍ବ ଦ୍ୱୀପ ପୁଞ୍ଜକୁ ପ୍ରସ୍ଥାନ କରୁଥିଲେ । କାର୍ତ୍ତିକଠାରୁ ଚୈତ୍ର ପର୍ଯ୍ୟନ୍ତ ସେଠାରେ ବାଣିଜ୍ୟ ବିନିମୟ ଚାଲୁଥିଲା । ଫାଲ୍‌ଗୁନ୍, ଚୈତ୍ର ମାସରେ ଦକ୍ଷିଣା ପବନ ଆରମ୍ଭ ହେବା ସଙ୍ଗେ ସାଧବମାନେ ଗୃହାଭିମୁଖରେ ପ୍ରତ୍ୟାବର୍ତ୍ତନ କରୁଥିଲେ । ପଣାସଂକ୍ରାନ୍ତି ବେଳକୁ ବୋଇତସବୁ ପଣ୍ୟସମ୍ଭାର ଘେନି କଳିଙ୍ଗ ଉପକୂଳରେ ଲାଗୁଥିଲା । ବିଦେଶାଗତ ପରିଜନ ଓ ବୋଇତ ବନ୍ଦାଣ ପାଇଁ ସାଧବ ବୋହୂମାନେ ମେଷ ସଂକ୍ରାନ୍ତି ଦିନ ମଧୁର ଉତ୍ସବ ପାଳନ କରୁଥିଲେ । ଏହା ଏବେ ପଣା ସଂକ୍ରାନ୍ତି ନାମରେ ଲୋକପ୍ରିୟ । କଥିତ ଅଛି, ତାମ୍ରଲିପ୍ତିରେ ବର୍ଗଭୀମା'ଙ୍କ ମନ୍ଦିର ନିକଟରେ ଗୋଟିଏ କୂପ ଥିଲା । ସେହି କୂପର ଜଳରେ କୌଣସି ଦ୍ରବ୍ୟ ବୁଡାଇ ଦେଲେ ତାହା ତତ୍‌କ୍ଷଣାତ୍ ସୁନା ପାଲଟି ଯାଉଥିଲା । ଦିନେ ଏକ ସୌଦାଗର ଜଣେ ଲୋକଠାରୁ ଏହି ତଥ୍ୟ ଜାଣିପାରି ଗୋଟିଏ ମାଠିଆ ନେଇ କୂପ ଜଳରେ ବୁଡାଇ ଦେଲେ । ସୌଦାଗର ଏଇ ସୁନାର ସାହାଯ୍ୟରେ ସିଂହଳୀ ପ୍ରଭୃତି ଦୂର ଦେଶରେ ବାଣିଜ୍ୟ କରି ପ୍ରଚୁର ଧନ ଲାଭ କଲେ ଏବଂ ସ୍ୱଦେଶକୁ ଫେରିଲାବେଳେ ମାର୍ଗରେ ତାମ୍ରଲିପ୍ତିଠାରେ ବର୍ଗଭୀମାଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ଏହି ଗଳ୍ପରୁ ଅନୁମିତ ହୁଏ, ପୂର୍ବକାଳରେ ବିଦେଶ ବାଣିଜ୍ୟଦ୍ୱାରା ତାମ୍ରଲିପ୍ତି ବନ୍ଦରରେ ପ୍ରଚୁର ଧନରତ୍ନର ଆମଦାନୀ ହେଉଥିଲା ।

ବର୍ଷସାରା ସଂଗୃହୀତ ସମ୍ଭାରରେ କାର୍ତ୍ତିକ ଅମାବାସ୍ୟା ଦୀପାବଳି ଦିନ ଲକ୍ଷ୍ମୀ ପୂଜା ହେଉଥିଲା । ତା'ପର ଦିନଠାରୁ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ବୋଇତରେ ପଣ୍ୟର ସଞ୍ଚୟନ ହେଉଥିଲା । ସାଧବମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ 'ବୋଇତ ଯାତ୍ରା' କରୁଥିଲେ । ଉତ୍ତରା ଅନୁକୂଳ ପବନରେ ବୋଇତ ସୁବିଧାରେ ଓ ସହଜରେ ବାଲି ପ୍ରଭୃତି ଦ୍ୱୀପପୁଞ୍ଜକୁ ଯାଇପାରୁଥିଲା । ଏହି ବାଲିଦ୍ୱୀପ ଯାତ୍ରା ଏ ପର୍ଯ୍ୟନ୍ତ ଆମ ଓଡ଼ିଆ ଜନମାନସରେ ଗଭୀର ଛାପ ରଖି ଯାଇଛି । ଏହା ଏବେ ବାଲିଯାତ୍ରା ନାମରେ ଉତ୍ସବ ପାଳିତ ହୋଇ ଆସୁଛି । ବାଲିଯାତ୍ରାର ଅର୍ଥ ବାଣିଜ୍ୟାର୍ଥେ, ବାଲି ଦ୍ୱୀପକୁ ଯାତ୍ରା ।

ଶ୍ରୀବିହାର କଲୋନୀ
ତୁଳସୀପୁର, କଟକ-୮

# ଉତ୍କଳର ନୌବାଣିଜ୍ୟ: ଏକ ଐତିହାସିକ ଅନୁଶୀଳନ

ରାମଚନ୍ଦ୍ର ଦାଶ

ଆମ ମାଟି ଯେଉଁଠି ରତ୍ନଗର୍ଭା, ସେଠି ତା'ର ଅନ୍ତଃସତ୍ୱ ଭିତରୁ ସୁଦୂର ଅତୀତକୁ ସମୃଦ୍ଧ କରିବା ପାଇଁ ସୁସଭ୍ୟ ସଭ୍ୟତାଟିଏ ନିଶ୍ଚୟ ଆତ୍ମପ୍ରକାଶ କରିଥିବ। ଏଥିରେ ସନ୍ଦେହ ନାହିଁ କିମ୍ବା ଦୃଷ୍ଟାନ୍ତର ପଟାନ୍ତର ନାହିଁ । ଉତ୍କଳର ନୌବାଣିଜ୍ୟ ଆଜି ଆମ ଐତିହ୍ୟର ଏକ ସ୍ୱର୍ଣ୍ଣାଭ ସ୍ମୃତି । ସମୟ ସିନା ବଦଳି ଯାଇଛି ହେଲେ ସ୍ମୃତି ବଦଳି ନାହିଁ । ମାଟି ମାଆର ସେଇ ଆତ୍ମାର ଡାକକୁ ସେଇ



ଦିନଠାରୁ ଆଜି ପର୍ଯ୍ୟନ୍ତ ଆମେ ସହୃଦୟତାର ସହ ଶୁଣି ଚାଲିଛେ ଓ ମନରେ ଗ୍ରହଣ କରି ସାରିଛେ । ସେଦିନର ବୋଇତ ନେଇ ଉତ୍କଳର ସୌଦାଗର ଆଜି ସିନା ନୌବାଣିଜ୍ୟକୁ ଯାଉନାହିଁ ମାତ୍ର କାର୍ତ୍ତିକ ପୂର୍ଣ୍ଣମୀରେ ଉତ୍କଳର ପ୍ରତି ଅଂଚଳର ଜଳସ୍ରୋତରେ ସୋଲ, ଫୁଲ ଓ କଦଳୀ ପଟୁଆର କୁନି କୁନି ବୋଇତ ଭାସିଉଠେ ଓ ଆ-କା-ମା-ବୈର ଶବ୍ଦରେ ପ୍ରକମ୍ପିତ ହୁଏ ତଟଭୂମି । କାଳର ସ୍ରୋତ ମଧ୍ୟ କମ୍ ନୁହେଁ । ଏହା ମଧ୍ୟରେ ବିତି ଗଲାଣି ଅନେକ ଦିନ । ବାଣିଜ୍ୟର ସ୍ୱପ୍ନଦେଖି ତାକୁ ପୂରଣ କରିବାକୁ ଗୋଡ କାଢ଼ିଥିବା ଏ ମାଟିର ମଣିଷ ଆଜି ନିଜକୁ ଛିଡା କରାଇଛି ଏକ ଭିନ୍ନ ଜୀବନରେ । ସେଇଥିରେ ବହୁଳ ଭାବରେ ଅସ୍ତବ୍ୟସ୍ତ ହେଉଛି ଜୀବନ । ପ୍ରତିଦ୍ୱନ୍ଦ୍ୱିତାରେ କୋଳାହଳମୟ ସମୟ ହଟଚମଟ ବସ୍ତୁବାଦ ପଛରେ ବାଜି ଲଗାଇ ଦଉଡୁଛି । ଜୀବନର ଦି'ପଦ ଦୁଃଖସୁଖ ହେବାକୁ କାହାରି ସମୟ ନାହିଁ । ଆଜି ସମସ୍ତେ ଜଣେ ଜଣେ ନିଜ ସ୍ୱପ୍ନର ସୌଦାଗର ପାଲଟି ଯାଇଥିଲେ ବି ପ୍ରାଣ ଉଲ୍ଲାସର ଶଂଖ, ହୁଳହୁଳି କିମ୍ବା ହରିବୋଲ ଧ୍ୱନି ଏବେକାର ସାଧବଙ୍କୁ ଆଉ ସ୍ୱାଗତ କରୁନାହିଁ । ସୁସ୍ଥ, ସରଳ ଓ ନିରୀହ ମାନସିକତା ବଦଳରେ ନିଜ ସୌଭାଗ୍ୟ ପାଇଁ ଅହରହ ଅବ୍ୟାହତ ରହିଥିବା ଉଦ୍ୟମ ନିଶ୍ଚୟ ଏକ ବିପନ୍ନ ଚିନ୍ତାଧାରା ନୁହେଁ- ଏହା ଆଗାମୀ ସମୟ ହିଁ କହିବ ।

ଅତୀତରେ ଭାରତବର୍ଷର ସମୁଦ୍ର ତଟରେ ଅନେକ ବନ୍ଦର ରହିଥିଲା । ଏହି ବନ୍ଦରଗୁଡିକରୁ ଆମ ଦେଶର ବଣିକମାନେ ପୂର୍ବ ଏସୀୟ ଦେଶଗୁଡିକୁ ନୌଯାତ୍ରା କରି ବ୍ୟବସାୟ ବାଣିଜ୍ୟ ଚଳାଇ ରଖିଥିଲେ । ସେହି ସମୟ ମଧ୍ୟରେ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ଏକ ଗୌରବ ଉଜ୍ଜ୍ୱଳ ଅଧ୍ୟାୟ । ଆମ ରାଜ୍ୟକୁ ବିଦେଶରେ ସୁପରିଚିତ କରାଇବା ସହିତ ବିପୁଳ ପରିମାଣର ଧନରତ୍ନ ଆଣି ଏ ମାଟିକୁ ଐଶ୍ୱର୍ଯ୍ୟଶାଳୀ କରିବାକୁ ଚେଷ୍ଟା

ଚଳାଇଥିଲେ । ସେସମୟରେ ସାଧବ ପୁଅର ଏକ ସ୍ୱତନ୍ତ୍ର ପରିଚୟ ଥିଲା । ବାଣିଜ୍ୟ ବ୍ୟବସାୟରେ ଉତ୍କର୍ଷ ସାଧନ କରିଥିବା ଏକ ସାହସୀ ସଂପ୍ରଦାୟକୁ ସାଧବର ଆଖ୍ୟା ଦିଆଯାଇଥିଲା । ସମାଜର ସବୁ ବର୍ଗର ଜନସାଧାରଣ ସେମାନଙ୍କୁ ସମ୍ମାନ ଜଣାଉଥିଲେ । ନିଜ ମାଟିରୁ ଉତ୍ପନ୍ନ ଫସଲ ତଥା ସାମଗ୍ରୀକୁ ବିକ୍ରୟ କରି ଅନ୍ୟ ମାଟିର ପଦାର୍ଥକୁ ଏଠାରେ ପରିଚିତ କରିବାର ଏକ ସୁନ୍ଦର ପ୍ରକ୍ରିୟା ଆରମ୍ଭ କରିଥିଲେ ସାଧବ ପୁଅ । ସେଇଥିପାଇଁ ଆମ ରାଜ୍ୟର କୁଟୀର ଶିଳ୍ପ ଏବଂ ଭାସ୍କର୍ଯ୍ୟ ତଥା କାରିଗରୀ କଳର ନିଖୁଣ ପ୍ରକାଶ କୌଶଳ ବିଶ୍ୱ ସମୁଦାୟକୁ ଆକୃଷ୍ଟ କରିଥିଲା । ଶିଳ୍ପୀ ଓ କାରିଗରମାନେ ଆହୁରି ଉତ୍ସାହିତ ହୋଇ ସେମାନଙ୍କର ବିକ୍ରୟ ପଦାର୍ଥକୁ ଚିତ୍ତାକର୍ଷକ କରିବା ସଂଗେ ସଂଗେ ଦି' ପଇସା ରୋଜଗାର କରିବାର ସୁଯୋଗ ଲାଭ କରୁଥିଲେ । ଅପର ପକ୍ଷରେ ବାହାର ଦେଶରେ ଏହାର ଚାହିଦା କ୍ରମଶଃ ବଢ଼ିବା ସଂଗେ ସଂଗେ ଏପରି ଏକ ଶିଳ୍ପ ସମୃଦ୍ଧ ଅଂଚଳକୁ ସ୍ୱଚକ୍ଷୁରେ ଦେଖିବା ପାଇଁ ଅନେକ ପରିଦର୍ଶକ ମଧ୍ୟ ଉତ୍କଳକୁ ଆସୁଥିଲେ । ଦ୍ରବ୍ୟଗୁଡ଼ିକର କ୍ରୟ ବିକ୍ରୟ ପାଇଁ କେବଳ ଜଳପଥରେ ବିଦେଶ ଯିବା ପାଇଁ ସେତେବେଳେ ମୁଖ୍ୟ ପଥ ଥିଲା ଏବଂ ସେହି ପୃଷ୍ଠଭୂମିରେ ବନ୍ଦରଗୁଡ଼ିକର ଆବଶ୍ୟକତା ଖୋଜା ଯାଉଥିଲା । ଉକ୍ତ ପ୍ରବନ୍ଧରେ ସେହି ବନ୍ଦରର ଭିତ୍ତିଭୂମିକୁ ଚିହ୍ନଟ କରିବା ଆମର ଲକ୍ଷ୍ୟ । ଚୀନର ପରିବ୍ରାଜକ ହୁଏନ୍‌ସାଂଙ୍କ ବର୍ଣ୍ଣନା ଅନୁଯାୟୀ 'ଚେଲିତାଲୋ' ଏକ ପ୍ରସିଦ୍ଧ ବାଣିଜ୍ୟ ନଗରୀ ଥିଲା ଏବଂ ଏହି ବନ୍ଦର ଉଡ୍ର ଦେଶରେ ହିଁ ରହିଥିଲା । ଅନେକ ଐତିହାସିକ ଏହାକୁ ଅନୁଶୀଳନ କରିଛନ୍ତି । 'ଚେଲିତାଲୋ'ର ପ୍ରକୃତ ଚୀନ୍ ଭାଷାର ଶବ୍ଦ ହେଉଛି – 'ଚାରିଦ୍ର୍ୟ' । ଯାହାର ସଂସ୍କୃତ ପ୍ରତିଶବ୍ଦ ହେଉଛି 'ଚରିତ୍ର ପୁର' । ଜେନେରାଲ୍ କନିଂହାମ୍, ଶ୍ରୀଯୁକ୍ତ ଆର.ଡି. ବାନାର୍ଜୀ ଏବଂ ଐତିହାସିକ ଡକ୍ଟର ନବୀନ କୁମାର ସାହୁ ଏହି ମତକୁ ଗ୍ରହଣ କରି ଶ୍ରୀକ୍ଷେତ୍ର ପୁରୀଠାରେ ଏହି ବନ୍ଦର ଥିଲା ବୋଲି ମତପୋଷଣ କରିଛନ୍ତି । ମାତ୍ର ଡକ୍ଟର ଓ୍ୱାଡେଲ ଚେଲିତାଲୋକୁ ଚିତ୍ରୋତ୍ପଳା ବୋଲି ମତପୋଷଣ କରିଛନ୍ତି । ଚିତ୍ରୋତ୍ପଳା ମହାନଦୀର ଏକ ଶାଖା ନଦୀ । ଏହି ନଦୀର 'ନନ୍ଦ୍ରା' ଠାରେ ଏକ ବନ୍ଦର ରହିଥିଲା । ସେହି ନଦୀ ତଟରେ ଏକ ଦୁର୍ଗର ଧ୍ୱଂସାବଶେଷ ମଧ୍ୟ ରହିଛି । ପୁରୀ ଜିଲା ଗେଜେଟିଅର୍‌ରେ ମଧ୍ୟ ଚିତ୍ରୋତ୍ପଳା ତଟରେ ଏକ ସମୃଦ୍ଧ ବନ୍ଦର ଥିବା କଥା ଲେଖା ହୋଇଛି । ପୁଣି କେତେକ ଐତିହାସିକ 'ଛତ୍ରପୁର'କୁ ମଧ୍ୟ 'ଚେଲିତାଲୋ' ବୋଲି ଚିହ୍ନିତ କରିଛନ୍ତି । ସେ ଯାହାବି ହେଉ ସାଧାରଣ ଜୀବନରେ ବାଣିଜ୍ୟ ବ୍ୟବସାୟର ଯଥେଷ୍ଟ ପ୍ରଭାବ ଥିବାରୁ ଏ ଦେଶରୁ ସେ ଦେଶକୁ ଓ ସେ ଦେଶରୁ ଏ ଦେଶକୁ ପଣ୍ୟ ଦ୍ରବ୍ୟର ଅଦଳବଦଳ କାରବାର ହୋଇ କ୍ରୟ ବିକ୍ରୟ ପାଇଁ ବନ୍ଦରର ଆବଶ୍ୟକତା ଯେ ଯଥେଷ୍ଟ ଥିଲା, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ଦୂରଦୂରାନ୍ତରୁ ବ୍ୟବସାୟୀମାନେ ଏବଂ ପଥିକମାନେ ଆସି ଏଠାରେ କ୍ଷଣସ୍ଥାୟୀ ଭାବରେ ରହୁଥିବା ହେତୁ ଧୀରେ ଧୀରେ ନଦୀତଟ କିମ୍ବା ସମୁଦ୍ର ତଟ ସ୍ଥଳଗୁଡ଼ିକ ବନ୍ଦର ନଗରୀ ବନି ଯାଇଥିଲା ବ୍ୟବସାୟର ପେଣ୍ଠସ୍ଥଳ ଭାବରେ । ଅନେକ ଲୋକଙ୍କ ରହଣିସ୍ଥଳ ହୋଇ ବେଶ୍ କୋଳାହଳମୟ ସମାଗମ ସ୍ଥଳୀ ଭାବରେ ପରିଚିତ ହେଉଥିଲା । ଫଳରେ ସେଠାରେ ପ୍ରାସାଦ, ଅଟାଳିକା, ସୁଉଚ୍ଚ ପ୍ରାଚୀର ଏବଂ ଉଦ୍ୟାନ ଇତ୍ୟାଦି ତୋଳାଯାଇ ତାହା ଏକ ପରିପୂର୍ଣ୍ଣ ମନୋରମ ଦର୍ଶନୀୟ ସ୍ଥଳଟିଏ ପାଲଟି ଯାଉଥିଲା । ପୁଣି ଅନେକଙ୍କ ଆତ୍ମାରୁ ଭକ୍ତି ଆହ୍ଲାଦରେ ଏଠାରେ ମଧ୍ୟ ତୋଳା ହେଉଥିଲା ମନ୍ଦିର ଓ ଉପାସନା ଗୃହ । ଶହଶହ ଲୋକଙ୍କର ସମାଗମରେ ଏହା ଏକ ପୁଣ୍ୟ ଓ ପବିତ୍ର କ୍ଷେତ୍ରରେ ଶୋଭା ପାଉଥିଲା । ସମାଜର ବିକାଶ ପାଇଁ ଏହି ବନ୍ଦର ନଗରୀରୁ ହିଁ ପରିବ୍ୟାପ୍ତ ହେଉଥିଲା ନୂତନ ସଭ୍ୟତା । ଆଜି ଆମ ଆଗରେ ସଭ୍ୟତାର ଯେଉଁ କ୍ରମବିକାଶ ଘଟିଛି, ତାହା ସେହି ବନ୍ଦର ନଗରୀରୁ ହିଁ ଆରମ୍ଭ ହୋଇଥିଲା ।

ଏହିସବୁ ଭବ୍ୟ ସୌନ୍ଦର୍ଯ୍ୟକୁ ଭଲ ପାଉଥିଲେ ବିଦେଶୀ ପରିବ୍ରାଜକ । ଏଠିକାର ମନୋରମ ପ୍ରାକୃତିକ ଦୃଶ୍ୟ, ସୁଉଚ୍ଚ ପ୍ରାଚୀର, ନଗରୀର ପରିମଳ ପରିବେଶ, ଶାନ୍ତ ଏବଂ ପରିଷ୍କାର ସହାବସ୍ଥାନ, ନଦୀରୁ ସମୁଦ୍ର ଆଡକୁ ଯାଉଥିବା ପୋତ ସେମାନଙ୍କ ମନକୁ ଆକର୍ଷିତ କରୁଥିଲା ଏବଂ ମନ, ହୃଦୟ ଓ ଆତ୍ମାକୁ ଛୁଇଁବା ଭଳି ଭାବ ବିହ୍ୱଳତା ମଣିଷର ଅତିନ୍ଦ୍ରିୟ ଚେତନାକୁ ଜାଗ୍ରତ କରୁଥିଲା ଏଠାରେ । ବଣିକମାନେ ସେମାନଙ୍କର ବ୍ୟବସାୟର ସାଧୁତାରେ ମୁଗ୍ଧ ହେଉଥିଲେ । ସାଧୁ ଓ ସନ୍ନ୍ୟାସୀମାନେ ଭକ୍ତି ଏବଂ ଉପାସନାର ଉପଯୁକ୍ତ ପରିବେଶ ପାଇଁ ନିଜକୁ ସମର୍ପିତ କରିଦେଉଥିଲେ ସାଧନାରେ । ସାରସ୍ୱତ ପ୍ରେମୀମାନେ ସୃଷ୍ଟିର ସୌନ୍ଦର୍ଯ୍ୟକୁ ନୂତନ ଭାବରେ ଉପଲବ୍ଧି କରିବାର ସୁଯୋଗ ପାଇ ପ୍ରକୃତିର ଐଶ୍ୱର୍ଯ୍ୟରୁ ଭାବ ଗ୍ରହଣ କରୁଥିଲେ । ସମାଜସେବୀମାନେ ସମାଜର ଦୁଃସ୍ଥ ଅବସ୍ଥାକୁ ଆନ୍ତରିକ ସେବା କରି ଦୂରେଇ ଦେଉଥିଲେ । ବିଜ୍ଞାନୀମାନେ ଗଢ଼ି ଚାଲିଥିଲେ ହସି ଉଠୁଥିବା ସମାଜର ସଫଳ ଯୋଜନା । ସାଧାରଣ ଜୀବନ ନିଶ୍ଚୟ ଏହି ସଭ୍ୟ ଚିନ୍ତାଧାରାରୁ ପୋଷଣ ଗ୍ରହଣ କରୁଥିଲା । ଏହି ବନ୍ଦର ନଗରୀରୁ ହିଁ ଉନ୍ମୋଚିତ ହେଉଥିଲା କ୍ରମବର୍ଦ୍ଧମାନ ସଭ୍ୟତାରେ ନୂତନ ଦିଗନ୍ତର ସତ୍ୟ ଏବଂ ମାନଚିତ୍ର ।

ପ୍ରଥମେ ସାଧବ ସଂପ୍ରଦାୟଟିଏ ସୃଷ୍ଟି ହେବା ଏବଂ ପରେ ନୌବାଣିଜ୍ୟକୁ ଜୀବନର ମୁଖ୍ୟ ଆଧାର ରୂପେ ଗ୍ରହଣ କରିବା ଏକ ସର୍ବଜ୍ଞାତ ବୈଜ୍ଞାନିକ ଦୃଷ୍ଟିକୋଣ । ଏହା ଅତୀତର କେଉଁ ସମୟରୁ ଆରମ୍ଭ ହୋଇଥିଲା ତାହାର କୌଣସି ସଠିକ ତଥ୍ୟ ଆମ ପାଖରେ ନାହିଁ । ଯଦି ତାହା ଥାଆନ୍ତା ତେବେ ଜଳ ଯାତ୍ରାରେ ଅନ୍ୟ ଦେଶର ବଣିକଙ୍କଠାରୁ ଆମ ରାଜ୍ୟର ବଣିକମାନେ ଯେ ସ୍ୱୟଂସିଦ୍ଧ ତାହା ଆମେ ପ୍ରମାଣ କରି ପାରନ୍ତେ । ପୁନଶ୍ଚ ପୁଣ୍ୟ ଦ୍ରବ୍ୟ ଭାବରେ କ୍ରୟ ବିକ୍ରୟ କରାଯାଉଥିବା ନିର୍ବାଚିତ ସାମଗ୍ରୀ ହିଁ ଆମ ମାଟି ମାଆର ଐଶ୍ୱର୍ଯ୍ୟ ଭଣ୍ଡାରରୁ ହିଁ ସଂଗୃହିତ । ଏହା ନିଶ୍ଚିତ ହେବା ପରେ ବନ୍ଦର ସ୍ଥାପନ ବ୍ୟବସ୍ଥାର ଉନ୍ନତି ପରିଲକ୍ଷିତ ହେଉଥିଲା । ତାହାପରେ ବନ୍ଦର ନଗରୀଟିଏ ପ୍ରତିଷ୍ଠା ଏବଂ ଏକ ସମୃଦ୍ଧ ନଗରୀରେ ପରିଣତ ହେବା ଘଟଣା ଘଟୁଥିଲେ ମଧ ଏହି ସ୍ୱର୍ଣ୍ଣାଭ ଅତୀତକୁ ସଠିକ ଅନୁଶୀଳନ କରି ଏହାର ସତ୍ୟ ଇତିହାସ ଲିପିବଦ୍ଧ କରିବା କାର୍ଯ୍ୟ ଆମ ମାଟିର ଗବେଷକଙ୍କଠାରୁ ଯାହା ମିଳିଛି ସେଥିରେ ବେଶୀ ମିଳିଛି ବିଦେଶୀ ମତ । ଯାହାକିଛି ଉପସ୍ଥାପିତ ହୋଇଛି ସେଥିରେ ସତ୍ୟ ଏବଂ ସଠିକତା ଖୁବ୍ କମ୍ । ଆମ ମାଟିର ଇତିହାସକୁ ଅନୁଭବ କରି ଜ୍ଞାନଚକ୍ଷୁରେ ଦେଖିଥିବା ଅନୁଭବି ଦ୍ରଷ୍ଟାଙ୍କର ତଥ୍ୟ ନୁହେଁ । ତାହା ସବୁ ବିଦେଶୀ ଗବେଷକଙ୍କ ଅନୁଶୀଳନରୁ ସଂଗୃହିତ । ଯାହା ଠାର, ଗାର ଓ ଅଣପଢ଼ ଭାଷାରେ ଲେଖାଯାଇଛି, ତାହାକୁ ଅନୁମାନ କରି ହିଁ ଇତିହାସକୁ କିଛି ଉପାଦାନ ଦିଆଯାଇଛି । ଏଥିରେ ସେତେ ସଠିକତା ଥିବା ଭଳି ମନେହୁଏ ନାହିଁ । ତେବେ କିଛି ନଥିବା ବେଳେ ଯାହା କିଛି ଅନୁଧ୍ୟାନ ହୋଇଛି ତାହାକୁ ଆମେ ଗ୍ରହଣ କରି ସାରିଛେ ହେଲେ ସେଥିରେ ଆଶଙ୍କା ଅନେକ ।

ଏଠାରେ ସ୍ପଷ୍ଟ ଏବଂ ସ୍ୱଚ୍ଛ କରିବାକୁ ହେବ ଯେ ଉତ୍କଳର ନୌବାଣିଜ୍ୟ ଏକ ସର୍ବ ପୁରାତନ ଜଳ ଯାତ୍ରାର କଥା । ଆମ ପୁରାଣରେ ଏହାର ଉଜ୍ଜ୍ୱଳ ଅଧ୍ୟାୟ ପରିପୂର୍ଣ୍ଣ । ପୁରାଣର ଅନେକ ଅଧ୍ୟାୟରେ ନୌଯାତ୍ରାର କଥା ଉଲ୍ଲେଖ ଅଛି । ଏହା ଆମ ଉତ୍କଳୀୟ ହୃଦୟକୁ ଏପରି ସ୍ପର୍ଶ କରିଛି ଯେ ତାହା ସାରା ଓଡିଶାକୁ ସେହି ଭାବ ଧାରାରେ ଆଚ୍ଛନ କରି ରଖିଛି । କାର୍ତ୍ତିକ ପୂର୍ଣ୍ଣିମାରେ ଭକ୍ତି ନିବେଦନ କରି ଭବ୍ୟ ଦୀପମାଳାରେ ସଜ୍ଜିତ ହୋଇ ଶହଶହ ପ୍ରତୀକ ବୋଇତ ଏ ରାଜ୍ୟର ଜଳ ସ୍ରୋତରେ ଭାସୁଥାଏ । ଏଇଥିରୁ ପ୍ରମାଣିତ ହୁଏ ଯେ– ସେଦିନର ପରମ୍ପରାରୁ ବହୁମୁଖୀ ବିକାଶ ଧାରା ସମାଜକୁ ନିଶ୍ଚୟ ଲୋକାର୍ପିତ ହେଉଥିଲା, ଯାହାକୁ ଏ ମାଟିର ଜନଗଣ ଭୁଲି ପାରି ନାହାନ୍ତି । ଯାହାଦିନେ ସାରା ବିଶ୍ୱକୁ ନୂତନ ଆଲୋକ ଦେଖାଇଥିଲା–ସେହି ମହାନ ସ୍ମୃତିକୁ ଭୁଲି ହେବ ବା କିପରି ?

ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାର ପାଇଁ ନିର୍ମିତ ହେଉଥିବା ମୂର୍ତ୍ତି ଓ ସ୍ତୁପ ଉତ୍କଳୀୟ ଶିଳ୍ପୀ ହାତରେ ଯେପରି ନିଖୁଣ ହେଉଥିଲା ତାହା ସାରା ବୌଦ୍ଧ ସଂସ୍କୃତିକୁ ଉତ୍ସର୍ଗ ହୋଇ ବିଦେଶକୁ ରପ୍ତାନି କରାଯାଉଥିଲା । ଏହି ବନ୍ଦରଗୁଡିକର ଜଳପଥ ଦେଇ ଏହା ଚୀନ, ଜାପାନ୍, ସିଂହଳ, ତିବ୍ବତ, ନେପାଳ ଆଦି ଦେଶଗୁଡ଼ିକୁ ପଠାଯାଉଥିଲା । ଏହାଦ୍ୱାରା ଉତ୍କଳୀୟ କଳା ଓ ଭାସ୍କର୍ଯ୍ୟର ଭୂୟସୀ ପ୍ରଶଂସା ମିଳୁଥିବା ବେଳେ ପ୍ରଚୁର ଅର୍ଥ ମଧ୍ୟ ଆୟ ହେଉଥିଲା । ଏହି ପ୍ରଚେଷ୍ଟାରେ ଏକ ଐଶ୍ୱର୍ଯ୍ୟଶାଳୀ ରାଜ୍ୟ ହୋଇଥିଲା ଉତ୍କଳ । ଏହାର ଧନଧାନ୍ୟର ଐଶ୍ୱର୍ଯ୍ୟ ମଗଧ ସମ୍ରାଟ ଅଶୋକଙ୍କୁ ପ୍ରଲୁବ୍ଧ କରି ତାଙ୍କ ଲୋଲୁପ ଦୃଷ୍ଟିକୁ ଟାଣି ଆଣିଥିଲା ଏ ମାଟିକୁ ।

ସମୟର ଅନୁକୂଳ ଏବଂ ଶୁଭ ବେଳାରେ ଉତ୍କଳର ସାଧବମାନେ ଶରତ ଋତୁର ଶେଷ ଭାଗ ଏବଂ ହେମନ୍ତ ଋତୁର ଆରମ୍ଭରେ ହିଁ ଏହି ନୌଯାତ୍ରା ଆରମ୍ଭ କରୁଥିଲେ ଏବଂ ପ୍ରତ୍ୟାବର୍ତ୍ତନ କରୁଥିଲେ ବର୍ଷା ଆଗମ କାଳରେ । ରାଜ୍ୟକୁ ଧନ, ଧାନ୍ୟ, ଯଶ, ଶ୍ରୀରେ ଗୌରବ ମଣ୍ଡିତ କରି ସଭ୍ୟତାକୁ ସମୃଦ୍ଧ କରୁଥିଲେ ସାଧବମାନେ । ଏହି ଶୁଭଯାତ୍ରା ଆରମ୍ଭ ହେଉଥିଲା ଗଭୀର ନଦୀ ଜଳର ପଥରେ । ସେହି ସ୍ରୋତରେ ଯାତ୍ରାକରି ମୁହାଣ ବାଟେ ସମୁଦ୍ରକୁ ପ୍ରବେଶ କରୁଥିଲେ ବଣିକମାନେ । ଏହିପରି ଭାବରେ ନଦୀ ଓ ସମୁଦ୍ର ତୀରରେ ହିଁ ଗଢ଼ି ଉଠିଥିଲା ଅନେକ ସୁଦୃଶ୍ୟ ବନ୍ଦର । ବ୍ରାହ୍ମଣୀ, ବୈତରଣୀ, ବୁଢାବଳଙ୍ଗ, ସୁବର୍ଣ୍ଣରେଖା, ମହାନଦୀ. ଚିତ୍ରୋତ୍ପଳା ଏବଂ ବଙ୍ଗୋପସାଗରର ପାରାଦ୍ୱୀପ, ଧାମରା, ପୁରୀ, ଚିଲିକା, ଗୋପାଳପୁର ଓ ଛତ୍ରପୁର ଆଦି ସ୍ଥାନରେ ଏହି ଚେଲିତାଲୋ ବା ବନ୍ଦର ସଭ୍ୟତା ରହିଥିବା କଥା ସ୍ୱୀକାର୍ଯ୍ୟ ।

ପ୍ରାଚୀନ ଉତ୍କଳର ରାଜଦରବାର ଏହି ପ୍ରଗତିଶୀଳ ନୌବାଣିଜ୍ୟ ବ୍ୟବସ୍ଥାକୁ ପୃଷ୍ଠପୋଷକତା ଯୋଗାଉ ଥିଲେ । ଭୌମ ସାମ୍ରାଜ୍ୟର ଅଧିକାଂଶ ବାଣିଜ୍ୟ କାରବାର ଏହି ବନ୍ଦର ବାଟ ଦେଇ ହେଉଥିଲା । ଭୌମ ସମୟରେ ବନ୍ଦରର ଅଧିଷ୍ଠାତ୍ରୀ ଦେବୀ ରୂପରେ ଜଙ୍ଖିଆର ତେନ୍ତୁଳି ଗଛ ପାଖରେ ମାଟିତଳେ ନିର୍ମିତ ଏକ ମନ୍ଦିରରେ ଦେବୀ ଦୁର୍ଗାଙ୍କୁ ପ୍ରତିଷ୍ଠା କରାଯାଇ ପୂଜା ଉପାସନା କରାଯାଉଥିଲା ।

ଉତ୍କଳୀୟ ବନ୍ଦର ସଭ୍ୟତାର ଉତ୍କର୍ଷକୁ ଦେଖି ଚୀନ ପରିବ୍ରାଜକ ହୁଏନ୍‌ସାଂ ମନ ଖୁସିରେ ବୋଧହୁଏ ଏହି ସଭ୍ୟତାର

ନାମକରଣ କରିଥିଲେ । 'ଚାରିଦ୍ର୍ୟ' ବା 'ଚେଲିତାଲୋ' ପ୍ରସ୍ତର ଏବଂ ମାଟିଶିଳ୍ପ ପାଇଁ ଉତ୍କଳର ରାଧାନଗର ସାରା ଭାରତବର୍ଷରେ ପ୍ରସିଦ୍ଧି ଲାଭ କରିଥିଲା । ତେଣୁ ଅଧୁନା ଏଠାରେ ଖନନବେଳେ ବହୁଳ ଭାବରେ ବଡ ବଡ ଗୃହର ଅବଶେଷ ଅଂଶ, ଘରକରଣା ସାମଗ୍ରୀ, ଗହଣା, କୂଅ ଏବଂ ମାଟି, ପ୍ରସ୍ତର ଓ ଧାତବ ସାମଗ୍ରୀର ମୂର୍ତ୍ତି ଇତ୍ୟାଦି ମିଳୁଅଛି । ଯାହା ଜଣାଯାଏ ଖ୍ରୀଷ୍ଟ. ୧୧ ଶହ ଶତାବ୍ଦୀ ବେଳକୁ ଚେଲିତାଲୋ ବା ବନ୍ଦର ସଭ୍ୟତା ଧୀରେ ଧୀରେ ଦୁର୍ବଳ ହୋଇଯାଇଥିଲା । ଭୌମବଂଶର ପତନ ପରେ ସୋମବଂଶୀମାନଙ୍କ ପୃଷ୍ଠପୋଷକତା ଅଭାବରୁ ଏହି ବନ୍ଦର ନିଷ୍ପ୍ରଭ ହୋଇଗଲା । କାରବାର ସବୁ ମାନ୍ଦା ପଡିଗଲା । ବିଶେଷକରି ପ୍ରାକୃତିକ ଦୁର୍ଯୋଗ ହେତୁ ବ୍ରାହ୍ମଣୀ ନଦୀର ଶଯ୍ୟା ପରିବର୍ତ୍ତନ, ବର୍ଷାର ଅନିୟମିତତା ବନ୍ଦର ପାଇଁ ଜଳାଭାବ ହେତୁ ଏହା ବନ୍ଦର ହୋଇଯାଇଥିଲା । ପ୍ରାଚୀନ ଉତ୍କଳର ଅତୀତରେ ଘଟିଥିବା ଅନେକ ସତ୍ୟର ସଠିକ ପ୍ରମାଣ ମିଳିପାରିବ ନାହିଁ । ଏହା ସତ୍ୟ । ଆଜି ଯାହା କିଛି ଜନାଦୃତ ହୋଇଛି ତାହା କେବଳ ବହୁ ପଛରେ ଲେଖା ଯାଇଥିବା ଆନୁମାନିକ ଇତିହାସରୁ । ହୁଏନ୍‌ସାଙ୍ଗ ବର୍ଣ୍ଣିତ ଚେଲିତାଲୋ ଅର୍ଥାତ ବନ୍ଦର ସଭ୍ୟତାର ଭିତ୍ତିଭୂମି ସାରା ଉତ୍କଳରେ ହିଁ ରହିଥିଲା । ଆମ ଅଂଚଳର ଧର୍ମଶାଳା କିମ୍ବା ଯାଜପୁର ନିକଟସ୍ଥ ଚକ୍ରୋଡା–ରାଧାନଗରଠାରେ ଯେଉଁ ସୁନ୍ଦର ବନ୍ଦରଟିଏ ଗଢ଼ି ଉଠିଥିଲା, ତାହା ଆଉ ଆଜି ନାହିଁ । ସେହି ବନ୍ଦର ଉପରେ ଆଧୁନିକ ଗ୍ରାମ ଚମ୍ପୁ ଗଢ଼ିଉଠିଛି । ବର୍ତ୍ତମାନ ଉତ୍କଳରେ ବହୁ ବାଣିଜ୍ୟ ଆଜି ଶୀର୍ଷ ସ୍ଥାନରେ ପହଞ୍ଚିଛି । ଏଠାର ସୁନ୍ଦର ଏବଂ ଭବ୍ୟ ବନ୍ଦର ପାରାଦ୍ୱୀପ ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । ଏହାଛଡା ଓଡିଶାର ଧାମରା ଓ ଗୋପାଳପୁର ମଧ୍ୟ ବିଶ୍ୱ ମାନଚିତ୍ରରେ ଧୀରେ ଧୀରେ ଆତ୍ମପ୍ରକାଶ କରିବାକୁ ଅଣ୍ଟାଭିଡି ବାହାରିଛି । ଦିନେ ନା ଦିନେ ଏହା ଉନ୍ନତ ବନ୍ଦରରେ ପରିଣତ ହେବ ଏଥିରେ ସନ୍ଦେହର ଅବକାଶ ନାହିଁ । ଚିଲିକାରେ ନୌସେନାର ତାଲିମ କାର୍ଯ୍ୟକ୍ରମ ଏବଂ ଚାନ୍ଦିପୁରର କ୍ଷେପଣାସ୍ତ୍ର ଘାଟି ଆଧୁନିକ ଓଡିଶାର ସମୃଦ୍ଧ ଅନୁଷ୍ଠାନ । ଆଧୁନିକ ଓଡିଶାର ସର୍ବାଙ୍ଗୀନ ବିକାଶ ପାଇଁ ଏହି ବନ୍ଦରଗୁଡିକର ଉଜ୍ଜ୍ୱଳ ଭବିଷ୍ୟତ ଦେଖାଯାଉଛି । ଏହି ବନ୍ଦର ସଭ୍ୟତାର ସ୍ମୃତି ଓ ସ୍ମାରକୀ ହୋଇ କଟକ ଓ ପାରଦ୍ୱୀପର ପ୍ରସିଦ୍ଧ ବାଲିଯାତ୍ରା ଆଜି ମଧ୍ୟ ଉତ୍ସବ ମୁଖର ହୋଇଉଠୁଛି । ପ୍ରାଚୀନ ଉତ୍କଳର ସ୍ୱର୍ଣ୍ଣାଭ ବନ୍ଦର ସଭ୍ୟତାକୁ ଜିନ୍ଦାବାଦ କରି ଆଜିର ଓଡିଶା ପାଇଁ ଏହି ବନ୍ଦର ସଭ୍ୟତାରେ ସମ୍ଭାବ୍ୟ ସୌଭାଗ୍ୟର ପଥ ସମୁଜ୍ଜ୍ୱଳ କରୁ ଏତିକି ହିଁ କାମନା ।

ଅକରପଡା, ପୋ– ନଳୀପୁର
ଭାୟା–ବାଲିଚନ୍ଦ୍ରପୁର, ଜି–କଟକ



## ଗ୍ରାମ ରୋଜଗାର ସେବକଙ୍କ ମାସିକ ପ୍ରାପ୍ୟ ବୃଦ୍ଧି

ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ କାର୍ଯ୍ୟରତ ଗ୍ରାମ ରୋଜଗାର ସେବକଙ୍କ ମାସିକ ଦରମା ୩ ହଜାର ଟଙ୍କାରୁ ୩ ହଜାର ୫୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏହା ସହିତ ୧୩୪୩ ଜଣ ଗ୍ରାମ ରୋଜଗାର ସେବକଙ୍କ ନିଯୁକ୍ତିକୁ ଅର୍ଥ ବିଭାଗ ପକ୍ଷରୁ ଅନୁମୋଦନ କରାଯାଇଛି । ମୋଟ ୬୨୩୪ ଗ୍ରାମ ରୋଜଗାର ସେବକ ଏହାଦ୍ୱାରା ଉପକୃତ ହେବେ । ଏହି ସମ୍ପର୍କିତ ପ୍ରସ୍ତାବକୁ ପଞ୍ଚାୟତିରାଜ ମନ୍ତ୍ରୀ ଡକ୍ଟର୦୦ ଅରୁଣ କୁମାର ସାହୁ ଅନୁମୋଦନ କରିଛନ୍ତି । ସରକାରଙ୍କ ଏହି ନିଷ୍ପତ୍ତିକୁ ରାଜ୍ୟ ଗ୍ରାମ ରୋଜଗାର ସେବକ ସଂଘର ସଭାପତି ବଦ୍ରି ମହାନ୍ତି ସ୍ୱାଗତ କରିଛନ୍ତି ।

# ପ୍ରାଚୀନ କଳିଙ୍ଗ

**ସୁପ୍ରଭା ମିଶ୍ର**

ପ୍ରାଚୀନ ଯୁଗରେ ପୃଥିବୀକୁ ସାତ ଭାଗରେ ବିଭକ୍ତ କରାଯାଇଥିଲା ଏବଂ ପ୍ରତ୍ୟେକ ଭାଗକୁ ଗୋଟିଏ ଗୋଟିଏ ଦ୍ୱୀପ କୁହାଯାଉଥିବାରୁ ପୃଥିବୀର ଅନ୍ୟନାମ ଥିଲା 'ସପ୍ତଦ୍ୱୀପାମହୀ' । ଏହି ଦ୍ୱୀପର ଅଞ୍ଚଳ ବିଶେଷକୁ ନେଇ 'ବର୍ଷ' ର କଳ୍ପନା କରାଯାଇଥିଲା । ପୁରାଣମାନଙ୍କରେ ହରିବର୍ଷ, ରମ୍ୟକବର୍ଷ, ଇଳାବୃତବର୍ଷ, ଭାରତବର୍ଷ ପ୍ରଭୃତି ନାମ ଦେଖିବାକୁ ମିଳେ । ସେହି ଅନୁସାରେ ଭାରତବର୍ଷ ହେଉଛି ଜମ୍ବୁଦ୍ୱୀପ ମଧ୍ୟସ୍ଥ ଏକ ଜନବସତିପୂର୍ଣ୍ଣ ଭୂଖଣ୍ଡ ଓ ଏହା ଶକଟାକାର ଅଟେ । ଅର୍ଥାତ ଏହାର ଦକ୍ଷିଣ ଭାଗ କ୍ରମେ ସୂକ୍ଷ୍ମ ହେବାବେଳେ ଉତ୍ତର ଭାଗ କ୍ରମଶଃ ବିସ୍ତୃତ ଅଟେ । ଏହାର ପୂର୍ବ, ଦକ୍ଷିଣ ଓ ପଶ୍ଚିମରେ ମହାସାଗର ତଥା ଉତ୍ତର ଦିଗରେ ହିମାଳୟ ପର୍ବତମାଳା ଅବସ୍ଥିତ ।

ପ୍ରାଚୀନ ପୁରାଣ, ଶାସ୍ତ୍ରମାନଙ୍କରେ ଭାରତବର୍ଷରେ ନାନାବିଧ ରାଜ୍ୟ ରହିଥିବାର ବର୍ଣ୍ଣନା ଅଛି । ପାଣିନୀଙ୍କ 'ଅଷ୍ଟାଧ୍ୟାୟୀ ସୂତ୍ର' ଓ ବରାହ ମିହିରଙ୍କ 'ବୃହତ୍ ସଂହିତା'ରେ ଭାରତବର୍ଷର ବିଭିନ୍ନ ରାଜ୍ୟ, ନଦନଦୀ ଓ ପର୍ବତ ଆଦିର ନାମ ଉଲ୍ଲେଖ ଅଛି । ପୁରାଣ ବର୍ଣ୍ଣିତ ନାମକରଣ ଅନୁସାରେ ସମାନ ଭାବେ ସ୍ଥାନ ପାଇ ଆସିଥିବା ରାଜ୍ୟମାନଙ୍କ ମଧ୍ୟରୁ 'କଳିଙ୍ଗ' ନାମଟି ଅନ୍ୟତମ । ଏହି 'କଳିଙ୍ଗ' ଭାରତର ଅଗ୍ନିକୋଣରେ ଅବସ୍ଥିତ । ଏହାର ସ୍ଥଳଭାଗ ପ୍ରାୟ ଦୁଇଲକ୍ଷ ବର୍ଗ କି.ମି. । ତା' ମଧ୍ୟରୁ ଏକ ଲକ୍ଷ ବର୍ଗ କି.ମି. ଅରଣ୍ୟାନି ଓ ପାଞ୍ଚଶହ ବର୍ଗ କି.ମି. ସମୁଦ୍ରାଞ୍ଚଳ ଅଟେ । ବଙ୍ଗ, ମଗଧ, କୋଶଳ ଓ ଦକ୍ଷିଣାପଥ ମଧ୍ୟସ୍ଥ ଏହା ଏକ ବିଶାଳ ଭୂଖଣ୍ଡ । କେତେବେଳେ ଏହା ଉଡ୍ର ତ କେତେବେଳେ ଉତ୍କଳ, ଆଉ କେତେବେଳେ ଏହା ତୋଷାଳୀ ନାମରେ ନାମିତ ହୋଇଅଛି । ପୁଣି ଏହାର କିଛି ଅଂଶ କଳିଙ୍ଗ ନାମରେ ତ ଆଉ କିଛି ଅଂଶ ଉତ୍କଳ ନାମରେ ଅଭିହିତ ଅଛି । ହରିବଂଶ, ବାୟୁପୁରାଣ, ମତ୍ସ୍ୟ ପୁରାଣ, ଅଗ୍ନି ପୁରାଣ, ମହାଭାରତ, ରଘୁବଂଶରେ ଏହା ଉଭୟ ଉତ୍କଳ ଓ କଳିଙ୍ଗ ଭାଗରେ ବିଭକ୍ତ ହୋଇଥିବା ଜଣାପଡେ । ସ୍କନ୍ଦପୁରାଣ, କାଳିକା ପୁରାଣରେ ଏହାକୁ 'ଉଡ୍ଡୀୟାନ୍' ରୂପେ ବର୍ଣ୍ଣନା କରାଯାଇଛି । ପଦ୍ମପୁରାଣ ଓ ବିଷ୍ଣୁ ଧର୍ମୋତ୍ତର ପୁରାଣରେ ଏହା ଉଡ୍ର ରୂପେ ବର୍ଣ୍ଣିତ । ଏସବୁରୁ ଅନୁମିତ ହୁଏ ଯେ କଳିଙ୍ଗ, ଉତ୍କଳ, ଉଡ୍ର, ଉଡ୍ଡୀୟାନ୍ ନାମ ଅନୁଯାୟୀ ଭିନ୍ନ ଦିଶୁଥିଲେ ମଧ୍ୟ ବସ୍ତୁତଃ ଏହା ଗୋଟିଏ ରାଜ୍ୟ । ଭିନ୍ନଭିନ୍ନ କାରଣରୁ ଭିନ୍ନଭିନ୍ନ ସମୟରେ ଏହା କେତେବେଳେ ଅଲଗା ହୋଇ ରହୁଥିଲା ତ କେତେବେଳେ ଏକ ସୀମା-ସରହଦ୍ ମଧ୍ୟରେ ରହି ଆସୁଥିଲା । ସେ ଯାହା ହେଉନା କାହିଁକି କଳିଙ୍ଗର ପ୍ରତିପତ୍ତି ଆବହମାନ କାଳରୁ କୌଣସି ପୁରାଣଲେଖକ ବା ଗ୍ରନ୍ଥକର୍ତ୍ତାଙ୍କ ଆଖିରୁ ଯେ ବାଦ୍ ଯାଇନାହିଁ- ଏଥିରେ ସନ୍ଦେହ ନାହିଁ ।

'କଳିଙ୍ଗ'ର ନାମକରଣର ମୂଳବୀଜ ଖୋଜିବାକୁ ହେଲେ ଏହି ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ କେଉଁଠାରେ ମିଳେ ନାହିଁ । ଯାହା ଜଣାପଡେ କଳିଙ୍ଗ କେବଳ ଗୋଟିଏ ରାଜ୍ୟର ନାମ । ମହାଭାରତରୁ ଜଣାଯାଏ ଯେ ପୁରାକାଳରେ ଭାରତବର୍ଷର ପୂର୍ବଖଣ୍ଡକୁ ବାଳୀ ନାମରେ ଜଣେ ରାଜା ଶାସନ କରୁଥିଲେ ଓ ସେ ଧନ-ଜନ-ଗୋପ-ଲକ୍ଷ୍ମୀରେ ପରିପୂର୍ଣ୍ଣ ଥିଲେ । ତାଙ୍କର ପାଞ୍ଚପୁଅ ଥିଲେ । ସେମାନଙ୍କ ନାମ ହେଉଛି ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ । ସେମାନେ ଉତ୍ତରାଧିକାର ସୂତ୍ରରେ ପିତୃଶାସିତ ପୂର୍ବଖଣ୍ଡ ରାଜ୍ୟକୁ ଭାଗଭାଗ କରି ନିଜ ନାମରେ ନାମିତ କରିଥିଲେ । ସେହି ଅନୁସାରେ କଳିଙ୍ଗ ଜଣେ ରାଜାଙ୍କ ନାମ ଓ ତାଙ୍କ ଦ୍ୱାରା ଶାସିତ ରାଜ୍ୟର ନାମ ମଧ୍ୟ 'କଳିଙ୍ଗ' ଶବ୍ଦ ପ୍ରାଚୀନ ପୁରାଣ, ଶାସ୍ତ୍ରମାନଙ୍କରେ ବହୁ ମାତ୍ରାରେ ପ୍ରୟୋଗ ହୋଇଅଛି ।

ବୌଦ୍ଧ ସାହିତ୍ୟ, ଜୈନ ଧର୍ମଗ୍ରନ୍ଥ, ପାଣିନୀଙ୍କ 'ଅଷ୍ଟାଧ୍ୟାୟୀ ସୂତ୍ର' ଓ ଶତପଥ ବ୍ରାହ୍ମଣରେ ମଧ୍ୟ କଳିଙ୍ଗ ନାମ ଉଲ୍ଲେଖ ଅଛି । ଏଣୁ ମନେହୁଏ ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀରୁ କଳିଙ୍ଗ ଭାରତବର୍ଷରେ ଖ୍ୟାତି ଲାଭ କରି ସାରିଥିଲା ଏବଂ ଭାରତର ଏ ପ୍ରାନ୍ତରୁ ସେ ପ୍ରାନ୍ତ ଯାଏ ସମସ୍ତ ଧର୍ମଶାସ୍ତ୍ର, ପୁରାଣ, ଆଖ୍ୟାନ, ଆଖ୍ୟାୟିକାରେ ସ୍ଥାନ ପାଇ ଆସିଥିଲା ।

ପ୍ରଥମେ କଳିଙ୍ଗ ଏକ ଅପାଙ୍କ୍ତେୟ ଦେଶ ଥିଲା ବୋଲି ଅନୁମାନ କରାଯାଏ । ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀ ପୂର୍ବରୁ ଲିଖିତ ଶତପଥ ବ୍ରାହ୍ମଣ, ବାଗୁର ସଂହିତା, ବୌଧାୟନ ଧର୍ମସୂତ୍ରରେ ନିର୍ଦ୍ଦେଶ ରହିଛି । ଯଦି କେହି କୌଣସି କାରଣରୁ କଳିଙ୍ଗ ଦେଶରେ ପଦାର୍ପଣ କରେ ତେବେ ତାକୁ ଯଥାବିଧି ପ୍ରାୟଶ୍ଚିତ କରିବାକୁ ପଡିବ । ଅର୍ଥାତ ସେ ପୁନଃସଂସ୍କାରର ଯୋଗ୍ୟ । କାରଣ– କଳିଙ୍ଗ ଦେଶରେ ଚାତୁର୍ବର୍ଣ୍ଣ୍ୟ ବିଧାନ ନାହିଁ । ସେଠାରେ ଶାଶ୍ୱତ ଧର୍ମ ପାଳନ କରାଯାଏ ନାହିଁ କି ଶୁଦ୍ଧ ଭାଷା ଉଚ୍ଚାରଣ ହୁଏ ନାହିଁ । ମାତ୍ର ପରବର୍ତ୍ତୀ କାଳରେ ରଚିତ ବିଷ୍ଣୁପୁରାଣରେ କଳିଙ୍ଗ ଦେଶର ଦ୍ୱିଜମାନେ ବାସ କରୁଥିବା ବିଷୟରେ ଲେଖାଯାଇଛି । ଏଥିରୁ ସହଜରେ ଅନୁମିତ ହୁଏ ଯେ ପ୍ରଥମେ କଳିଙ୍ଗ ଶାଶ୍ୱତ ଧର୍ମ ପାଳନ କରୁଥିବା ଏକ ବାସସ୍ଥଳୀ ଥିଲା । ପରେ ସେଠାରେ ଦ୍ୱିଜମାନେ ବସବାସ କରିବା ଫଳରେ ତଥାକଥିତ କଳିଙ୍ଗଦେଶ ଆଉ ଅପବିତ୍ର ହୋଇ ରହି ନଥିଲା ।

ଗ୍ରୀକ୍ ଐତିହାସିକ ପ୍ଲିନି ସାହେବ କହନ୍ତି '' ଗଙ୍ଗାନଦୀର ଏ ପଟକୁ କଳିଙ୍ଗ ନାମକ ଏକ ଆଦିବାସୀ ଗୋଷ୍ଠୀ ବାସ କରି ଆସୁଥିଲେ । ସେମାନେ ଆର୍ଯ୍ୟ ଗୋଷ୍ଠୀର ବିରୋଧୀ ଥିଲେ । '' ସେହିପରି ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀର ଭୌଗଳିକ ଟଲେମିଙ୍କ ବକ୍ତବ୍ୟରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ତତ୍‌କାଳୀନ ଭାରତବର୍ଷରେ ବୈଦିକ–ଆର୍ଯ୍ୟ ଓ ସିନ୍ଧୁ ତଟ ନିବାସୀ ଦ୍ରାବିଡଙ୍କ ସଭ୍ୟତା ମଧ୍ୟରେ ଆଉଏକ ଆଦିବାସୀ ସଭ୍ୟତା ବିସ୍ତୃତି ଲାଭ କରିଥିଲା । ତାହାକୁ ଆଦିମ–ଶବର–ଗୋଷ୍ଠୀ ବ୍ୟତୀତ ଅନ୍ୟ କିଛି କୁହାଯାଇ ନ ପାରେ । ଏମାନେ ଗଙ୍ଗାନଦୀର ଦକ୍ଷିଣ ପଟକୁ ପରିବ୍ୟାପ୍ତ ହୋଇ ରହିଥିଲେ । ତାଙ୍କ ଭାଷାରେ ସେମାନେ କଳିଙ୍ଗର ଗଙ୍ଗାରିଡି । ଅର୍ଥାତ ଗଙ୍ଗାତଟବାସୀ କଳିଙ୍ଗର ଅଧିବାସୀ ସମସ୍ତେ ମୁଣ୍ଡାରି ଶ୍ରେଣୀର । ଏଥିରେ ସତ୍ୟତା ଯାହା ଥାଉନା କାହିଁକି ଏହା ନିଶ୍ଚୟ ସତ୍ୟ ଯେ ମଗଧ ରାଜ୍ୟ ଏକଦା ଶବର ଗୋଷ୍ଠୀର ଶାସନାଧୀନ ଥିଲା । ଗଙ୍ଗାର ଦକ୍ଷିଣ ପଟକୁ 'କଳିଙ୍ଗ'ମାନେ ବାସ କରୁଥିଲେ । ସେମାନେ ଆଦିବାସୀ ତଥା ବଣ୍ୟ ଜାତିର ହୋଇଥିବା ହେତୁ ସେମାନଙ୍କ ଧର୍ମ ଧାରଣା, ସଂସ୍କୃତି, ସାମାଜିକ ଚଳଣି ଓ ଜୀବନଯାତ୍ରା ବୈଦିକ ସମାଜର ଚଳଣିଠାରୁ ଭିନ୍ନ ଥିଲା । ହୁଏତ ଏହି କାରଣରୁ କଳିଙ୍ଗ ଏକ ଅପବିତ୍ର ରାଜ୍ୟ ରୂପେ ପରିଗଣିତ ହୋଇ ଆସୁଥିଲା । ଐତିହାସିକମାନଙ୍କ ମତରେ କଳିଙ୍ଗରେ ଯେଉଁମାନେ ବସତି ସ୍ଥାପନ କରିଥିଲେ, ସେମାନେ ହେଉଛନ୍ତି ପ୍ରସ୍ତର ଯୁଗୀୟ ଆଦିମ ଅଧିବାସୀ ଯେଉଁମାନେ' ବିନ୍ଧ୍ୟ ମୌଳିକ' ଗୋଷ୍ଠୀ ନାମରେ ଖ୍ୟାତ । ଏମାନେ ଅନନ୍ତ କାଳରୁ ବିନ୍ଧ୍ୟଗିରି ମାଳ ଅଞ୍ଚଳରେ ରହିଆସିଛନ୍ତି । ଅଷ୍ଟ୍ରିକ୍ ଗୋଷ୍ଠୀ ସହିତ ଏମାନଙ୍କର ସାମଞ୍ଜସ୍ୟ ଅଛି । ଏମାନଙ୍କ ଦେହର ରଙ୍ଗ କଳା । ମୁହଁ ଗୋଲାକାର, ବୃତ୍ତି ଶିକାର କରିବା, ବଣରୁ ଫଳମୂଳ ଆଦି ତୋଳି ଖାଇବା । ବିପଦରୁ ରକ୍ଷା ପାଇବା ପାଇଁ ପଥରକୁ ଘଷି ମାଜି ଏମାନେ ଅସ୍ତ୍ର ତିଆରି କରୁଥିଲେ । ଏମାନେ ପୂରାପୂରି ଉଲଗ୍ନ ରହୁଥିଲେ କିମ୍ବା ପତ୍ର ଓ ବକ୍କଳ ଦ୍ୱାରା ନିଜ ଦେହ ଲଜ୍ଜା ନିବାରଣ କରୁଥିଲେ । ଓଡିଶାର ପାହାଡ ଅଞ୍ଚଳରେ ଏବେ ମଧ୍ୟ କେତେକ ଅଧିବାସୀ ଏହିଭଳି ଜୀବନଯାପନ କରୁଥିବାର ଦେଖାଯାଏ । ସେମାନଙ୍କ ବଂଶ ତେଣୁ ଲୋପ ପାଇନାହିଁ । ସେମାନଙ୍କ ଜୀବନ ଦର୍ଶନ ହେଉଛି ନିର୍ଭୟରେ ବଞ୍ଚିବା ଏବଂ ବଞ୍ଚି ରହିବାର ଅର୍ଥ ଜୀବନକୁ ଉପଭୋଗ କରିବା ।

ଅପ୍ରତ୍ୟାସିତ ବିପଦରୁ ରକ୍ଷା ପାଇବା ପାଇଁ ଅଦୃଶ୍ୟ ଶକ୍ତିର ମାଧ୍ୟମ ରୂପେ ଏମାନେ ପର୍ବତ, ଝରଣା, ମାଟି, ପଥର, ବୃକ୍ଷାଦିକୁ ପୂଜା କରୁଥିଲେ ଓ ପ୍ରତି କଥାରେ ସେସବୁର ଶରଣାପନ୍ନ ହେଉଥିଲେ । ଏହା ଥିଲା ସେମାନଙ୍କର ଜୀବନଚର୍ଯ୍ୟା । ଏଥିପାଇଁ ସେମାନେ କୌଣସି ହେତୁ ଖୋଜୁ ନଥିଲେ କି ନିଷ୍ଠୁର କ୍ରିୟାକର୍ମ କରୁ ନଥିଲେ । ମୋଟ ଉପରେ କହିବାକୁ ଗଲେ ସେମାନେ ଥିଲେ ଅହେତୁବାଦୀ ଓ ଅକ୍ରିୟାବାଦୀ । ସେମାନେ ହେଉଛନ୍ତି ଭାରତର ମୂଳ ଅଧିବାସୀ– ଆଦିବାସୀ ।

ପରବର୍ତ୍ତୀ ସମୟରେ ବୈଦିକ ସଭ୍ୟତାର ବିକାଶ ପୂର୍ବରୁ ଯେଉଁ ଇତର ସଭ୍ୟତା ସମ୍ପନ୍ନ ଗୋଷ୍ଠୀ ସ୍ୱକୀୟ ସାମ୍ରାଜ୍ୟ ସ୍ଥାପନ କରିବା ଲାଳସା ରଖି ମୂଳ ଆଦିବାସୀ ଗୋଷ୍ଠୀକୁ ସ୍ଥାନାନ୍ତରିତ କରିବାରେ ସଫଳ ହୋଇଥିଲେ, ସେମାନେ ଏହି ଆଦିବାସୀ ଗୋଷ୍ଠରଙ୍କଠାରୁ ଅପେକ୍ଷାକୃତ ଶିକ୍ଷିତ ହୋଇଥାଇ ପାରନ୍ତି । ଏମାନଙ୍କୁ ଦ୍ରମିଳ କୁହାଯାଏ । ଆଦିମ ଅଧିବାସୀ ଗୋଷ୍ଠୀର ଉଚ୍ଛେଦ ସାଧନ କରି ସେମାନେ ଯେଉଁ କଳା, ସ୍ଥାପତ୍ୟ, ନଗର ନିର୍ମାଣ କୌଶଳର ନମୁନା ହୋଇଯାଇଛନ୍ତି, ତାହା ମହେଞ୍ଜୋଦାରୋ ଓ ହରପ୍ପାରୁ ମିଳିଥିବା ଉପାଦାନଗୁଡିକରୁ ସ୍ପଷ୍ଟ ପ୍ରତୀତ ହୁଏ ।

ଏଥିସହିତ ପରବର୍ତ୍ତୀ ସମୟରେ ଘଟିଯାଇଥିବା ଗୋଷ୍ଠୀ ସଂଘର୍ଷର ଚିତ୍ର ବେଦମନ୍ତ୍ରମାନଙ୍କରୁ ଜଣାପଡେ । ହେଲେ ଦ୍ରମିଳମାନଙ୍କର ପ୍ରତିଷ୍ଠିତ ରାଜ୍ୟ ପରେ ପରେ ତା' ଅପେକ୍ଷା ଅଧିକ ଶିକ୍ଷିତ ଓ ସଭ୍ୟତା ସମ୍ପନ୍ନ ଆର୍ଯ୍ୟ ସମାଜ ଦ୍ୱାରା ଅଧିକୃତ ହୋଇଥିଲା– ଏକଥା ନିସନ୍ଦେହରେ କୁହାଯାଇପାରେ ।

ଦ୍ରମିଳଙ୍କ ଦ୍ୱାରା ପରାଜିତ ଆଦିବାସୀ ଗୋଷ୍ଠୀ ଜୀବିକା ନିର୍ବାହ ଅଭିପ୍ରାୟରେ ଉତ୍ତରାଖଣ୍ଡ ଛାଡି ପୂର୍ବ ଭାରତୀୟ ଭୂଖଣ୍ଡକୁ ନିଜର ବସତି ସ୍ଥାପନ ପାଇଁ ଉପଯୁକ୍ତ ମନେ କଲେ । ଏଠାକାର ଗିରିପର୍ବତ, ନଦନଦୀ, ବିବିଧ ଜନ୍ତୁ ସଙ୍କୁଳ ବଣ ଜଙ୍ଗଲ ଓ ସମଧର୍ମୀ ବନବାସୀଙ୍କ ଅନ୍ତରଙ୍ଗ ସାହଚର୍ଯ୍ୟ ସେମାନଙ୍କୁ ଆକୃଷ୍ଟ କରିଥିଲା । ଫଳରେ ସେମାନେ ଏହି ନୂତନ ବାସସ୍ଥାନରେ ସ୍ଥାୟୀ ଭାବେ ରହିବାକୁ ପସନ୍ଦ କରିଥିଲେ । ହୁଏତ ଏମାନଙ୍କର ଏକ ଶାଖା ଗୋଷ୍ଠୀର ନାମ 'କଳି' ଓ ସେହି ନାମାନୁସାରେ ଏମାନଙ୍କ ଅଧ୍ୟୁଷିତ ଅଞ୍ଚଳକୁ ' କଳିଙ୍ଗ' କୁହାଯାଇଥାଇପାରେ ।

କଳିଙ୍ଗ, ଉଡ୍ର, ଉତ୍କଳ – ଏସବୁ ଶବ୍ଦର ଅର୍ଥ ସମାନ ଏବଂ କଳିଙ୍ଗ ଏକ ଦୁର୍ଦ୍ଧର୍ଷ ଜାତି । ଏହି ଜାତି ଭାରତ ଭୂମିର ପ୍ରଥମ ଅଧିବାସୀ ଯେଉଁମାନେ ପ୍ରାଚୀନ ପ୍ରସ୍ତର ଯୁଗ ଅତିକ୍ରମ କରି ନୂତନ ପ୍ରସ୍ତର ଯୁଗର ଦାୟାଦ ଭାବେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ତାହା ଖ୍ରୀ. ପୂ. ୫୦୦୦ ବର୍ଷରୁ ଖ୍ରୀ. ପୂ ୩୦୦୦ ବର୍ଷ ଭିତରେ ବୋଲି ଇତିହାସରୁ ଜଣାପଡେ । ଉଡ୍ର ଶବ୍ଦର ଅର୍ଥ ଚାଷ ଓ ଉତ୍କଳର ଅର୍ଥ ହେଉଛି ଉନ୍ନତ କଳାଯୁକ୍ତ । ଏହା କେବେ ଓ କିପରି କୁହାଯାଇଥିଲା ତାହା ନିର୍ଦ୍ଧାରଣ କରିବା ଦୂରୁହ । ମାତ୍ର ଏହି ଭୂଖଣ୍ଡ ଉଡ୍ର ବା ଉତ୍କଳ ନାମରେ ପରିଚିତ ହେବା ବହୁ ପୂର୍ବରୁ ଏହା କଳିଙ୍ଗ ନାମରେ ପ୍ରସିଦ୍ଧି ଲାଭ କରିଥିବା କଥାର ଏହିଭଳି ବହୁ ପ୍ରମାଣ ମିଳେ ।

ପୂର୍ବରୁ କୁହାଯାଇଛି ବିନ୍ଧ୍ୟାଞ୍ଚଳ ଆଡକୁ କଳିଙ୍ଗ ନାମକ ଆଦିବାସୀ ଗୋଷ୍ଠୀ ଗଙ୍ଗାନଦୀର ଉପକୂଳ ଅଞ୍ଚଳରୁ ଉଠି ଆସିଥିଲେ । ଇତିହାସ କହେ ଦ୍ରମିଳ ସମ୍ପ୍ରଦାୟର ବଳପୂର୍ବକ ଆକ୍ରମଣ ଏଥିପାଇଁ ଦାୟୀ । ଯେଉଁ ଜାତି ଶତାବ୍ଦୀ ଶତାବ୍ଦୀ ଧରି ଅପେକ୍ଷାକୃତ ବୁଦ୍ଧିମାନ୍ ଶତ୍ରୁର ପ୍ରବଳ ଆକ୍ରମଣର ସମ୍ମୁଖୀନ ହେବାସହ ସେମାନଙ୍କର ଅବାରିତ ଗତିସ୍ରୋତକୁ ରୋକି ପାରିଥିଲେ । ସେହି ଜାତି କୌଣସି କାରଣରୁ ପରାଜିତ ହୋଇ ନୂତନ ଅଞ୍ଚଳକୁ ଆସି ଯେତେବେଳେ ବସତି ସ୍ଥାପନ କରିଥିବେ , ସେହି ଅଞ୍ଚଳର ବିସ୍ତାର ଓ ପ୍ରସାର ଦିଗରେ ନିଶ୍ଚୟ ମନପ୍ରାଣ ଢ଼ାଳି ଦେଇଥିବେ– ଏଥିରେ ସନ୍ଦେହ ନାହିଁ ।

ଶତ୍ରୁଗୋଷ୍ଠୀ ସହିତ ଦୀର୍ଘଦିନ ସଂଘର୍ଷ ମଧ୍ୟରେ ଆକ୍ରାନ୍ତ କଳିଙ୍ଗ ଜାତି ବହୁବାର ଜୟ ପରାଜୟଜନିତ ସୁଖ ଦୁଃଖ ଭୋଗ କରିଥିବ । ଆଜି ଗଙ୍ଗା ପାରହୋଇ ଏପଟକୁ ପଳେଇ ଆସିଥିବେ ଓ କାଲି ପୁଣି ସୁଯୋଗ ଖୋଜି ଶତ୍ରୁ ଛାଉଣୀ ଧ୍ୱଂସ ମଧ୍ୟ କରିଥିବେ । ଦୀର୍ଘକାଳ ବ୍ୟାପୀ ସମରରେ ଏପରି ଉତ୍‌ଥାନ ପତନ ତ ଅବଶ୍ୟମ୍ଭାବୀ । ଏହି ସଂଘର୍ଷ ମଧ୍ୟରେ ଅବଶେଷରେ କଳିଙ୍ଗ ଜାତି ତା' ଆଦି ବାସଭୂମି ବିନ୍ଧ୍ୟମାଳ ଅଞ୍ଚଳ ପରିତ୍ୟାଗ କରି ସବୁଦିନ ପାଇଁ ଗଙ୍ଗାନଦୀ ଏପଟକୁ ଉଠି ଆସିଲା ଓ ନୂତନ ଜୀବନଯାପନ ଆରମ୍ଭ କଲା । କାଳକ୍ରମେ ପ୍ରସ୍ତର ଯୁଗୀୟ ଆଦିବାସୀ ଶବର କଳିଙ୍ଗର ଉପକୂଳ ଅଞ୍ଚଳରେ ବସତି ସ୍ଥାପନ କରି ସେଠାରେ ବନ୍ଦର ଆଦି ନିର୍ମାଣ କରି ବ୍ୟବସାୟ ବାଣିଜ୍ୟ ଦିଗରେ ମନ ବଳାଇଥିଲେ ।

କଥାରେ ଅଛି ' ବିପଦ ମଣିଷର ପରମ ଶତ୍ରୁ' । ନିଜ ଜନ୍ମମାଟି ଛାଡିବା ପୂର୍ବରୁ ' କଳିଙ୍ଗ' ଯେଉଁ ଦାରୁଣ ବିପଦର ସମ୍ମୁଖୀନ ହୋଇଥିଲା, ତାହା ପରୋକ୍ଷରେ ତାକୁ ପୂର୍ବାପେକ୍ଷା ଅଧିକ ଶକ୍ତିଶାଳୀ କରି ଗଢ଼ିତୋଳିବାରେ ସହାୟକ ହେଲା । ଅପର ପକ୍ଷରୁ ଗୁରୁତ୍ୱପୂର୍ଣ୍ଣ ଯୁଦ୍ଧ କୌଶଳ ଶିଖି ଶତ୍ରୁ ଆକ୍ରମଣ ପ୍ରତିହତ କରିବାକୁ ଯେମିତି ସାମର୍ଥ୍ୟ ଅର୍ଜନ କଲା ସେହିପରି ବିଚକ୍ଷଣ ସାହସ ପ୍ରଦର୍ଶନ କରି ଶତ୍ରୁକୁ ଦମନ କରିବାରେ ପାରଙ୍ଗମ ହୋଇ ଉଠିଲା । ତା'ଛଡା ଗଭୀର ଜଳସ୍ରୋତ ପାର ହେବା ପାଇଁ ନୌକା ଆଦି ଯେଉଁସବୁ ଭାସମାନ ଉପକରଣ ଦରକାର ତାହା ଉତ୍ପାଦନ କରିବାର ଜ୍ଞାନକୌଶଳ ମଧ୍ୟ ହାସଲ କଲା । ଅଜ୍ଞାତ ସ୍ଥାନରେ ବସତି ସ୍ଥାପନ କରି ଜୀବିକାର୍ଜନ ପାଇଁ ନିତ୍ୟନୂତନ ପନ୍ଥାମାନ ଉଦ୍ଭାବନ କଲା । ପରାଭବଜନିତ ଅନୁଭୂତିରୁ ନିଜକୁ ଉନ୍ନତତର ଅସ୍ତ୍ରଶସ୍ତ୍ରାଦିରେ ସୁସଜ୍ଜିତ କରି ରଖିବା ଶିଖିଲା । ଯାହାଫଳରେ ଉତ୍ତରକାଳୀନ ଭାରତବର୍ଷର ଇତର ପ୍ରାନ୍ତୀୟ ଅଧିବାସୀଙ୍କ ମଧ୍ୟରେ 'କଳିଙ୍ଗାଃ ସାହାସିକାଃ' ଭଳି ପ୍ରବାଦର ଯୋଗ୍ୟତମ ଅଧିକାରୀ ହୋଇ ପାରିଥିଲା ।

ମଣିଷ ମାତ୍ରେ ସୁଖପ୍ରିୟ ଓ ଅଭାବବୋଧ ସୁଖର ପ୍ରତିବନ୍ଧକ । ଅଭାବର ଅଭାବ ହେଲେ ଜୀବନ ସ୍ଥାଣୁ ପାଲଟେ । ଏଣୁ ଅଭାବ ଦୂର କରିବା ଲାଗି ମଣିଷ ସର୍ବଦା ଯତ୍ନଶୀଳ । ବଣ ଜଙ୍ଗଲରେ ଦୀର୍ଘଦିନ ଅତିବାହିତ କଲା ପରେ କଳିଙ୍ଗ ଜାତି ବିଳାସବ୍ୟସନ ପ୍ରତି କ୍ରମଶଃ ଆକୃଷ୍ଟ ହୋଇ ଧନ–ଜନ–ଗୋପ– ଲକ୍ଷ୍ମୀର ଉତ୍ତରୋତ୍ତର ଅଭିବୃଦ୍ଧି ସାଧନ ପାଇଁ ଶାରୀରିକ ତଥା ମାନସିକ ଶକ୍ତିର ଯଥାର୍ଥ ବିନିଯୋଗ କରିବାକୁ ବାହାରି ଆସିଛି ।

ପୁଣି ସ୍ୱକୀୟ ଦେଶ ସମ୍ପଦରେ ସନ୍ତୁଷ୍ଟ ନହୋଇ ଧନ–ରତ୍ନ, ମଣି–ମାଣିକ୍ୟ ଅନୁସନ୍ଧାନରେ ମନ ବଳାଇଛି । ସେହି ଲକ୍ଷ୍ୟରେ ସେ ଅନ୍ୟ ଦ୍ୱୀପ ପ୍ରତି ଆକୃଷ୍ଟ ହୋଇ ବୀରଦର୍ପରେ ଦକ୍ଷିଣରୁ ଦକ୍ଷିଣକୁ ଆଗେଇ ଯାଇଛି । ଦିଗନ୍ତବିସ୍ତାରୀ ଜଳରାଶି ମଧ୍ୟରେ ପାଲଟାଣି ଭାସିଯାଇଛି ସୁଦୂର ସାଗର ଆର ପାରିକି । ତାକୁ ଅର୍ଣ୍ଣବଯାନ ନୌକା ଆଦିର ନିର୍ମାଣ କୌଶଳ ଜଣା ଥିବାରୁ ଓ ସେ ସନ୍ତରଣରେ ପାରଙ୍ଗମ ଥିବାରୁ ସାଗର ଲହରୀ ଭାଙ୍ଗି କାମ୍ବୋଡିଆ, ବାଲି, ଜାଭା ( ଯବ), ସୁମାତ୍ରା ଦ୍ୱୀପକୁ ଯାଇ ବେପାର ବାଣିଜ୍ୟ କରିପାରିଛି । ତା'ଛଡା ବ୍ରହ୍ମଦେଶ, ଥାଇଲାଣ୍ଡ ଇତ୍ୟାଦିରେ ଉପନିବେଶ ସ୍ଥାପନ କରି ସ୍ୱଦେଶୀ ପଣ୍ୟବସ୍ତୁ ବିନିମୟରେ ଅଜସ୍ର ଧନରତ୍ନ ସଂଗ୍ରହ କରି ସ୍ୱଦେଶକୁ ଫେରୁଥିବାର ତଥ୍ୟ ସମସ୍ତ ଉତ୍କଳବାସୀଙ୍କଠାରେ ଅଛି । କଳିଙ୍ଗର ପ୍ରଧାନ ପଣ୍ୟଦ୍ରବ୍ୟ ଥିଲା ହାତୀଦାନ୍ତର କାରୁକାର୍ଯ୍ୟ ନିର୍ମିତ ପଲଙ୍କ, ହୀରା, ସୁନା, ରତ୍ନ, ସୂକ୍ଷ୍ମବସ୍ତ୍ର ଓ ମସଲା । ଶିରୀଷ ପୁଷ୍ପ ପରି ଜ୍ୟୋତିଷ୍ମାନ୍ ହୀରା ମିଳୁଥିଲା ସମ୍ବଲପୁରର ହୀରାକୁଦରୁ ।

"Periplus of the Erythracan sea ' ନାମକ ଗ୍ରୀକ୍ ଭାଷାର ଗ୍ରନ୍ଥରୁ କଳିଙ୍ଗର ବନ୍ଦର ଉପରେ ଯେଉଁ ସଂକ୍ଷିପ୍ତ ଟିପ୍ପଣୀ ମିଳେ, ସେଥିରେ ଲେଖାଯାଇଛି 'ମସ୍‌ଲିପଟ୍ଟମ୍' ପୂର୍ବପଟକୁ ନୌକାରେ ଗଲେ ସମୁଦ୍ର କୂଳକୁ ଲାଗି 'Dossaree' ନାମକ ଅଞ୍ଚଳରେ 'Dosaran' ନାମକ ଏକ ବନ୍ଦର ଅଛି । ଐତିହାସିକମାନଙ୍କ ମତରେ Dossaree ହେଉଛି ଏବେର ଓଡ଼ିଶା । ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀରେ ଯାହାକୁ କଳିଙ୍ଗ କୁହାଯାଉଥିଲା ନିଶ୍ଚୟ ଓ ତାହାର ରାଜଧାନୀ ଥିଲା 'ତୋଷାଳୀ' । ତୋଷାଳୀ ଶବ୍ଦଟି ଗ୍ରୀକ୍ ମୁଖରେ 'ଦୋସରି' ରୂପେ ଉଚ୍ଚାରିତ ହେବା ଅସମ୍ଭବ ନୁହେଁ । ତୋଷାଳୀ କଳିଙ୍ଗର ରାଜଧାନୀ ଥିବା କଥା ଜୈନଧର୍ମ ଗ୍ରନ୍ଥରେ ମଧ୍ୟ ବହୁ ପୂର୍ବରୁ ଉଲ୍ଲେଖ ଅଛି । ତାଛଡା ରାଜଧାନୀକୁ ଯିବା ଆସିବା କରିବା ପାଇଁ ବନ୍ଦରଟିଏ ରହିବା ମଧ୍ୟ ସ୍ୱାଭାବିକ ।

ଏହାଦ୍ୱାରା ନୌବାଣିଜ୍ୟ ଓ କ୍ରୟବିକ୍ରୟରେ ସୁବିଧା ହୋଇଥାଏ । ଫଳରେ ଅନ୍ୟାନ୍ୟ ବନ୍ଦରଠାରୁ ' ଦୋସରନ୍'ର ପ୍ରାଧାନ୍ୟ ବେଶୀ । ଏହା ବ୍ରାହ୍ମଣୀ ବଦୀ ମୁହାଣ ଯାଏ ଥିଲା। ଅତୀତରେ ବନ୍ଦର ସମ୍ପର୍କିତ ଯେକୌଣସି ବିଷୟ ଲିପିବଦ୍ଧ କଲାବେଳେ କେଉଁଠି ହେଲେ କଳିଙ୍ଗ ନାମଟି ବାଦ ପଡିବା ଦୃଷ୍ଟିଗୋଚର ହୁଏନାହିଁ ।

କଳିଙ୍ଗାଧିପତି ଐର ଖାରବେଳଙ୍କ ହାତୀଗୁମ୍ଫା ଶିଳାଲିପିରୁ କଳିଙ୍ଗର ପ୍ରାଚୀନ ଐତିହ୍ୟ ଓ ସମୃଦ୍ଧି ସମ୍ବନ୍ଧରେ ଅନେକ ସୂଚନା ମିଳେ । ସେଥିରେ ଲେଖାଅଛି– ତୋଷାଳୀ ବହୁ ପୂର୍ବରୁ କଳିଙ୍ଗର ରାଜଧାନୀ ରୂପେ ପ୍ରସିଦ୍ଧ ଥିଲା । ଖାରବେଳ ଅବଲୁପ୍ତ କଳିଙ୍ଗର ପୂର୍ବ ଗୌରବକୁ ଫେରାଇ ଆଣିଥିଲେ । ତିନିଶହ ବର୍ଷ ପୂର୍ବରୁ ମଗଧର ନନ୍ଦବଂଶୀ ରାଜା ମହାପଦ୍ମ ବଳପୂର୍ବକ ଅପହରଣ କରିନେଇଥିବା ' କଳିଙ୍ଗ ଜୀନାସନ'କୁ ସେଠାରୁ ଅପସାରଣ କରି ଆଣି ସେ ତାହାର ପୁନଃ ପ୍ରତିଷ୍ଠା କରାଇଥିଲେ । ତାହା ରାଜ୍ୟର ସମ୍ମାନାସ୍ପଦ ବସ୍ତୁ ରୂପେ ବିବେଚିତ ହେଉଥିଲା । ଏହାପରେ ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ କଳିଙ୍ଗ ଆକ୍ରମଣ ଓ ବିଜୟରୁ ଜଣାପଡେ ଯେ ସେତେବେଳେ କଳିଙ୍ଗର ଖ୍ୟାତି ଓ ପ୍ରତିପତ୍ତି ଅନ୍ୟ ରାଜ୍ୟମାନଙ୍କର ଚକ୍ଷୁଶୂଳ ଥିଲା ।

ଏହାଛଡା କେତେକ ବୌଦ୍ଧଧର୍ମ ଗ୍ରନ୍ଥରେ କଳିଙ୍ଗର ଯେଉଁଭଳି ପ୍ରଶସ୍ତିଗାନ ଦେଖିବାକୁ ମିଳେ ସେଥିରୁ ମଧ୍ୟ କଳିଙ୍ଗ ଦିନେ ଅସାଧାରଣ ବୈଭବର ଅଧିକାରୀ ଥିବା ଜଣାପଡେ । ସେତେବେଳକୁ କଳିଙ୍ଗ ନାମରେ ଅଭିହିତ ହୋଇ ଆସୁଥିଲା । ଆଗଙ୍ଗା ଗୋଦାବରୀ ବିସ୍ତୃତ କଳିଙ୍ଗର ମାନରକ୍ଷା କରିବାକୁ ସେତେବେଳେ କଳିଙ୍ଗ ହିଁ ସମର୍ଥ ଥିଲା । ଇଂରେଜମାନଙ୍କର ଭାରତ ଅଗମନ ପର୍ଯ୍ୟନ୍ତ କଳିଙ୍ଗର ବୋଇତ ବାଣିଜ୍ୟ ପ୍ରଚେଷ୍ଟା ଚାଲିଥିଲା । ମୁସଲମାନ ଓ ମୋଗଲ ସମ୍ରାଟମାନେ ଅତ୍ୟଧିକ ପରିମାଣରେ ବାଣିଜ୍ୟ ଶୁଳ୍କ ଆଦାୟ କରୁଥିଲେ । ତା'ଛଡା ଫିରିଙ୍ଗି ଉପଦ୍ରବ ହେତୁ କଳିଙ୍ଗର ବାଣିଜ୍ୟ ପ୍ରସଙ୍ଗ କ୍ରମେ ଧିମେଇ ଯିବାକୁ ବସିଲା । ମହାରାଷ୍ଟ୍ରମାନେ ଦେଶରେ ଅରାଜକତା ଓ ଲୁଣ୍ଠନ ପ୍ରସାର କଲେ ଓ ଧନ ସଂଗ୍ରହ ଏକ ବିପଦର କାରଣ ହୋଇ ପଡିଲା । ଶାନ୍ତିଶୃଙ୍ଖଳାର ଅଭାବ ବାଣିଜ୍ୟ କାରବାରରେ ବ୍ୟାଘାତ ଆଣିଲା । ଫଳରେ କଳିଙ୍ଗବାସୀ ସମ୍ପୂର୍ଣ୍ଣ ରୂପେ ବାଣିଜ୍ୟ ପ୍ରଚେଷ୍ଟା ପରିତ୍ୟାଗ କଲେ । ବିଦେଶାଗତ ଜାତିମାନେ ଏହି ସୁଯୋଗରେ କଳିଙ୍ଗର ବାଣିଜ୍ୟ ହାତ କରିନେଲେ । ବାଲେଶ୍ୱର ଜିଲ୍ଲାର ଉପକୂଳରେ ନୂତନ ବନ୍ଦର ଓ ବାଣିଜ୍ୟ କୋଠା ସ୍ଥାପିତ ହେଲା । ବେଦେଶାଗତ ଜାତିମାନେ ପୋତ ନିର୍ମାଣରେ ପ୍ରବୀଣ ନଥିଲେ । ସେମାନେ କଳିଙ୍ଗବାସୀଙ୍କୁ ସେହି କାମରେ ନିଯୁକ୍ତ କଲେ । କଳିଙ୍ଗ ଜାତିର ପ୍ରାଚୀନ ବାଣିଜ୍ୟ ସୌକର୍ଯ୍ୟଗାରିମାର ଅବଶେଷ ରହିଗଲା ବିଦେଶୀ ପୋତ ନିର୍ମାଣ ପାରଦର୍ଶିତା ପ୍ରଦର୍ଶନରେ ।

ପ୍ରାଧାପିକା
ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟ
ଭୁବନେଶ୍ୱର

# ଉତ୍କଳୀୟ ସଂସ୍କୃତିରେ କାର୍ତ୍ତିକ ମାହାତ୍ମ୍ୟ

ଡକ୍ଟର ନାରାୟଣ ପଣ୍ଡା

Culture as a Pattern of thinking and doing that runs through the activities of a people and distinguishes them from all other peoples:

**Ruth Benidict**

ସୁଜଳା ସୁଫଳା ଶସ୍ୟଶ୍ୟାମଳା କୋଟି କିରୀଟୀ କିରୀଟିନୀ ତଟିନୀ ତଟ ମାଳିନୀ ମରାଳ ମୋହିନୀ ଦିବ୍ୟ ଦେବଭୂମି ଭାରତ ରାଜନୈତିକ, ସାମାଜିକ, ଅର୍ଥନୈତିକ ସର୍ବୋପରି ସାଂସ୍କୃତିକ କ୍ଷେତ୍ରରେ ଏସିଆ ମହାଦେଶରେ ଅନନ୍ୟ ଅଧିଷ୍ଠାନ । ଉତ୍ତର ଦିଗରେ ତୁଷାର ଶୁଭ୍ର ଦେବାତ୍ମା ହିମାଳୟ, ଦକ୍ଷିଣରେ ଭାରତ ମହାସାଗର, ପୂର୍ବରେ ବଙ୍ଗୋପ ସାଗର ଏବଂ ପଶ୍ଚିମରେ ଆରବ ସାଗର ପରିବେଷ୍ଟିତ । ଏହାର ବିଶାଳ ବକ୍ଷରେ ଚିରସ୍ରୋତା ସିନ୍ଧୁ ଓ ବ୍ରହ୍ମପୁତ୍ର, ଜାହ୍ନବୀ ଓ ଯମୁନା ପରି ପ୍ରସନ୍ନ ସଲିଳା ଶତନଦନଦୀ ପ୍ରବାହିତ ସୁଶୋଭିତ । ଭକ୍ତ କବି ବ୍ରହ୍ମଙ୍କ ମଧୁସୂଦନ 'ଜନ୍ମଭୂମି' କବିତାରେ ସରସ ସୁନ୍ଦର ଭାବରେ ଭାରତର ଐତିହ୍ୟ ପରମ୍ପରା ଓ ସୌନ୍ଦର୍ଯ୍ୟକୁ ଉପସ୍ଥାପନ କରିଛନ୍ତି । କବିଙ୍କ ଭାଷାରେ:

'ଧନ୍ୟ ମହିମା ତୋହର ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତବର
ଦୁଇ ପାରୁଶେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁ ନଦୀ
ଚରଣରେ ବିରାଜିତ ମହାସାଗର
ବିନ୍ଧ୍ୟ ଗିରିବର କଟିରେ
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ' ।

ଆଧୁନିକ ଓଡ଼ିଶାର ପ୍ରାଚୀନ ନାମ ଉତ୍କଳ । ବୈବସ୍ୱତ ମନୁ ଏକଦା ବଂଶବୃଦ୍ଧି କରିବାକୁ ସ୍ଥିର କରି ଗୋଟିଏ ଯଜ୍ଞର ଆୟୋଜନ କରିଥିଲେ । ସେହି ଯଜ୍ଞରେ ସେ ମିତ୍ର ଦେବତା ଓ ବରୁଣ ଦେବତାଙ୍କୁ ଆହ୍ୱାନ କରିଥିଲେ । ତାଙ୍କର ମନସ୍କାମନା ପୂର୍ଣ୍ଣ ସ୍ୱରୂପ ଯଜ୍ଞକୁଣ୍ଡରୁ ଆବିର୍ଭୂତା ହେଲେ ଇଳାନାମ୍ନୀ ଏକ ଅପରୂପା ରମଣୀ । ଇଳାଙ୍କର ସାନ୍ନିଧ୍ୟ ଲାଭ କରିବା ପାଇଁ ସ୍ୱର୍ଗରେ ଦେବତାମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଚାଲିଥିବା କଥା ଜାଣିପାରି ମନୁ ନିଜର ମନ୍ତ୍ରପୂତ ଭକ୍ତି ବଳରେ ଇଳାଙ୍କୁ ଅର୍ଦ୍ଧେକ ନାରୀ ଓ ଅନ୍ୟ ଅର୍ଦ୍ଧେକ ପୁରୁଷ ରୂପରେ ପରିଣତ କରି ଦେଇଥିଲେ । ନାରୀ ସୁଲଭ ଗୁଣ ନେଇ ଯେଉଁ ଅର୍ଦ୍ଧେକ ଅଂଶରେ ପରିଣତ କଲେ, ସେହି ଅଂଶ ନାରୀ ଇଳା ଏବଂ ପୁରୁଷ ରୂପ ନେଇ ଯେଉଁ ଅର୍ଦ୍ଧେକ ଅଂଶରେ ପରିଣତ ହେଲେ ସେହି ଅଂଶ ସୁଦ୍ୟୁମ୍ନ ନାମରେ ନାମିତ ହେଲେ । ଇଳା ବୁଧଙ୍କୁ ବିବାହ କଲେ । ଫଳରେ ସୋମ ଓ ପୁରୁରବା ନାମରେ ଦୁଇଟି ପୁତ୍ର ସନ୍ତାନ ଜନ୍ମ ହେଲେ । ସୁଦ୍ୟୁମ୍ନଙ୍କ ଔରସରୁ ଉତ୍କଳ, ଗୟା ଓ ବିନପାଶ୍ୱ (ବିଶଳ) ନାମରେ ତିନୋଟି ସନ୍ତାନ ଜାତ ହେଲେ । ଯେଉଁ ଭୂମିରେ ସୁଦ୍ୟୁମ୍ନଙ୍କ ଜ୍ୟେଷ୍ଠ ସନ୍ତାନ ଉତ୍କଳ ଜାତ ହୋଇଥିଲେ, ସେହି ଭୂଖଣ୍ଡର ନାମ ଉତ୍କଳ ରଖାଯାଇଥିଲା ।

ଉତ୍କଳର ପବିତ୍ରତା ସମ୍ପର୍କରେ ବିଭିନ୍ନ ପୁରାଣ ଓ ବ୍ରାହ୍ମଣ୍ୟ ଗ୍ରନ୍ଥମାନଙ୍କରେ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି । ଉତ୍କଳ ସମ୍ପର୍କରେ 'କପିଳ ସଂହିତା'ରେ ଉଲ୍ଲେଖ ଅଛି–

'ବର୍ଷାଣାମ୍ ଭାରତ ଶ୍ରେଷ୍ଠୋ ଦେଶାନାମୁତ୍କଳ ଶ୍ରୁତଃ
ଉତ୍କଳସ୍ୟ ସମଦେଶୋ ଦେଶୋନାସ୍ତି ମହୀତଳେ ।

(କପିଳ ସଂହିତା)

ମହାଭାରତରେ ଉଲ୍ଲେଖ ଅଛି, ଋଷି ଦୀର୍ଘତମାଙ୍କ କୃପାରୁ ବଳୀଙ୍କ ଧର୍ମପତ୍ନୀ ସୁଦେଷ୍ଣା ପାଞ୍ଚଗୋଟି ପୁତ୍ର ଜନ୍ମ ଦେଇଥିଲେ । ସେମାନେ ହେଲେ ଅଙ୍ଗ, ବଙ୍ଗ, କଳିଙ୍ଗ, ସୁହ୍ମ, ପୁଣ୍ଡ୍ର । ପ୍ରାଚୀନ ଗ୍ରନ୍ଥମାନଙ୍କରେ ଏମାନଙ୍କ ନାମ ଉଲ୍ଲେଖ ଅଛି । ଓଡ଼ିଶାକୁ

କୋଶଳ, କଳିଙ୍ଗ, ଉଡ୍ର ଓ ସର୍ବୋପରି ଉତ୍କଳ ନାମରେ ନାମିତ କରାଯାଇଛି । ପ୍ରାଚୀନ ଓଡ଼ିଶାର ଇତିହାସକୁ ଦୃଷ୍ଟି ନିକ୍ଷେପ କଲେ ଆମ୍ଭେମାନେ ମୁଖ୍ୟତଃ ତିନିଗୋଟି ସଂସ୍କୃତିକୁ ଅନୁଭବ କରିଥାଉ । ସେଗୁଡିକ ହେଲା ଉତ୍କଳ କଳିଙ୍ଗ ଓ କୋଶଳର ସଂସ୍କୃତି । ଉତ୍କଳର ସଂସ୍କୃତି ଉତ୍ତରରେ ଯାଜପୁରଠାରୁ ରାଢ ପର୍ଯ୍ୟନ୍ତ ବିସ୍ତୃତ ଥିବାବେଳେ କଳିଙ୍ଗର ସଂସ୍କୃତି ଯାଜପୁରଠାରୁ ଦକ୍ଷିଣରେ ବିଶାଖା ପାଟଣା ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । କୋଶଳର ସଂସ୍କୃତି ବୌଦଠାରୁ ପଶ୍ଚିମରେ ବିଳାସପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା । କାଳିଦାସ ରଘୁବଂଶ ରଚନା କଲାବେଳକୁ ଉତ୍କଳ ଓ କଳିଙ୍ଗ ଦୁଇଟି ପୃଥକ ହୋଇ ସାରିଥିଲା । କବି କାଳିଦାସ 'ରଘୁବଂଶ' କାବ୍ୟରେ ରାଜା ରଘୁଙ୍କର ଦିଗ୍‌ବିଜୟ ବର୍ଣ୍ଣନା କଲାବେଳେ 'ଉତ୍କଳ' ଓ 'କଳିଙ୍ଗ' ନାମରେ ଦୁଇଟି ଦେଶର ନାମ ଉଲ୍ଲେଖ ଥିବାର ସୂଚନା ମିଳେ । 'ରଘୁବଂଶ' କାବ୍ୟରେ କବି କାଳିଦାସ ଯଥାର୍ଥରେ ପ୍ରକାଶ କରିଛନ୍ତି-

'ସତୀତ୍ୱା କପିଶାଂ ସୈନ୍ୟୈ
ଜୀବ ଦ୍ୱିରଦ ସେତୁଭିଃ
ଉତ୍କଳା ଦର୍ପିତା ପଥଃ
କଳିଙ୍ଗାଭିମୁଖଂ ଯଯୌ ।'

ଉତ୍କଳର ସଂସ୍କୃତି ଅପେକ୍ଷା କଳିଙ୍ଗର ସଂସ୍କୃତି ସର୍ବ ପୁରାତନ । କଳିଙ୍ଗ ସମ୍ପର୍କରେ ସଂସ୍କୃତ ମହାଭାରତରେ ଉଲ୍ଲେଖ ଅଛି-

'ତତଃ ସମୁଦ୍ର ତୀରେଣ ଜଣାଣ ବସୁଧାଧିପଃ
ଭ୍ରାତୃଭିଃ ସହିତୋ ବୀରଃ କଳିଙ୍ଗାନ୍ ପ୍ରତିଭାରତେ ।'

ଲୋମଚ ଉବାଚ-

'ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ
ଯତ୍ରାଃଦ୍ୟଯଜତେ ଧର୍ମୋଦ୍ଦପି ଦେବାଚ୍ଛରଣ ମେତ୍ୟୈବୈ ।'

ମହାଭାରତ ବର୍ଣ୍ଣନା ଅନୁଯାୟୀ କଳିଙ୍ଗ ରାଜ୍ୟର ପରିସୀମାଭୁକ୍ତ ବୈତରଣୀ ନଦୀ ଅତ୍ୟନ୍ତ ପବିତ୍ର । ବୈତରଣୀ ନଦୀ ତୀରରେ ଧର୍ମରାଜ ଯୁଧିଷ୍ଠିର ଯଜ୍ଞ କରୁ ଥିବାର ମହାଭାରତ ଗ୍ରନ୍ଥରେ ଉଲ୍ଲେଖ ଅଛି । 'ଲଳିତ ବିସ୍ତର' ଗ୍ରନ୍ଥରୁ ଜଣାଯାଏ ଯେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତକରେ କଳିଙ୍ଗ ଏକ ସ୍ୱାଧୀନ ରାଜ୍ୟ ଥିଲା । କଳିଙ୍ଗ ରାଜ୍ୟରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ପ୍ରସିଦ୍ଧ ସମ୍ରାଟ ଖାରବେଳ ମହାନ୍ ପରାକ୍ରମଶାଳୀ ଥିଲେ କାରଣ ହାତୀଗୁମ୍ଫା ଶିଳାଲିପିରେ ଉଲ୍ଲେଖ ଅଛି-

କଳିଙ୍ଗାଧି ପତିନାଶିରେ ଖାରବେଳେନ ।

ପ୍ରାଚୀନ ଓଡ଼ିଶାର ନାମକରଣ ସମ୍ପର୍କରେ ପ୍ରସିଦ୍ଧ ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ଏ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଓଡ଼ିଶା ଇତିହାସ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ ପ୍ରାଚୀନ ଭାରତର ଉଡ୍ର ଉତ୍କଳ ତଥା କଳିଙ୍ଗ ହେଉଛି ବର୍ତ୍ତମାନର ଓଡ଼ିଶା ପ୍ରଦେଶ । ସର୍ବପ୍ରଥମେ ଦ୍ରାବିଡମାନେ ଏ ଅଞ୍ଚଳରେ ବସତି ସ୍ଥାପନ କରିଥିଲେ । 'ଓକ୍‌କରି' ଏବଂ 'ଓଡିସୁ' ହେଉଛି ଦୁଇଟି ଦ୍ରାବିଡ ଶବ୍ଦ ଯାହାର ନାମରୁ ଓଡ଼ିଶା ଶବ୍ଦ ଆର୍ଯ୍ୟମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିବ ବୋଲି ଜଣାଯାଏ । କାରଣ ଦ୍ରାବିଡମାନଙ୍କ ପରେ ଆର୍ଯ୍ୟମାନେ ଏଠାରେ ପାଦଦେବା ସମୟରେ ପୂର୍ବର କୃଷକ ଅଧିବାସୀ (ଓକ୍‌କରି ଓ ଓଡିସୁ)ଙ୍କ ନାମ ଅନୁସାରେ ଏହାର ନାମକରଣ ହୋଇ ଥିବାର ଅନୁମାନ କରାଯାଏ । ଓଡ଼ିଶାର ପ୍ରାଚୀନ ଅଧିବାସୀମାନେ ହେଉଛନ୍ତି 'ଓଡ୍ର' । ସେମାନେ ଶବରମାନଙ୍କ ସହିତ ଏକତ୍ର ବାସ କରୁଥିଲେ । କାଳକ୍ରମେ ଓଡ୍ରମାନେ ସଭ୍ୟ ଓ ଶିକ୍ଷିତ ହେବାକୁ ଲାଗିଲେ । ଶ୍ରୀଜଗନ୍ନାଥଙ୍କୁ ଓଡ ଦେବତା ବୋଲି କୁହାଯାଏ । ଜଗନ୍ନାଥ ଶବର ଦେବତା । ତେଣୁ ଶ୍ରୀଜଗନ୍ନାଥ ଧାମର ନାମ ଓଡ଼ିଶା ବୋଲି ସର୍ବବାଦୀ ସମ୍ମତ ।

ଜୈନଗ୍ରନ୍ଥ ଓ ବୌଦ୍ଧ ଜାତକରେ ଖ୍ରୀଷ୍ଟପୂର୍ବ ଷଷ୍ଠ-ସପ୍ତମ ଶତାବ୍ଦୀର କଳିଙ୍ଗ ଓ ଓଡ଼ିଶା ସମ୍ବନ୍ଧୀୟ ବର୍ଣ୍ଣନା ପାଲି ଭାଷାରେ ଦେଖାଯାଏ । 'ଦୀର୍ଘ ନିକାୟ' ଓ 'ମହାବସ୍ତୁ' ଗ୍ରନ୍ଥରୁ ସୂଚନା ମିଳେ ଯେ ତତ୍କାଳୀନ ଭାରତ ସାତଟି ରାଜନୈତିକ ବିଭାଗରେ ବିଭକ୍ତ ହୋଇଥିଲା ।

ସେଥିରେ ପ୍ରଥମ ସ୍ଥାନ ଥିଲା କଳିଙ୍ଗରାଡ ବା କଳିଙ୍ଗ ରାଷ୍ଟ୍ର । 'ମଝଟିମ ନିକାୟ' ଓ 'ମହାବାଗ' ନାମକ 'ଉକ୍‌କଲା' (ଉତ୍କଳ) ବିଷୟରେ ବର୍ଣ୍ଣନା କରି ଲେଖିଛନ୍ତି ଯେ ତପସସୁ ଓ ଭଲ୍ଲୁକ ନାମକ ଦୁଇଜଣ ଭୂୟାଁ ଜାତିର ଉତ୍କଳୀୟ ବଣିକ ଉରୁବେଳା ନିକଟରେ ବୁଦ୍ଧଦେବଙ୍କୁ ଭୋଜନ ଅର୍ପଣ କରିଥିଲେ ଓ ତାଙ୍କର ଉପଦେଶ ଶୁଣିଥିଲେ ।

କଳିଙ୍ଗ, ଉତ୍କଳ, ଉଡ୍ର ଦେଶର ଭୌଗୋଳିକ ସୀମା ସମ୍ପର୍କରେ ବିଭିନ୍ନ ମତ ଦୃଷ୍ଟିଗୋଚର ହୁଏ । ପୁରାଣ ଯୁଗରେ ପଶ୍ଚିମ ମେଦିନୀପୁର ମାନଭୂମ ବା ପୂର୍ବ ସିଂହଭୂମି, ଦକ୍ଷିଣ ବାଙ୍କୁଡାକୁ ନେଇ ଓଡ୍ର, ବାଲେଶ୍ୱରଠୁ ରାଞ୍ଚି ଓ ମଧ୍ୟପ୍ରଦେଶର ସରଗୁଜା ପର୍ଯ୍ୟନ୍ତ ଉତ୍କଳ ଏବଂ ବୈତରଣୀ ନଦୀଠାରୁ ବିଶାଖପଟ୍ଟନ ଜିଲ୍ଲାର ଲାଙ୍ଗୁଲ୍ୟା ନଦୀ ପର୍ଯ୍ୟନ୍ତ କଳିଙ୍ଗ ବିସ୍ତାର ଲାଭ କରିଥିଲା ବୋଲି ଅନୁମାନ କରାଯାଏ । କେହି କେହି ଉତ୍କଳ, କଙ୍ଗୋଦ ଓ

କଳିଙ୍ଗର ସମଷ୍ଟିକୁ 'ତ୍ରିକଳିଙ୍ଗ' ବୋଲି ମନେ କରନ୍ତି । ସ୍ୱର୍ଗତଃ ଡକ୍ଟର ଉତ୍କଳକେଶରୀ ହରେକୃଷ୍ଣ ମହତାବଙ୍କ ମତରେ ଗଞ୍ଜାମ, ଜୟପୁର, ବସ୍ତର, ପାଟଣା, କଳାହାଣ୍ଡି, ସମ୍ବଲପୁର, ଅଞ୍ଚଳକୁ ନେଇ ତ୍ରିକଳିଙ୍ଗ ରାଜ୍ୟ ଗଠିତ ହୋଇଥିଲା । ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ ଯେ, କଳିଙ୍ଗର ଅଦ୍ୱିତୀୟ ସମ୍ରାଟ ମଗଧ ବିଜୟୀ ଐରଖାରବେଳ ହିମାଳୟର ପାଦଦେଶଠାରୁ କୁମାରୀକା ପର୍ଯ୍ୟନ୍ତ ନିଜ ସାମ୍ରାଜ୍ୟର ସୀମା ପରିବର୍ଦ୍ଧନ କରିଥିଲେ ।

ଭାରତ ଏକ ବିଶାଳ ଦେଶ । ଏଠାରେ ବହୁଜାତି, ବହୁଧର୍ମ ସମ୍ପ୍ରଦାୟ, ବିଭିନ୍ନ ଭାଷାଭାଷୀର ଲୋକ ବସବାସ କରିଥାନ୍ତି । ସେମାନଙ୍କ କଥାଭାଷା, ଚାଲିଚଳନ, ରୀତିନୀତି ଆଦି ବିଭିନ୍ନ ପ୍ରକାରର । ଆଦିବାସୀ ଦ୍ରାବିଡ ଓ ଆର୍ଯ୍ୟମାନଙ୍କର ମିଳନ ଭୂମି ଭାରତ । ବହୁଭାଷା, ବହୁଧର୍ମ, ବହୁବିଶ୍ୱାସ, ଜାତିର ବିଭିନ୍ନତା ମଧ୍ୟରେ ଏକତା ଭାରତର ଐକ୍ୟଭାବରେ ସୁପ୍ରତିଷ୍ଠିତ । ଏହା ହିଁ ଭାରତୀୟ ସଂସ୍କୃତି । ଉତ୍କଳୀୟ ସଂସ୍କୃତିର ବୈଶିଷ୍ଟ୍ୟ ହେଲା ଏକରେ ଅନେକ ଏବଂ ଅନେକରେ ଏକର ପ୍ରତୀତି ।

ବିଭିନ୍ନ ଜାତି, ଧର୍ମ ଓ ଭାଷା ଉପରେ ଦୃଷ୍ଟି ନିକ୍ଷେପ କଲେ ମନେହେବ ଭାରତ ବହୁଧାବିଭକ୍ତ ଦେଶ । କିନ୍ତୁ ଗବେଷଣା କଲେ ଉପଲବ୍ଧ ହୁଏ ଯେ ସମସ୍ତ ପ୍ରକାର ବୈଚିତ୍ର୍ୟ ଓ ବିଭିନ୍ନତା ସତ୍ତ୍ୱେ ଏ ଦେଶର ଜୀବନଧାରା ଅବିଚ୍ଛେଦ୍ୟ ଏ ସମସ୍ତ ମଧ୍ୟରେ ଏକତା ନିହିତ । ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ଜାତି ବିକାଶ ଲାଭ କରିଛି ତା'ର ସଂସ୍କୃତିର ଭିତ୍ତିଭୂମି ଉପରେ । ଓଡ଼ିଆ ଜାତି ଆଜି ପର୍ଯ୍ୟନ୍ତ ତା'ର ଲୋକ ସଂସ୍କୃତିର ଯେଉଁ ସ୍ମାରକ ବହନ କରିଛି, ତାହା ଅଧ୍ୟୟନ କଲେ ସଂସ୍କୃତିର ପ୍ରାଚୀନତା ଓ ବୈଚିତ୍ର୍ୟ ସମ୍ପର୍କରେ ସ୍ୱଷ୍ଟ ଧାରଣା କରିହୁଏ । ଓଡ଼ିଆ ଜନଜୀବନର ସାମଗ୍ରୀକ ରୂପ ତା'ର ଲୋକ ସଂସ୍କୃତିରେ ପ୍ରତିଫଳିତ । ସାମାଜିକ, ଆଧ୍ୟାତ୍ମିକ ଓ ରାଜନୈତିକ ଜୀବନର ମଧୁର ସମନ୍ୱୟରେ ପ୍ରତ୍ୟେକ ଦେଶର ସଂସ୍କୃତି ଗଠିତ ହୋଇଥାଏ । ଆଦ୍ୟ ଅବସ୍ଥାର ଓଡ଼ିଶାର ସଂସ୍କୃତି କାଳସ୍ରୋତରେ ଗତି କରି ବିଭିନ୍ନ ସମୟରେ ବିଭିନ୍ନ ପ୍ରକାରର ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଆ ଜାତିକୁ ଯେପରି ଭାବରେ ସମୁନ୍ନତ ସଂଘବଦ୍ଧ, ସଂହତି ସମ୍ପନ୍ନ କରିଛି, ତାହା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ଉନ୍ନତ କଳାର ଦେଶ ହୋଇ ଥିବାରୁ ଓଡ଼ିଶାକୁ ଉତ୍କଳ କୁହାଯାଏ । ପୁରାଣରେ ଉତ୍କଳକୁ ଦେଶମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦେଶ ଭାବରେ ବର୍ଣ୍ଣନା କରାଯାଇଛି । କଳା ହେଉଛି ଓଡ଼ିଆମାନଙ୍କର ଜୀବନ । ନାଚ, ଗୀତ, ଚିତ୍ର, ଭାସ୍କର୍ଯ୍ୟ କାବ୍ୟକଳା ହେଉଛି ଓଡ଼ିଆର ଜୀବନକଳା । ଗ୍ରାମୀଣ ଜନତାଠାରୁ ଆରମ୍ଭ କରି ନଗରରେ ଅବସ୍ଥାନ କରୁଥିବା ବିଦଗ୍ଧ ଓଡ଼ିଆମାନଙ୍କ ସାମାଜିକ ଜୀବନ ପ୍ରବାହରେ ଯେଉଁ ରସ ତରଙ୍ଗ, ଲଳିତଛନ୍ଦ ଓ ସରସସୁନ୍ଦର ଭାବଭଙ୍ଗିମା ପ୍ରକାଶ ପାଏ, ତାହାର ପଟାନ୍ତର ନାହିଁ । ସରସ ସୁନ୍ଦର ମଧୁର ସାବଲୀଳ କଳା ହେଉଛି ଓଡ଼ିଆର ପ୍ରାଣ ହୃଦୟ ଏବଂ ପ୍ରୀତି, ମୈତ୍ରୀ, ପ୍ରଗତି ମଧ୍ୟରେ ଆତ୍ମା ତା'ର ପ୍ରତିକୀତ ।

ଉତ୍କଳରେ ପ୍ରଚଳିତ ଓଷାବ୍ରତର ଇତିବୃତ୍ତ ଅଧ୍ୟୟନ କଲେ ପ୍ରାଚୀନ ଓଡ଼ିଶୀ ସଂସ୍କୃତି ସମ୍ପର୍କରେ ଧାରଣା କରିହେବ । ଓଡ଼ିଶାର ଜନଜୀବନରେ ପ୍ରଚଳିତ ବ୍ରତଗୁଡ଼ିକ ଶାସ୍ତ୍ରାନୁମୋଦିତ ଓ ଆଧ୍ୟାତ୍ମିକ ପରମ୍ପରା ଉପରେ ପ୍ରତିଷ୍ଠିତ ଧର୍ମାଚାର । ଏଥିରେ ଦେବାଦେବୀ, ପୂଜା, ପୁରୋହିତ, ସଂକଳ୍ପ, ଦେବାଦେବୀ ମହିମା କଥା, ଶ୍ରବଣ ପ୍ରଭୃତିର ଅବସ୍ଥିତି ଏକାନ୍ତ ଅପରିହାର୍ଯ୍ୟ । ପର୍ବପର୍ବାଣିରେ ବ୍ରାହ୍ମଣ–ପୁରୋହିତ, ଶାସ୍ତ୍ର ପରମ୍ପରାର ଆବଶ୍ୟକତା ବେଶ୍ ଗୁରୁତ୍ୱପୂର୍ଣ୍ଣ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ଉତ୍କଳର ପୁରପଲ୍ଲୀରେ ଶାସ୍ତ୍ରାନୁମୋଦିତ ଓଷାବ୍ରତଗୁଡ଼ିକରେ ପୁରୋହିତମାନଙ୍କର ଭୂମିକା ନିଷ୍ପ୍ରୟୋଜନ । ଉତ୍କଳର ପର୍ବପର୍ବାଣିରେ ଓଡ଼ିଶୀ ସଂସ୍କୃତିର ସୁଦୀର୍ଘ ଇତିହାସ ଲୁକ୍କାୟିତ ହୋଇ ରହିଛି ।

ଉତ୍କଳର ସଂସ୍କୃତି ଜଗନ୍ନାଥ ସଂସ୍କୃତି । ଓଡ଼ିଆ କେତେ ସହଜ ଓ ସରଳ, ତାହା ଜଗନ୍ନାଥକୁ ଦେଖି ଅନୁଭବ କରିହୁଏ । ସର୍ବଧର୍ମ ସମନ୍ୱୟର ଦେବତା ଜଗତର ନାଥ ଜଗନ୍ନାଥ ।

ଶ୍ରୀଜଗନ୍ନାଥଙ୍କୁ ମନରେ, ହୃଦୟରେ, ଚିତ୍ରରେ, ଭାଷାରେ ଯେତେ ସହଜରେ ଯେତେଶୀଘ୍ର ପ୍ରକାଶ କରିହୁଏ, ତାହା ଅନ୍ୟତ୍ର ସମ୍ଭବ ହୁଏ ନାହିଁ । ଶ୍ରୀଜଗନ୍ନାଥ ହେଉଛନ୍ତି ଓଡ଼ିଶାର ସାହିତ୍ୟ, କଳା ଓ ସଂସ୍କୃତିର ଜୀବନ୍ତ ଇତିହାସ । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାର ପର୍ବପର୍ବାଣି, ଓଷାବ୍ରତ, ଯାନିଯାତ୍ରା, ମେଳାମଉଚ୍ଛବର ସୃଷ୍ଟି । ଶ୍ରୀକ୍ଷେତ୍ରରେ ବାରମାସରେ ତେରପର୍ବ ପାଳିତ ହୁଏ ।

ଓଡ଼ିଶାରେ ପାଳିତ ପର୍ବପର୍ବାଣି ମଧ୍ୟରୁ କେତେକ ଶାସ୍ତ୍ର ଅନୁସାରେ, କେତେକ ଲୌକିକ ରୀତିରେ ଆଉ କେତେକ ମିଳିତ ପଦ୍ଧତିରେ ପାଳନ କରାଯାଉଥିବାର ଦୃଷ୍ଟିଗୋଚର ହୁଏ । ଉତ୍କଳୀୟ ସଂସ୍କୃତି ଓ ପରମ୍ପରା ବିଶ୍ୱଦେବତା ଶ୍ରୀଜଗନ୍ନାଥଙ୍କୁ ନେଇ ସମୃଦ୍ଧ । କୋଟି କୋଟି ମଣିଷର ଆଶା ଓ ବିଶ୍ୱାସର ପ୍ରତୀକ ଶ୍ରୀଜଗନ୍ନାଥ । ଜନମାନସର ଆଶା, ବିଶ୍ୱାସ ଓ ଅନୁକରଣ ଭିତରେ ବଞ୍ଚି ରହିଛି ଆମ ଉତ୍କଳୀୟ ସଂସ୍କୃତି ଓ ପରମ୍ପରା ।

ବ୍ୟାସ ରଚିତ ଓ ପଣ୍ଡିତ ମହାଦେବ ଦାସଙ୍କ ମୂଳ ସଂସ୍କୃତ ଶ୍ଳୋକ 'କାର୍ତ୍ତିକ ମାହାତ୍ମ୍ୟ' ପଦ୍ମପୁରାଣର ଉତ୍ତରଖଣ୍ଡରେ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି । ପଦ୍ମପୁରାଣ ଅନୁଯାୟୀ ମାସ ମଧ୍ୟରେ କାର୍ତ୍ତିକ ଶ୍ରେଷ୍ଠ ମାସ ଓ ଏହି ମାସରେ ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପ୍ତି ହୁଏ । ପୁରାଣରେ ବର୍ଣ୍ଣନା ଅଛି ' ମାସାନାଂ କାର୍ତ୍ତିକଃ ଶ୍ରେଷ୍ଠୋ ଦେବାନାଂ ମଧୁସୂଦନଃ' ସ୍କନ୍ଦପୁରାଣ ଅନୁସାରେ କାର୍ତ୍ତିକ ମାସରେ ଦେବାଳୟ, ନଦୀକୂଳ, ତୁଳସୀମୂଳେ ଦୀପ ଜଳାଇଲେ ଓ ପ୍ରାତଃ ସ୍ନାନ କରି ଦେବାଦେବୀ ଦର୍ଶନ କଲେ ଲକ୍ଷ୍ମୀନାରାୟଣ ସଦୟ ହୁଅନ୍ତି । ଏଣୁ କୁହାଯାଏ ମାସ ମଧ୍ୟରେ କାର୍ତ୍ତିକ, ଶାସ୍ତ୍ର ମଧ୍ୟରେ ବେଦ ଓ ତୀର୍ଥ ମଧ୍ୟରେ ଗଙ୍ଗା ଶ୍ରେଷ୍ଠ ଅଟନ୍ତି । ଯଥାର୍ଥରେ ପୁରାଣ ମତରେ–

'ନ କାର୍ତ୍ତିକ ସମୋ ମାସୋ, ନକୃତେନ ସମଂନ୍ଦଯୁଗମ୍
ନବେଦ ସଦୃଶଂ ଶାସ୍ତ୍ରଂ, ନତୀର୍ଥେ ଗଙ୍ଗାୟା ସମମ୍'

'କାର୍ତ୍ତିକ ମାହାତ୍ମ୍ୟ'ରେ ଶଙ୍ଖାସୁରର ବେଦହରଣ, ଶଂଙ୍ଖାସୁର ବଧ, ଜଳନ୍ଧର ବଧ, ବୃନ୍ଦାବତୀଙ୍କୁ ଉଚ୍ଚ ସ୍ଥାନ ଓ କାର୍ତ୍ତିକ ମାସର ପାଳନ ଓ ପୁଣ୍ୟ ଉପରେ ବର୍ଣ୍ଣନା କରାଯାଇଛି । ବାରମାସ ମଧ୍ୟରେ କାର୍ତ୍ତିକ ପୁଣ୍ୟତମ ମାସ ଭାବରେ କଥିତ ଓ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ । ଏ ମାସରେ ପାହାନ୍ତାରୁ ସ୍ନାନାର୍ଥୀମାନେ ସ୍ନାନ କରିବାକୁ ବାହାରି ପଡନ୍ତି । ଗଙ୍ଗା, ଯମୁନା, ଗୋଦାବରୀ, କୃଷ୍ଣା, ମହାନଦୀ ଆଦି ପବିତ୍ର, ପୁଣ୍ୟତୋୟା ନଦୀଗୁଡିକରେ ପ୍ରାତଃସ୍ନାନ ସାରି ଦେବାଦେବୀ ମନ୍ଦିରରେ ଦର୍ଶନ କରନ୍ତି । ପ୍ରତ୍ୟହ ନାନା ସୁଗନ୍ଧଯୁକ୍ତ ପୁଷ୍ପ ଜଳସ୍ରୋତକୁ ଫିଙ୍ଗି ଗଙ୍ଗା ସ୍ତୋତ୍ର ଗାଇ ଲକ୍ଷ ଲକ୍ଷ ଲୋକ ଧର୍ମ ଅର୍ଜନ କରନ୍ତି । ପୁରାଣ ମତରେ ଏହା କାର୍ତ୍ତିକ ସ୍ନାନ ଭାବରେ ଜନମାନସରେ ପରିଚିତ ।

ପରମ ପବିତ୍ର କାର୍ତ୍ତିକ ମାସରେ ବିଧବାମାନଙ୍କ ସହିତ ସ୍ଥଳ ବିଶେଷରେ ଅନେକ ସଧବା ଓ ପୁରୁଷ 'ମହାକାର୍ତ୍ତିକ ହବିଷ୍ୟ' ପାଳନ କରିଥାନ୍ତି । ଅରୁଆଚାଉଳ, ମୁଗ, ମୁକ୍ତା କେରିସାରୁ, କଞ୍ଚା କଦଳୀ, ଓଉ, କଞ୍ଚାକଇଁଆ, ଅଦା, ନଡିଆ, ଦୁଧ, ଦହି, ଘିଅ, ଅଗସ୍ତି, ଶାଗ ଇତ୍ୟାଦି ହବିଷ୍ୟରେ ଆବଶ୍ୟକ ହୁଏ । ହବିଷ୍ୟକାରୀମାନେ ଦାମୋଦର ଶାଳଗ୍ରାମ ପୂଜା କରନ୍ତି । ଅପରାହ୍ଣରେ ଥରେ ମାତ୍ର ଭୋଜନ କରିଥାନ୍ତି ।

କାର୍ତ୍ତିକ ମାସର ଆରମ୍ଭ ଦିନକୁ ଗର୍ଭଣା ସଂକ୍ରାନ୍ତି କହନ୍ତି । ଏହା ଏକ କୃଷିଭିତ୍ତିକ ପର୍ବ । ଓଡ଼ିଶାର କୃଷକମାନେ ଏହି ପର୍ବଟିକୁ ଅତ୍ୟନ୍ତ ନିଷ୍ଠାର ସହିତ ପାଳନ କରନ୍ତି । ସାଧାରଣତଃ ଗର୍ଭ କହିଲେ ଆମେ ଭ୍ରୁଣ ବୁଝୁ । ଗର୍ଭଣୀ ଶବ୍ଦରୁ ଗର୍ଭଣା ଶବ୍ଦର ଉତ୍ପତ୍ତି ଏବଂ ଏହି ଗର୍ଭଣା ସଂକ୍ରାନ୍ତିର ବିଶେଷତ୍ୱ ହେଲା ଏହି ସମୟରେ ଧାନ କେଣ୍ଡା ଧାନଗଛର ଗର୍ଭରେ ଲୁଚି ରହିଥାଏ । କାର୍ତ୍ତିକ ତୁଳାମାସ ସଂକ୍ରାନ୍ତିକୁ ଗର୍ଭଣା ସଂକ୍ରାନ୍ତି ଭାବରେ ଗ୍ରହଣ କରାଯାଏ । ସାଧାରଣତଃ ଇଂରାଜୀ ମାସ ଅକ୍ଟୋବର ମାସରେ ଗର୍ଭଣା ସଂକ୍ରାନ୍ତି ପଡିଥାଏ । ଗର୍ଭଣା ସଂକ୍ରାନ୍ତି ଦିନ କୃଷକ ଏବଂ ଗୃହର ଲୋକ ପ୍ରାତଃ ସ୍ନାନ ଶେଷ କରି ଗର୍ଭଣା ଗଛରୁ କେତେଗୁଡିଏ ଡାଳ ଆଣି ତାକୁ ବିଧିବଦ୍ଧ ଭାବରେ ପୂଜା କରି ନିଜର ଧାନ କ୍ଷେତରେ ପୋତିଦେଇ ଆସନ୍ତି । ଏହି ଗର୍ଭଣା ଗଛକୁ ଇଂରାଜୀରେ (Cordia Myxa tree) କହନ୍ତି ।

କାର୍ତ୍ତିକ ମାସରେ ଶୁକ୍ଳ ଚତୁର୍ଥୀ ଦିନ ନାଗ ଚତୁର୍ଥୀ ବା ନାଗଲ ଚଉଠି ପୂଜା ପାଳନ କରାଯାଏ । ଏହାର ଅନୁଷ୍ଠାନ ବିଧି ସମ୍ପର୍କରେ ଗଦ୍ୟରେ ରଚିତ ନାଗଲ ଚଉଠୀ ବ୍ରତ କଥାରୁ ସୂଚିତ ହୁଏ । ସେଦିନ ନାଗୁଆଳି ବୋଲି ରୂପାନାଗ ଗୋଟିଏ ସୁନା ନାଗୁଣୀ ଗୋଟିଏ କରିବ । ଉଇମାଟି ଆଣି ତାକୁ ସିନ୍ଦୂର କଜ୍ଜ୍ୱଳ କରିବ । ଅଁଳା ସାବେତ୍ରୀ ଦେବ । ଗନ୍ଧପୁଷ୍ପ ଦେଇ ତାକୁ ପୂଜା କରିବ । ଚାଙ୍ଗଡା ବସାଇବ ଓ ସରଧାଲିଆ କରିବ । ମାଘତିଳ କରିବ, ନଡିଆ ପେଣ୍ଡାଏ କରିବ । ପାନିଆ ତାଳପତ୍ର କରିବ । ଟଭା, ନାରଙ୍ଗ, ଆଖୁ, କାକୁଡି, ଜହ୍ନି ଯେବେ ମିଳିବ ତାକୁ ଚାଙ୍ଗୁଡାରେ ବାଢିବ । ପିଣ୍ଡ କରିବ ପାଞ୍ଚନଡିଆ ପିଣ୍ଡେ ଖସାପିଣ୍ଡେ, ଛେନା ପିଣ୍ଡେ, ପିଉଠ ପିଣ୍ଡେ, ମୁଗ ପିଣ୍ଡେ, ଅଦାପିଣ୍ଡେ ମରିଚ ମସଲା ମିଶାଇବ । ଏ ରୂପେ ସବୁ ପିଣ୍ଡ କରିବ । କଞ୍ଚାଦୁଧ ପଇଡ ଅର୍ଘ୍ୟଦେବ । ଘୃତ ଦୀପାବଳୀ ଦେବ । ବନ୍ଦାପନା କରିବ । ଧୂପଦୀପ ନୈବେଦ୍ୟ ଦେଇ ମୁଖବାସ ତାମ୍ବୁଳ ଦେବ । ଚାଙ୍ଗୁଡି ନାଗନାଗୁଣୀଙ୍କ ପାଖରେ ରଖିବ । ନାଗ ନାଗୁଣୀଙ୍କୁ ହଳଦିଆ କରିବ । ହଳଦିଆ ବସ୍ତ୍ର ନାଗନାଗୁଣୀଙ୍କୁ ପରିଧାନ କରିବ । ହରିଦ୍ରା ପୁଷ୍ପରେ ବ୍ରାହ୍ମଣ ପୂଜା କରିବ । ନାଗନାଗୁଣୀ ପିତୁଳା ଶିବପାର୍ବତୀଙ୍କ ପ୍ରତିନିଧି ମାତ୍ର ।

କାର୍ତ୍ତିକ ମାସର କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ଶ୍ୟାମାକାଳୀଙ୍କର ମୂର୍ତ୍ତି ନିର୍ମିତ ହୋଇ ପୂଜାହୁଏ । ସଂସ୍କୃତ ଶବ୍ଦ 'କାଳ' ଶବ୍ଦରୁ ସୃଷ୍ଟି ହୋଇଛି 'କାଳୀ' । କାଳ ଅର୍ଥ ସମୟ । ଏହା ମଧ୍ୟ କୁହାଯାଏ ଯେ କାଳମୁଖରୁ କେହି ବର୍ତ୍ତି ଯାଇପାରିବେ ନାହିଁ । ମାଆ କାଳୀଙ୍କୁ କେହି କେହି ମୃତ୍ୟୁର ଦେବୀ ବୋଲି କହିଥାନ୍ତି । କାଳୀ ଜୀବର ଅହଙ୍କାରକୁ ନାଶ କରିଥାନ୍ତି । ପୁରାଣ ଅନୁସାରେ ମାତା ରୂପରେ ପୂଜିତା କାଳୀ ଧରା ଧାମରେ ସତ୍ୟର ପ୍ରତିଷ୍ଠା ପାଇଁ ଦୁଷ୍ଟ ଶକ୍ତିକୁ

ବିନାଶ କରନ୍ତି । ଦେବୀ ପୁରାଣ, ମହାଭାରତ ଓ ଦେବୀ ଭାଗବତ ପ୍ରଭୃତି ପୁରାଣରେ ମା' ମହାମାୟାଙ୍କ ଆବିର୍ଭାବ ସମ୍ପର୍କରେ ଉଲ୍ଲେଖ କରାଯାଇଛି । ଶ୍ରୀଚଣ୍ଡୀର ବର୍ଣ୍ଣନା ଅନୁଯାୟୀ କାଳୀ ଦେବତାମାନଙ୍କର ଜନନୀ । କରୁଣାମୟୀ ମମତାମୟୀ ମା' ଏ ଜଗତ ସୃଷ୍ଟି କରିଛନ୍ତି । ସୃଷ୍ଟି, ପାଳନ ଓ ସଂହାରର ସ୍ରଷ୍ଟା ମାତୃଶକ୍ତି ସ୍ନେହମୟୀ କାଳୀ । ମାର୍କଣ୍ଡେୟ ପୁରାଣ ଅନୁଯାୟୀ ମହିଷାସୁରର ସେନାପତି ରକ୍ତବୀର୍ଯ୍ୟଙ୍କୁ ବଧ କରିବା ପାଇଁ ଚଣ୍ଡୀଙ୍କଠାରୁ ସାହାଯ୍ୟ କାରିଣୀ ମା' କାଳୀଙ୍କର ସୃଷ୍ଟି । କାଳୀକା ପୁରାଣ ଓ ଯୋଗିନୀ ତନ୍ତ୍ରରେ ବର୍ଣ୍ଣିତ କାଳୀ ଓ କାମାକ୍ଷା ଏକ ଓ ଅଭିନ୍ନ ବୋଲି ବର୍ଣ୍ଣନା କରାଯାଇଛି । ନରଶିରମାଳା ବିଭୂଷିତା ଦେବୀ ଚଣ୍ଡ ଓ ମୁଣ୍ଡଙ୍କୁ ନିପାତ କରିଥିଲେ । 'ଶାରଦାତିଳକ' ତନ୍ତ୍ରରେ ଉଲ୍ଲେଖ ଅଛି–

'ଶୂଳଂ କୃପାଣଂ ନୃଶିରଃ କପାଳଂ ଦଧତୀ କରୈଃ
ମୁଣ୍ଡସ୍ରଙ୍ଗ୍ ମଣ୍ଡିତା ଧେୟା ଚାମଣ୍ଡା ରକ୍ତବିଗ୍ରହା ।'

ଅର୍ଥାତ୍ ରକ୍ତବର୍ଣ୍ଣ ଚାମୁଣ୍ଡା ମୁଣ୍ଡମାଳା ବିଭୂଷିତା, ହସ୍ତରେ ଖଡ଼ଗ, ପଶୁଛିନ୍ନ ମସ୍ତକ ଏବଂ ଖପର ଧାରଣ କରିଥାନ୍ତି । ପୁରାଣରେ ବର୍ଣ୍ଣନା ଅଛି–

'ଚତୁର୍ଭୁଜା ତ୍ରିନେତ୍ରା ଚ ରକ୍ତବର୍ଣ୍ଣୋର୍ଦ୍ଧ୍ୱକେଶିକା
କପାଳ ଶୂଳହସ୍ତା ଚ ବରଦା ଭୟ ପାଣିନୀ ।'

ଚାମୁଣ୍ଡାମୂର୍ତ୍ତି ଭୈରବୀ ନାମରେ ବିଭିନ୍ନ ସ୍ଥାନରେ ପୂଜା ପାଇଥାନ୍ତି । 'ଚଣ୍ଡୀ ପୁରାଣ'ରେ ବର୍ଣ୍ଣନା ଅଛି– ଦୁର୍ଗା ରକ୍ତବୀର୍ଯ୍ୟ, କାନ୍ତିମାଳା, ବିଡଳାକ୍ଷ, ବୀରଘଣ୍ଟ ଏବଂ କାଳଦଣ୍ଡ ପ୍ରଭୃତିଙ୍କ ସହିତ ଯୁଦ୍ଧ କଲାବେଳେ କ୍ରୋଧାନ୍ୱିତ ହୋଇଥିଲେ ଏବଂ ସେମାନଙ୍କୁ ନିଧନ କରିଥିଲେ । ପୁରାଣରେ ବର୍ଣ୍ଣନା ଅଛି–

'ନୟନ କଟାକ୍ଷୀ ପୁଣି ଚାହିଁଲେକ ଦେବୀ
ତକ୍ଷଣେ ନୟନୁ ଜାତ ହୋଇଲେ ଭୈରବୀ' ।

କେତେକ ସ୍ଥାନରେ ଚାମୁଣ୍ଡା ମୂର୍ତ୍ତି ଭୀମା ନାମରେ ପରିଚିତ । ସମୁଦ୍ର ଉପକୂଳବର୍ତ୍ତୀ ବାଲେଶ୍ୱର ଜିଲ୍ଲାର ଭୀମପୁରଠାରେ ଏକ ଅଷ୍ଟଭୁଜା ମୂର୍ତ୍ତି ଭୀମା ନାମରେ ପୂଜା ପାଉଛନ୍ତି । ଦେବୀଙ୍କ ନିକଟରେ ବଳି ପ୍ରଥା ରହିଛି । ହୁଏନ୍‌ସାଙ୍କ ଓଡ଼ିଶା ଭ୍ରମଣ ବୃତ୍ତାନ୍ତରେ ଭୀମା ଦେବୀଙ୍କ ନାମ ଏବଂ ପୂଜା ପଦ୍ଧତି ପ୍ରଥା ସୁନ୍ଦର ଭାବରେ ଉଲ୍ଲେଖ ଅଛି । 'କଙ୍କାଳମାଳିନୀ' ତନ୍ତ୍ରରେ ଭୀମା ଦେବୀଙ୍କ ବର୍ଣ୍ଣନା କରାଯାଇଛି । ଯଥାର୍ଥରେ:

'ନୀଳେନ୍ଦୀବର ବର୍ଣ୍ଣିନୀଂ ଯୁଗ୍ମାପୀନତୁଙ୍ଗସ୍ତନୀମ୍ ।
ସୁପ୍ତଶ୍ରୀହରି ପୀଠରାଜିତବତୀଂ ଭୀମାଂ ତ୍ରିନେତ୍ରାଂଶିବାମ୍ ।
ମୁଦ୍ରା ଖଡ଼ଗ କରାଂ ବରାଭୟଯୁତଂ ଚିରାମ୍ବରାର୍ଚ୍ଚିପନୀଂ ।
ବନ୍ଦେ ଚଞ୍ଚଳ ଚନ୍ଦ୍ର କାନ୍ତମଣି ଭିମାଳଂ ବଧାନଂ ପରାମ୍ ।'

ତନ୍ତ୍ର ଶାସ୍ତ୍ରରେ ମା'କାଳୀଙ୍କୁ ଆଦ୍ୟାଶକ୍ତି ମହାମାୟା ରୂପେ ଉଲ୍ଲେଖ କରାଯାଇ ତାଙ୍କର ଆଠ ପ୍ରକାର ମୂର୍ତ୍ତିର ନିର୍ଦ୍ଧାରଣ କରାଯାଇଛି । ତନ୍ମଧ୍ୟରେ ଦକ୍ଷିଣକାଳୀ, ଭଦ୍ରକାଳୀ ଓ ଶ୍ମଶାନକାଳୀ ପ୍ରଭୃତି ବିଶେଷ ଭାବରେ ପ୍ରସିଦ୍ଧି ଲାଭ କରିଛନ୍ତି । ପୁରାଣ ଶାସ୍ତ୍ରରେ ବର୍ଣ୍ଣନା ଅଛି, ମହାମାୟାଙ୍କ ତ୍ରିବିଧ ସ୍ୱରୂପ ହେଉଛନ୍ତି 'ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ । ତନ୍ମଧ୍ୟରୁ ମହାକାଳୀ ହେଉଛନ୍ତି ତମୋ ପ୍ରଧାନ ରୌଦ୍ରରୂପ ।

କାର୍ତ୍ତିକ ମାସର ଅମାବାସ୍ୟା ଦିନ ଦୀପାବଳି ଉତ୍ସବ ଦେଶର କୋଣାନୁକୋଣେ ମହାସମାରୋହରେ ପାଳନ କରାଯାଏ । ଆବାଳ ବୃଦ୍ଧ ବନିତା ଦୀପ ଆଲୋକରେ ନିଜର ବାସଗୃହ ସଜାନ୍ତି । ସେଥିପାଇଁ ଏହି ଅମାବାସ୍ୟା ଦୀପାବଳି, ଦିଆଲୀ ବା ପ୍ରଦୀପାମାବାସ୍ୟା ନାମରେ ନାମିତ ହୋଇଛି । କେତେକ ସ୍ଥାନରେ ଲକ୍ଷ୍ମୀପୂଜା ଓ ଆଉ କେତେକ ସ୍ଥାନରେ ଶ୍ରୀଯନ୍ତ୍ର ପୂଜା କରାଯାଏ । ଉପବାସ ବ୍ରତ ପାଳନ କରୁଥିବା ଲୋକେ ସାରା ରାତି ଉଜାଗର ରହନ୍ତି । ସାରା ରାତି ବାଣରେ ଚମକେ, ଦୀପାଲୋକରେ ଆଲୋକିତ ହୁଏ । ଘରେ ଘରେ ପରଲୋକଗତ ସପ୍ତପୁରୁଷଙ୍କୁ ଶ୍ରାଦ୍ଧ ଦିଆଯାଏ । କାଉଁରିଆ କାଠି ଜାଳି ବଡବଡୁଆଙ୍କୁ ଆବାହନ କରାଯାଏ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ନିଜ ନିଜର ପରମ୍ପରା ଅନୁଯାୟୀ ଦୀପାବଳି ଉତ୍ସବ ପାଳନ କରନ୍ତି ।

ରାମାୟଣର ବର୍ଣ୍ଣନା ଅନୁସାରେ ଶ୍ରୀରାମଚନ୍ଦ୍ର ଚଉଦ ବର୍ଷ ବନବାସ ପରେ ଏହି ଅମାବାସ୍ୟା ଦିନ ଆୟୋଧ୍ୟାରେ ପହଞ୍ଚି ଥିଲେ । ତାଙ୍କର ସ୍ୱାଗତ ପାଇଁ ଅଯୋଧ୍ୟାବାସୀ ଆଲୋକ ଉତ୍ସବ ପାଳନ କରିଥିଲେ । ସେହିଦିନଠାରୁ ଏହା ଦୀପାବଳି ନାମରେ ପାଳିତ ହୋଇଆସୁଛି ।

ପବିତ୍ର କାର୍ତ୍ତିକ ମାସରେ ଅଁଳା ନବମୀ, ଭୀଷ୍ମପଞ୍ଚକ, ଉତ୍ଥାପନ ଏକାଦଶୀ, ବଡଓଷା ପ୍ରଭୃତି ପର୍ବ ମହାସମାରୋହରେ ପାଳନ କରାଯାଏ । କାର୍ତ୍ତିକ ମାସର ବୋଇତ ବନ୍ଦାଣ ଓ କାର୍ତ୍ତିକ ପୂର୍ଣ୍ଣିମା ଉତ୍ସବ ବେଶ୍ ଆକର୍ଷଣୀୟ ଓ ମନମୁଗ୍ଧକର ।

ଉତ୍କଳୀୟ ସଂସ୍କୃତିରେ କାର୍ତ୍ତିକ ପୂର୍ଣ୍ଣିମା ବା ରାସ, ରାହାସ ପୂର୍ଣ୍ଣିମା ନାମରେ ପରିଚିତ । ଆଦିକବି ଶୂଦ୍ରମୁନି ସାରଳା ଦାସ ସ୍ୱରଚିତ 'ମହାଭାରତ'ର ଆଦି ପର୍ବରେ କାର୍ତ୍ତିକ ମାସର ପବିତ୍ରତା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଆଦିକବିଙ୍କ ମତରେ, କାର୍ତ୍ତିକ

ପୂର୍ଣ୍ଣିମା ଦିନ ଭୋଜରାଜ ଓ ଭୀଷ୍ମଙ୍କ ଗଙ୍ଗାସ୍ନାନ ଯାତ୍ରା ପ୍ରସଙ୍ଗରୁ ଜଣାଯାଏ ଯେ କାର୍ତ୍ତିକ ମାସରେ ମୃତ୍ୟୁବରଣ କଲେ ବୈକୁଣ୍ଠ ପ୍ରାପ୍ତି ହୁଏ । କାର୍ତ୍ତିକ ପୂର୍ଣ୍ଣିମା ପୂର୍ବ ପାଞ୍ଚଦିନ ପଞ୍ଚକପର୍ବ ବା ମହାପଞ୍ଚକ ନାମରେ ପରିଚିତ । ପଞ୍ଚକ ପାଞ୍ଚଦିନ ପ୍ରତ୍ୟେକ ହିନ୍ଦୁ ଆମିଷ ପରିହାର ପୂର୍ବକ ଧର୍ମୀୟ ମନୋଭାବରେ ଦେବତାଙ୍କୁ ପୂଜା କରିଥାଏ । ଶୁକ୍ଳପକ୍ଷ ଏକାଦଶୀ ବା ବଡ ଏକାଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଞ୍ଚଦିନ ଧରି ଅନୁଷ୍ଠିତ ମହାପଞ୍ଚକ ହିନ୍ଦୁମାନଙ୍କ ପକ୍ଷରେ ଧର୍ମଗତ ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଉକ୍ତ ଦିନ ସ୍ତ୍ରୀ ଲୋକମାନେ ରାଇଦାମୋଦର ପୂଜା ଉଦ୍‌ଯାପନ କରନ୍ତି ।

ଧର୍ମୀୟ ପରମ୍ପରାରେ ଉତ୍କଳୀୟ ସଂସ୍କୃତି ସମୃଦ୍ଧ । ବାର ମାସର ତେର ପର୍ବ ଉତ୍କଳୀୟ ଜନଜୀବନ ସହ ଓତଃପ୍ରୋତ ଭାବରେ ଜଡିତ । ତେଣୁ ଉତ୍କଳୀୟ ସଂସ୍କୃତିରେ କାର୍ତ୍ତିକ ମାସର ମାହାତ୍ମ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ ।

**ସହାୟକ ଗ୍ରନ୍ଥସୂଚୀ:**

୧) ଓଡ଼ିଶାର ପର୍ବପର୍ବାଣି: ଡକ୍ଟର ଭଗବାନ ପଣ୍ଡା

୨) ଓଡ଼ିଆ ସାହିତ୍ୟର ଇତିହାସ: ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

୩) ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା: ସମ୍ପାଦନା: ଡ. ବ୍ରଜମୋହନ ମହାନ୍ତି ।

୪) ଓଡ଼ିଶାର ସାଂସ୍କୃତିକ ପରମ୍ପରା: ପ୍ରଥମ ସ୍ତବକ: ସମ୍ପାଦନା: ଡକ୍ଟର ବ୍ରଜମୋହନ ମହାନ୍ତି ।

୫) ଓଡ଼ିଆ ସାହିତ୍ୟର ଇତିହାସ: ଅଧ୍ୟାପକ ପଠାଣି ପଟ୍ଟନାୟକ ।

ବଉଲପଦା, ବଳରାମପୁର
ଆଠଗଡ, କଟକ–୭୫୪୦୨୯

# ମୋ ପାଶୁ ହଜି ଯାଅନା

ଅନ୍ନପୂର୍ଣ୍ଣା ମିଶ୍ର

ଆସ ହେ କାଳିଆ ସୁନା ବସ ମୋ କୋଳରେ ଆସି
ଅନାଇ ଦେଖ ଆକାଶେ କି ଶୋଭା ଦିଶେ ଜୋଛନା ।

ଦେଖ ଏଣେ ଏବେ ଚାହିଁ ଶୀତଳ ସମୀର ବହି
କେତେ ସୁନ୍ଦର ଉଡଇ ତୁମ ନୀଳଚକ୍ର ବାନା ।

ତୁମ ସିଂହ ଦୁଆର ଦେଖ କେତେ ଲୋକଭିଡ
ସଭିଙ୍କ ମେଳରେ ମିଶି ମୋ ପାଶୁ ହଜି ଯାଅନା ।

ବାଇଶି ପାବଛେ ଚାଲ ଯିବା ହେ ଗୋପ ଗୋପାଳ
କଣିକେ କୈବଲ୍ୟ ପାଇଁ ଅଳିକରେ ଅନ୍ନପୂର୍ଣ୍ଣା ।

ହେ କଳା କହ୍ନେଇ ଅବୁଝା ହୋଇବ ନାହିଁ
କିଣି ମୁଁ ଆଣିଛି ଦେଖ ତୁମ ପାଇଁ ଏ ଖେଳନା ।

ଖାଇବା ପାଇଁ କି ଖଜା ଆଣିଛି ଲାଗିବ ମଜା
ଶ୍ରୀମୁଖ ବିସ୍ତାରି ଦିଅ କରନାହିଁ ଆଉ ମନା ।

ଚକା ଭଉଁରୀ କି ମନ କର କି ନନ୍ଦ ନନ୍ଦନ
ଶିର ଘୂରାଇବ କାଳେ ଶ୍ରୀଅଙ୍ଗ ହେବ ଯାତନା ।

ଧୀରେ ଧୀରେ ଚାଲ ହରି ଦୃଢେ ମୋର ହାତ ଧରି
ପଡିଯିବ କାଳେ ତୁମେ ଏଣୁ ମୁଁ ଡରୁଛି ସିନା ।

ହରଚଣ୍ଡୀ ସାହି, ପୁରୀ

# ଶ୍ରୀମନ୍ଦିରରେ ଦେବ ଦୀପାବଳି ଉତ୍ସବ

ପଣ୍ଡିତ ରାମକୃଷ୍ଣ ମିଶ୍ର

ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ ତିଥିଠାରୁ ଶୁକ୍ଳ ପ୍ରତିପଦ ତିଥି ପର୍ଯ୍ୟନ୍ତ ତିନିଦିନ ବ୍ୟାପୀ ଦେବତାମାନଙ୍କର ଦୀପାବଳି ବା ଦୀପଦାନ ଉତ୍ସବ ପାଳିତ ହୁଏ । ଏହି ସମୟରେ ଓଡ଼ିଶାର ବିଭିନ୍ନ ମନ୍ଦିରଗୁଡ଼ିକୁ ଆଲୋକମାଳାରେ ସଜ୍ଜିତ କରାଯାଏ । ଓଡ଼ିଶାର ବିଶ୍ୱ ପ୍ରସିଦ୍ଧ ଶ୍ରୀମନ୍ଦିର ଓ ଶ୍ରୀଲିଙ୍ଗରାଜ ମନ୍ଦିରରେ ଏହା ବିଶେଷ ଭାବରେ ପାଳିତ ହୋଇଥାଏ । ସାକ୍ଷୀଗୋପାଳଠାରେ ମଧ୍ୟ ସାକ୍ଷୀଗୋପାଳଙ୍କ ମନ୍ଦିରରେ ଏହି ଉତ୍ସବ ମହା ସମାରୋହରେ ପାଳନ କରାଯାଏ । କିନ୍ତୁ ଶ୍ରୀମନ୍ଦିରରେ ଏହି ଦୀପାବଳି ଉତ୍ସବ ଶ୍ରୀଜଗନ୍ନାଥଙ୍କ ପିତୃଶ୍ରାଦ୍ଧ ପରମ୍ପରା ଭାବେ ଏକ ସ୍ୱତନ୍ତ୍ର ନୀତିରେ ପାଳନ କରାଯାଏ । ପ୍ରଭୁ ଶ୍ରୀଜଗନ୍ନାଥ ମାନବବାଦୀ ଦେବତା ହୋଇ ଥିବାରୁ ତାଙ୍କର ସମସ୍ତ ରୀତିନୀତି ଓ ଉତ୍ସବ ମାନବବାଦରେ ପାଳନ କରାଯାଏ । ଶ୍ରୀଜୀଉମାନେ ତିନିଦିନ ଲୁଗା ଓ ଚଦର ପରିଧାନ କରି ଶ୍ରାଦ୍ଧବେଶରେ ସଜ୍ଜିତ ହୋଇ ପିତୃଗଣଙ୍କୁ ଶ୍ରାଦ୍ଧ ପ୍ରଦାନ ପୂର୍ବକ ଦୀପଦାନ କରିଥାନ୍ତି ।



ଶ୍ରୀଜଗନ୍ନାଥଙ୍କ ଶ୍ରାଦ୍ଧ ସମୟର ବସ୍ତ୍ରକୁ କାଶୀଧଡ଼ିଆ ବସ୍ତ୍ର କୁହାଯାଏ । ଏହି ବସ୍ତ୍ରର ରଙ୍ଗ ଶ୍ୱେତବର୍ଣ୍ଣ ଓ ଲାଲ ରଙ୍ଗ ଧଡ଼ିରେ ବଡ଼ ବଡ଼ କୁମ୍ଭମାନ ପଡ଼ିଥାଏ । ଶ୍ରୀଜଗନ୍ନାଥଙ୍କର ଶ୍ୱେତ ପାଟବସ୍ତ୍ରର ଲମ୍ବ ୧୬–୧୮ ହାତ, ଚଉଡ଼ା ୫ ହାତ ଓ ଧଡ଼ିର ଓସାର ୧ଫୁଟ । ସେହିଭଳି ବଳଭଦ୍ରଙ୍କର ଶ୍ୱେତ ପାଟବସ୍ତ୍ରର ଲମ୍ବ ୧୪ ହାତ, ଚଉଡ଼ା ୪ ହାତ ଓ କଳାବର୍ଣ୍ଣ ଧଡ଼ିର ଓସାର ୧ ଫୁଟ । ଦେବୀ ସୁଭଦ୍ରାଙ୍କର ପାଟବସ୍ତ୍ରର ଲମ୍ବ ୧୨ ହାତ, ଚଉଡ଼ା ୩ ଫୁଟ ୬ ଇଞ୍ଚ ଓ ହଳଦିଆ ରଙ୍ଗ ଧଡ଼ିର ଓସାର ୧ ଫୁଟ । ଏସବୁ ବସ୍ତ୍ର ସହିତ ଶ୍ରୀଜୀଉମାନଙ୍କୁ ଚାଦରରେ ମଣ୍ଡନ କରାଯାଇ ଶିରରେ ଶ୍ରୀକପଡ଼ା ନାମକ ସ୍ୱତନ୍ତ୍ର ବସ୍ତ୍ରରେ ଶୋଭିତ କରାଯାଏ । ପୁଷ୍ପାଳକ ସେବକମାନେ ଶ୍ରୀଜୀଉମାନଙ୍କୁ ଚିତ୍ତାକର୍ଷକ ଶ୍ରାଦ୍ଧ ବେଶରେ ସଜ୍ଜିତ କରିଥାନ୍ତି । ଏହି ବେଶରେ ଠାକୁରମାନେ ନଳିଭୁଜ, କୁଣ୍ଡଳ, ଚନ୍ଦ୍ରସୂର୍ଯ୍ୟ, ଆଡ଼କାନି, ତଡ଼ଗି, ହରିଡ଼ାମାଳି ଓ ଅଣ୍ଟାକମରପଟି ପ୍ରଭୃତି ସୁବର୍ଣ୍ଣ ଅଳଙ୍କାର ପରିଧାନ କରିଥାନ୍ତି । ଶ୍ରୀମନ୍ଦିରରେ ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ପ୍ରଭୁ ବାମନ ରୂପରେ ଦେବ ପିତାମାତା ସତ୍ୟଯୁଗର କଶ୍ୟପ ଋଷି ଓ ଅଦିତିଙ୍କ ପ୍ରତି ପିଣ୍ଡ ଓ ଦୀପୋତ୍ସର୍ଗ କରନ୍ତି । ମାର୍ଗଶିର ଅମାବାସ୍ୟା ତିଥିରେ ପ୍ରଭୁ ଶ୍ରୀରାମଚନ୍ଦ୍ର ରୂପରେ ତ୍ରେତୟା ଯୁଗର ପିତା ଦଶରଥ ଓ କୌଶଲ୍ୟା ମାତାଙ୍କୁ ପିଣ୍ଡ ଓ ଦୀପଦାନ କରନ୍ତି । ମାର୍ଗଶିର ଶୁକ୍ଳ ପ୍ରତିପଦ ତିଥିରେ ପ୍ରଭୁ ଶ୍ରୀକୃଷ୍ଣ ରୂପରେ ଦ୍ୱାପର ଯୁଗର ପିତା ବସୁଦେବ ଓ ମାତା ଦେବକୀଙ୍କୁ ଏବଂ ନନ୍ଦ ଓ ଯଶୋଦାଙ୍କୁ ପିଣ୍ଡ ଓ ଦୀପଦାନ କରନ୍ତି । ସୂର୍ଯ୍ୟବଂଶର ବିଷ୍ଣୁଭକ୍ତ ଗଜପତି ମହାରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ଦର୍ଶନ ପାଇଁ ବହୁ କାମନା କରିଥିଲେ । ସେ ପାଞ୍ଚଶହ ବର୍ଷ ମଧ୍ୟରେ ପ୍ରଭୁଙ୍କ ଆଜ୍ଞାରେ

ଏକହଜାର ଅଶ୍ୱମେଧ ଯଜ୍ଞ କରି ଶ୍ରୀନୀଳମାଧବଙ୍କୁ ଦାରୁ ରୂପେ ପ୍ରାପ୍ତ ହୋଇଥିଲେ ବୋଲି କଥିତ ଅଛି । ପ୍ରଭୁଙ୍କ ଆଜ୍ଞାରେ ବାଙ୍କୀମୁହାଣଠାରେ ଭାସୁଥିବା ଦାରୁ ଆଣି ମୂର୍ତ୍ତି ଗଠନ କଲେ । ଗୁଣ୍ଡିଚା ମନ୍ଦିରଠାରେ ବ୍ରହ୍ମାଙ୍କ ଆଜ୍ଞାରେ ଯଜ୍ଞ କରାଇଥିଲେ । ଏକ ହଜାର ହାତ ଉଚ୍ଚରେ ବଡଦେଉଳ କରାଇଥିଲେ ବୋଲି କିମ୍ବଦନ୍ତୀ ରହିଛି, ଯାହା କି ବର୍ତ୍ତମାନ ଲୁପ୍ତ । ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ ଓ ଦେବୀ ସୁଭଦ୍ରା ଆଦି ତିନିମୂର୍ତ୍ତି ସ୍ଥାପନ କରି ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇଥିଲେ । ପ୍ରଭୁ ଶ୍ରୀନୀଳମାଧବ ଆୟୁଧ ଶ୍ରୀସୁଦର୍ଶନଙ୍କ ସହିତ ଚତୁର୍ଦ୍ଧାମୂର୍ତ୍ତି ରୂପେ ପୂଜା ପାଇଲେ । ବରଦାନରେ ସେ ନିଜେ ବଂଶହୀନ ହେବା ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କରିଥିଲେ । ଯାହାଦ୍ୱାରା ପ୍ରଭୁଙ୍କ କୀର୍ତ୍ତି ପାଇଁ ତାଙ୍କ ପରେ କେହି ଅହଙ୍କାର କରିବେ ନାହିଁ । ତେଣୁ ଏହି ଦୀପାବଳିରେ ମାର୍ଗଶିର ଶୁକ୍ଳ ପ୍ରତିପଦ ତିଥିରେ ପ୍ରଭୁ ଶୁଭ୍ରବସ୍ତ୍ର ଓ ଚଦର ପରିଧାନ କରି ପିତାମାତା ଭାବେ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଣୀ ଗୁଣ୍ଡିଚାଙ୍କୁ ପିଣ୍ଡ ଓ ଦୀପଦାନ କରନ୍ତି । ଏପରି ଭକ୍ତ ଓ ଭଗବାନଙ୍କ ସମ୍ପର୍କ ଦେଖିବାକୁ ବିରଳ । ଏହି ଦିନମାନଙ୍କରେ ପ୍ରଭୁଙ୍କର ଶ୍ରାଦ୍ଧବେଶ ଓ ଶ୍ରୀମନ୍ଦିରର ଆଲୋକସଜ୍ଜା ଅତ୍ୟନ୍ତ ମନୋମୁଗ୍ଧକର ହୋଇଥାଏ । ବିଧି ଅନୁସାରେ ଚୂନରା ସେବକ ମହାଦୀପ ଧରି ଶ୍ରୀମନ୍ଦିରକୁ ଦୀପରେ ସଜ୍ଜିତ କରିଥାନ୍ତି । ଶ୍ରୀମନ୍ଦିରର ଗୁମୁଟି, ରାଜନଅର ଓ ଶ୍ରୀମନ୍ଦିର କାର୍ଯ୍ୟାଳୟକୁ ବିଭିନ୍ନ ଆଲୋକମାଳାରେ ସଜ୍ଜିତ କରାଯାଏ । ପିତୃଶ୍ରାଦ୍ଧ ଓ ଦୀପଦାନ ପରେ ଚୂନରା ସେବକ ଶ୍ରୀମନ୍ଦିରର ତିନି ଦେଉଳ ଉପରେ ମହାଦୀପ ଜାଳି ଗଜପତିଙ୍କୁ ମହାପ୍ରଭୁଙ୍କ ଆଶୀର୍ବାଦ ଦିଅନ୍ତି ।

ମାର୍ଗଶୀର୍ଷେ କୃଷ୍ଣପକ୍ଷେ ଚତୁର୍ଦ୍ଦଶ୍ୟାଦିକେତିଥୌ ।
ତ୍ରିଦିନାନ୍ତଂ ହରେର୍ଦ୍ଦଦ୍ୟାତ୍ ପ୍ରାସାଦେ ଦୀପମାଳିକାମ୍ ॥

ମାର୍ଗଶିର ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ସନ୍ଧ୍ୟାଧୂପ ପରେ ଧୋପଖାଳ ହେବା ପରେ ରତ୍ନସିଂହାସନ ତଳେ ଭଣ୍ଡାରମେକାପ ଚାଉଳରେ ଗୋଟିଏ ଗଛ ନିର୍ମାଣ କରନ୍ତି । ପାଳିଆ ମେକାପ ବଇଠାମାନଙ୍କରେ ଘୃତ ପୂର୍ଣ୍ଣ କରି ଚାଉଳ ଗଛରେ ବତୀ ବସାନ୍ତି । ସମୁଦାୟ ଅଠେଇଶ ଗୋଟି ବତି ବସାଯାଏ । ତନ୍ମଧ୍ୟରୁ ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ନିମନ୍ତେ ନଅଗୋଟି କରି ଅଠର ଏବଂ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିମନ୍ତେ ଦଶଗୋଟି ଦୀପ ବସାଯାଇଥାଏ । ତିନିଗୋଟି ସୁନା ଆଳତି ଲଗାଇବା ପରେ ପୂଜାପଣ୍ଡା ସେବକ ଚାଉଳଗଛ ଓ ଦୀପମାନଙ୍କୁ ସଂସ୍କାର କରନ୍ତି । ଏହାପରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ସେବକମାନେ ସିଂହାସନ ଉପରକୁ ଉଠି ତିନିବାଡ଼ରେ ବନ୍ଦାପନା କରନ୍ତି । ତା'ପରେ ତିନିଗୋଟି ମହାଦୀପରେ ବନ୍ଦାପନା କରାଯାଏ । ତତ୍ପରେ ପୂଜକ ତିନିଜଣ ମହାଦୀପଗୁଡ଼ିକୁ ହାତରେ ଧରି ଜୟବିଜୟ ଦ୍ୱାରର ଭିତର ପାଖକୁ ଆସନ୍ତି । ସେଠାରେ ଆସ୍ଥାନ ପଢ଼ିଆରୀ କରିଥିବା ଚାଉଳଗଛକୁ ଜଣେ ପୂଜାପଣ୍ଡା ସଂସ୍କାର କରି ପାଣି ଛଡ଼ାନ୍ତି । ସେହି ମହାଦୀପ କଳସଗୁଡ଼ିକୁ ପାଳିଆ ଚୂନରାଙ୍କୁ ଦିଆଯାଏ । ସଂପୃକ୍ତ ଚୂନରା ସେବକ ବଡ଼ଓଡ଼ିଆ ମଠ ପ୍ରଦତ୍ତ ତେଲ ଓ ଘିଅ ନେଇ ମନ୍ଦିରର ଅଁଳା ବେଢ଼ା ଉପରେ ଦୀପମାନ ଜାଳନ୍ତି ଓ ଚନ୍ଦ୍ର ଉଦିଆ ଜାଳି 'ଗଜପତି ମହାରାଜାଙ୍କୁ ମହାପ୍ରଭୁ ଶଙ୍ଖେପୂରାଇ ଚକ୍ରେ ଆଡୁଆଳ କରନ୍ତୁ' କହି ହରିବୋଲ ଡାକ ଦିଅନ୍ତି । ଅମାବାସ୍ୟା ଦିନ ଠିକ୍ ପୂର୍ବୋକ୍ତ ରୀତିରେ ନୀତି ଅବିକଳ ପାଳିତ ହୋଇଥାଏ । କିନ୍ତୁ ପ୍ରତିପଦା ଦିନ ପାଣି ପଡ଼ି ଚାଉଳ ଗଛ ହେବା ପରେ ମଦନମୋହନ ଭିତର ସିଂହାସନକୁ ବିଜେ କରନ୍ତି । ସେଠାରେ ମୁଦିରସ୍ତ ପ୍ରସାଦ ଲାଗି କଲା ପରେ ତିନିଜଣ ପାଳିଆ ପୂଜାପଣ୍ଡା ଚାଉଳ ଗଛକୁ ସଂସ୍କାର କରି ପାଣି ଛଡ଼ାଇବା ପରେ ତିନିବାଡ଼ରେ ବନ୍ଦାପନା ସରିଲେ ମଦନମୋହନ ଓ ଲକ୍ଷ୍ମୀ ସରସ୍ୱତୀ ଆଜ୍ଞାମାଳ ପାଇ ଜୟବିଜୟ ଦ୍ୱାର ଭିତର ପାଖେ ବିଜେ କରିଥିବା ବେଳେ ସେଠାରେ ନିର୍ମିତ ଚାଉଳ ଗଛର ସଂସ୍କାର କାର୍ଯ୍ୟ ବଢ଼େ ଓ ଜୟବିଜୟ ଦ୍ୱାର ଫିଟାଯାଏ । ତାପରେ ଠାକୁରମାନେ ଝୁଲଣମଣ୍ଡପ ତଳେଥିବା ବିମାନରେ ବିଜେ କରନ୍ତି । ଏହିଠାରେ ଠାକୁରମାନଙ୍କର ରୁନ୍ଧା ବଢ଼ିବା ପରେ ବିମାନକୁ ଜଗନ୍ନାଥ ବଲ୍ଲଭ ମଠକୁ ନିଆଯାଏ । ଏହି ସ୍ଥାନରେ ମୂଳିଆ ସୁଆଁସିଆ ଦେଇଥିବା କାଷ୍ଠ ନିର୍ମିତ ଭଦ୍ରାସନ ଉପରେ ଆସ୍ଥାନ ପ୍ରତିହାରୀ ଚାଉଳଗଛ ତିଆରି କରି ଦୀପ ବସାଇଥାନ୍ତି । ଏଠାରେ ମୁଦିରସ୍ତ ପ୍ରସାଦ ଲାଗି କରିବା ପରେ ପୂଜାପଣ୍ଡା ଚାଉଳଗଛକୁ ସଂସ୍କାର କରନ୍ତି ଓ ମୁଦିରସ୍ତ ବନ୍ଦାପନା କରିଥାନ୍ତି । ତା'ପରେ ସେଠାରୁ ଠାକୁରମାନେ ବାହୁଡ଼ାବିଜେ କରି ସ୍ୱ ସ୍ୱ ସ୍ଥାନକୁ ଯାଇଥାନ୍ତି । ଏହି ଅବସରରେ ଉଭୟ ଶ୍ରୀମନ୍ଦିର ଓ କାର୍ଯ୍ୟାଳୟକୁ ଦୀପମାଳାରେ ସୁସଜ୍ଜିତ କରାଯାଇଥାଏ । ଏହି ପାବନ ଯାତ୍ରା କାଳରେ ଯେଉଁମାନେ ଶ୍ରୀଜୀଉଙ୍କର ଦର୍ଶନ ଲାଭ କରନ୍ତି ସେମାନେ ଇହ ଲୋକରେ ସୁଖ ଓ ପରଲୋକରେ ବିଷ୍ଣୁଲୋକରେ ସ୍ଥାନ ଲାଭ କରନ୍ତି । ଯେହେତୁ ଏହା ଏକ ଗୁପ୍ତ ସେବା ତେଣୁ ସର୍ବସାଧାରଣରେ ଦର୍ଶନ ହୁଏ ନାହିଁ ।

ପ୍ରତିମାଃ ସ୍ୱପଦେ ରକ୍ଷେଦେତତ୍ ପଶ୍ୟତି ଯୋ ନରଃ ।
ଇହ ଲୋକେ ସୁଖଂ ଭୁକ୍ତ୍ୱା ବ୍ରଜେଦନ୍ତେ ହରୋଃ ପଦମ୍ ॥

(ବାମଦେବ ସଂହିତା)

ଏ.ଏଲ–୫୩
ବୀର ସୁରେନ୍ଦ୍ର ସାଏ ନଗର, ଭୁବନେଶ୍ୱର

# ଅନ୍ୟତମ ସଫଳ ଶିଳ୍ପଦ୍ୟୋଗିନୀ ଗୀତାରାଣୀ

## (ଭାରତ ଅର୍ନ୍ତଜାତୀୟ ବାଣିଜ୍ୟ ମେଳା ୨୦୧୪ର ବିଷୟବସ୍ତୁ ପରିପ୍ରେକ୍ଷୀରେ)

**ଗୁରୁକଲ୍ୟାଣ ମହାପାତ୍ର**

ଭାରତୀୟ ବାଣିଜ୍ୟ ଉନ୍ନୟନ ସଂସ୍ଥା (The Indian Trade Promotion Organisation) ଏହାର ୩୪ତମ ସଂସ୍କରଣର ବିରାଟ ମେଳା ସଂକ୍ରାନ୍ତରେ ଘୋଷଣା କରି ସାରିଛି । ତାହା ହେଲା, ଆସନ୍ତା ନଭେମ୍ବର ୧୪ରୁ ୨୭ ମଧ୍ୟରେ ହେବାକୁ ଥିବା ଭାରତ ଅର୍ନ୍ତଜାତୀୟ ବାଣିଜ୍ୟ ମେଳା (India International Trade Fair) । ନୂଆଦିଲ୍ଲୀର ପ୍ରଗତି ମଇଦାନରେ ଏହି ବିରାଟ ବାଣିଜ୍ୟ ମେଳାର ବିଷୟବସ୍ତୁ ରହିଛି 'ମହିଳା ଶିଳ୍ପଦ୍ୟୋଗୀ' । ଭାରତ ସରକାର ୧୯୮୦ ମସିହାରୁ ଆରମ୍ଭ କରିଥିବା ଏହି ବିରାଟ ମେଳାରେ ଗତଥର ୨୦୧୩ ମସିହାରେ ବିଷୟବସ୍ତୁ ଥିଲା ଭିନ୍ନ । 'ଅଂଶୀଦାର ରାଜ୍ୟ ବିହାର ଓ ଅଂଶୀଦାର ରାଷ୍ଟ୍ର ଜାପାନକୁ ନେଇ ସାମଗ୍ରିକ ଅଭିବୃଦ୍ଧି' ଥିଲା ଗତଥର ଆଇ.ଆଇ.ଟି.ଏଫ୍ ବା ଭାରତ ଅର୍ନ୍ତଜାତୀୟ ବାଣିଜ୍ୟ ମେଳାର ବିଷୟବସ୍ତୁ ବା ସ୍ୱର । ମାତ୍ର ଏଥରର ବିଷୟବସ୍ତୁ ମହିଳା ଶିଳ୍ପଦ୍ୟୋଗୀ ପରିପ୍ରେକ୍ଷୀରେ ଓଡ଼ିଶାର ଜଣେ ମହିଳା ଶିଳ୍ପଦ୍ୟୋଗୀଙ୍କ ସମ୍ପର୍କରେ ଏ ହେଉଛି ନାତିଦୀର୍ଘ ଏକ ଆଲେଖ୍ୟ ।



ଓଡ଼ିଶାର ଯେଉଁ ମହିଳା ଶିଳ୍ପଦ୍ୟୋଗୀଙ୍କ ବିଷୟରେ ଏଠାରେ ଉଲ୍ଲେଖ କରାଯାଉଛି, ସେ ହେଉଛନ୍ତି ଡକ୍ଟର ଗୀତାରାଣୀ ପାଢୀ । ଏପ୍ରିଲ ୨୦ ତାରିଖ ୧୯୫୩ ମସିହାରେ ତାଙ୍କର ଜନ୍ମ । ଉଲ୍ଲେଖନୀୟ ଯେ ବିଶିଷ୍ଟ ଔପନ୍ୟାସିକ ଓ ପ୍ରଥମ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଓଡ଼ିଆ ଲେଖକ ସ୍ୱର୍ଗୀୟ ଗୋପୀନାଥ ମହାନ୍ତିଙ୍କର ଜନ୍ମ ତାରିଖ ମଧ୍ୟ ଏପ୍ରିଲ ୨୦ । ସେ ଯାହାହେଉ, ଡକ୍ଟର ଗୀତାରାଣୀ ପାଢୀ ହେଉଛନ୍ତି ଭୁବନେଶ୍ୱର ଅନ୍ତର୍ଗତ ଉତ୍କଳ ବାଣିଜ୍ୟ ଓ ଶିଳ୍ପ ସଂଗଠନର ରାଜ୍ୟ ଶାଖା ସଭାପତି ତଥା ଶିଳ୍ପଦ୍ୟୋଗୀ ଶ୍ରୀ ରମେଶ ଚନ୍ଦ୍ର ମହାପାତ୍ରଙ୍କ ସହଧର୍ମିଣୀ । ରସାୟନ ବିଦ୍ୟାରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିବା ପରେ ଗୀତାରାଣୀ ସେହି ବିଷୟରେ ବିଶେଷ କରି ନ୍ୟୁକ୍ଲିଅର କେମିଷ୍ଟ୍ରିରେ ଗବେଷଣା କରି ଡକ୍ଟରେଟ୍ (ପି.ଏଚ୍‌ଡି) ଡିଗ୍ରୀ ମଧ୍ୟ ହାସଲ କରିଥିଲେ । ଏହା ପରେ ସେ ଅଳ୍ପଦିନ ପାଇଁ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା କରି ଚାକିରି ଛାଡିବା ପରେ ମ୍ୟାନେଜମେଣ୍ଟ ବା ପରିଚାଳନା ପାଠ୍ୟକ୍ରମରେ ସେଣ୍ଟ ଜେଭିଅରସରେ ପଢିବାକୁ ଆଗ୍ରହ ପ୍ରକାଶ କରିଥିଲେ । ମନୋନୀତ ବି ହୋଇଥିଲେ । ମାତ୍ର ପାରିବାରିକ ଅସୁବିଧା ଯୋଗୁଁ ଆଉ ପାଠ ପଢି ପାରିଲେ ନାହିଁ । ପାଠପଢାର ଇତି ହେଲା ତାଙ୍କର ସେଇଠି ।

ଗୀତାରାଣୀ ଆଉ କ'ଣ କରିଥା'ନ୍ତେ ? ତେଣୁ ସେ ଶିଳ୍ପଦ୍ୟୋଗୀ ହେବା ପୂର୍ବରୁ ୧୯୮୦ ମସିହାରେ ବିଭିନ୍ନ ଶିଳ୍ପସଂସ୍ଥା ପାଇଁ ପ୍ରକଳ୍ପ ବିବରଣୀ ପ୍ରସ୍ତୁତ କରି ଜଣେ ପରାମର୍ଶଦାତାର ଭୂମିକାରେ ଅବତୀର୍ଣ୍ଣ ହେଲେ । ରସାୟନ ବିଦ୍ୟାରେ ପାଠ ପଢିଥିବାରୁ ସେ ବ୍ଲିଚିଙ୍ଗ ଓ କେତେକ ଅମ୍ଳଜାନ କାରଖାନା ଉପରେ ପ୍ରଥମେ ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ କରି ସଫଳ ହୋଇଥିଲେ । ଏହା ପରେ ସେ କେତେକ ହୋଟେଲ ଶିଳ୍ପର ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ କରି ମଧ୍ୟ ସଫଳ ହୋଇପାରିଥିଲେ । ପ୍ଲାଷ୍ଟିକ ପାଇପ୍ ଉପରେ ମଧ୍ୟ ସେ ପ୍ରୋଜେକ୍ଟ

ରିପୋର୍ଟ ପ୍ରସ୍ତୁତି ଆରମ୍ଭ କଲେ । ୧୯୮୩-୮୪ରେ ରାଜ୍ୟର ତତ୍କାଳୀନ ଶିଳ୍ପ ନିର୍ଦ୍ଦେଶକ, ଓଡ଼ିଶାରେ ପ୍ରସାଧନ ଦ୍ରବ୍ୟର ଚାହିଦା (Demand of Cosmetics in Odisha) ଉପରେ ଏକ ପ୍ରୋଜେକ୍ଟ ରିପୋର୍ଟ ମାଗିବାରୁ ଗୀତାରାଣୀ ତାହା ସଫଳତାର ସହ ସମ୍ପନ୍ନ କରି ଶିଳ୍ପ ନିର୍ଦ୍ଦେଶକଙ୍କୁ ହସ୍ତାନ୍ତର କରିଥିଲେ । ଇତି ମଧ୍ୟରେ ୧୯୮୦ରୁ ୧୯୮୮ ମଧ୍ୟରେ ସେ ଶିଳ୍ପ ସଂସ୍ଥାମାନଙ୍କ ପାଇଁ ପ୍ରକଳ୍ପ ପରାମର୍ଶଦାତା କମ୍ପାନୀ ଗଠନ କରି ତାହାର ପ୍ରକଳ୍ପ ପରିଚାଳକ ଭାବେ କାର୍ଯ୍ୟାରମ୍ଭ କରିଥିଲେ । ଏହା ପରେ ସେ ତାଙ୍କ ସ୍ୱାମୀଙ୍କ ଶିଳ୍ପ ସଂସ୍ଥା ମାଗନମ୍ ଫାର୍ମାଟେକ୍ ପ୍ରାଇଭେଟ୍ କମ୍ପାନୀର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ ଭାବେ ଯୋଗଦେଇ ଶିଳ୍ପ କ୍ଷେତ୍ରରେ ଅଭିଜ୍ଞତା ଅର୍ଜନ କରିବା ପରେ ଏବେ ସେହି ମାଗନମ୍ ଗ୍ରୁପ୍‌ରେ ଏକାଧିକ ଶିଳ୍ପ ସଂସ୍ଥାର ସଫଳ ଶିଳ୍ପଦ୍ୟୋଗୀ ଭାବେ ସୁନାମ ଅର୍ଜନ କରିଛନ୍ତି । ସମ୍ପ୍ରତି ସେ ମାଗନମ ପଲିମର୍ ପ୍ରାଇଭେଟ୍ ଲିମିଟେଡ୍, ମାଗନମ୍ ଫାଇବର ଲିମିଟେଡ୍, ମାଗନମ ଇଷ୍ଟେଟସ୍ ଲିମିଟେଡ୍ ଓ ମାଗନମ୍ ସି ଫୁଡ୍ ଲିମିଟେଡ୍‌ର ଶିଳ୍ପଦ୍ୟୋଗିନୀ ଭାବେ ବେଶ୍ ସଫଳତା ହାସଲ କରିଛନ୍ତି ।

ପ୍ରଥମାବସ୍ଥାରେ ଶିଳ୍ପ କ୍ଷେତ୍ରରେ ସେ ପ୍ରବେଶ କରିଥିଲେ କେଶର ତେଲ, ପାଉଡର ଓ ଦେହରେ ମାଲିସ ହେଉଥିବା ତେଲ ପ୍ରଭୃତିର ଉତ୍ପାଦନ କ୍ଷେତ୍ରରେ । ତାଙ୍କର ସ୍ୱାମୀ ବଜାରରେ ସେସବୁର ବିକ୍ରୀବଟା ଉପରେ ତାଙ୍କୁ ସହଯୋଗ କରିଥିଲେ । ଗୀତାରାଣୀ କହନ୍ତି ଯେ ଇମାମୀର ତତ୍କାଳୀନ ଅଧ୍ୟକ୍ଷ ଶ୍ରୀ ଆର୍.ଏସ୍. ଅଗ୍ରୱାଲା ଆସି ଭୁବନେଶ୍ୱରରେ ପହଞ୍ଚି ତାଙ୍କର ଶିଳ୍ପସଂସ୍ଥା ପରିଦର୍ଶନ କରିଥିଲେ । ଏହାପରେ ସେ ତାଙ୍କୁ ଓ ତାଙ୍କ ସ୍ୱାମୀଙ୍କୁ କୋଲକାତାକୁ ଡାକି ଆଲୋଚନା କରିବା ପରେ 'ବରୋପ୍ଲସ' (ଆଣ୍ଟିସେପ୍ଟିକ ମଲମ) ଉତ୍ପାଦନ ଲାଗି ଅର୍ଡର ଦେଇଥିଲେ । ୧୯୯୧ରେ ବରୋପ୍ଲସର ଉତ୍ପାଦନ ଚାହିଦା ମୁତାବକ ବୃଦ୍ଧି ପାଇଥିଲା । 'ମାତ୍ର ବରୋପ୍ଲସର ଉତ୍ପାଦନକୁ ପ୍ରୋସାହିତ କରିଥିବା ଇମାମୀ କମ୍ପାନୀ କୋଲକାତାରୁ ଗୁଆହାଟୀକୁ ସ୍ଥାନାନ୍ତରିତ ହୋଇଯିବାରୁ ଆମେ ବିଶେଷ ଅର୍ଡର ପାଇପାରିଲୁ ନାହିଁ । ତେଣୁ ୨୦୦୪ ମସିହାରେ ଆମେ ଅନ୍ୟାନ୍ୟ ଦ୍ରବ୍ୟ ଉତ୍ପାଦନରେ ଧ୍ୟାନ ଦେଇଥିଲୁ ବୋଲି ଗୀତାରାଣୀ ପ୍ରକାଶ କରିଥିଲେ ।'

ଗୀତାରାଣୀଙ୍କ ଉଦ୍ୟମରେ ଆରମ୍ଭ ହେଲା ଏହା ପରେ ବିଭିନ୍ନ ପ୍ଲାଷ୍ଟିକ ଦ୍ରବ୍ୟ । ସେଗୁଡିକ ହେଉଛି ମାଗନମ୍ ନେଟ୍ ବା ଜାଲ । ମାଗନମ୍ ପଲିମର୍ । ମାଗନମ୍ ଟ୍ୱାଇନିସ୍ ବା ଜାଲର ସୂତା । ଏହି ସୂତା ନିଜ ଶିଳ୍ପର ଚାହିଦା ତ ମେଣ୍ଟାଇଲା, ଅବଶିଷ୍ଟାଂଶ ମଧ୍ୟ ସ୍ଥାନୀୟ ବଜାରରେ ବିକ୍ରୀ ହୋଇପାରିଲା । ଭାରତର ଉପକୂଳବର୍ତ୍ତୀ ଅଞ୍ଚଳରେ ମତ୍ସ୍ୟଜୀବୀ ଓ ମତ୍ସ୍ୟଚାଷୀମାନେ ଏହି ଜାଲକୁ ବହୁଳ ଭାବରେ ବ୍ୟବହାର କରି ଆସୁଛନ୍ତି ।

**ଏହାଛଡା ଏଚ୍‌ଡିପି ପଲିଥିନ୍ ପାଇପ ମଧ୍ୟ ଉତ୍ପାଦନ କରୁଛନ୍ତି ଗୀତାରାଣୀ, ଭୁବନେଶ୍ୱର ମଞ୍ଚେଶ୍ୱର ଶିଳ୍ପାଞ୍ଚଳରେ । ଓଡ଼ିଶାରୁ ଏକମାତ୍ର ଶିଳ୍ପଦ୍ୟୋଗୀଭାବେ ସେ ମଧ୍ୟ ପ୍ଲାଷ୍ଟିକ୍ ଦଉଡି (ପି ପି ରୋପ୍) ପ୍ରସ୍ତୁତ କରି ସଫଳ ହୋଇଛନ୍ତି ।**

ମଞ୍ଚେଶ୍ୱରରେ ଗୀତାରାଣୀଙ୍କ ଶିଳ୍ପ ସଂସ୍ଥା ନିକଟରେ ଆଉ ଜଣେ ମହିଳା ଶିଳ୍ପଦ୍ୟୋଗୀ ଶ୍ରୀମତୀ କମଳିନୀ ମହାପାତ୍ର ବିଦ୍ୟୁତ୍ କାପାସିଟର୍ ଉତ୍ପାଦନ କରି ଅତୀତରେ ସୁନାମ ଅର୍ଜନ କରିଥିଲେ । ମାତ୍ର ଏବେ ସେ ତାହା ବନ୍ଦ କରିଦେଲେଣି ।

ଗୀତାରାଣୀ କହନ୍ତି– ରାଜ୍ୟ ସରକାରଙ୍କର ଶିଳ୍ପନୀତି ବେଶ୍ ଭଲ । ତଥାପି ମହିଳା ଶିଳ୍ପଦ୍ୟୋଗୀଙ୍କ ପାଇଁ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ସଂସ୍ଥାଗୁଡିକ ନିମନ୍ତେ ଅଧିକ ତାଲିମ ସୁବିଧା ଓ ପ୍ରୋତ୍ସାହନ ରହିଲେ, ମହିଳାମାନେ ସେ ଦିଗରେ ଅଧିକ ଅଗ୍ରସର ହୋଇପାରନ୍ତେ । ଚଳିତ ବଜେଟ୍‌ରେ ଓଡ଼ିଶା ସରକାର ଶିଳ୍ପ ବିଭାଗ ପାଇଁ ଉଭୟ ଯୋଜନା ଓ ଅଣ ଯୋଜନା ବାବଦରେ ୧୭କୋଟି ୪୪ ଲକ୍ଷ ଟଙ୍କାର ବ୍ୟୟବରାଦ କରିଥିବା ବେଳେ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ ବାବଦରେ ୯୫ କୋଟି ୮୪ ଲକ୍ଷ ଟଙ୍କାର ବ୍ୟୟବରାଦ କରିଛନ୍ତି । ସେହିପରି ଦୁଃସାହସିକ ପୁଞ୍ଜି (Venture Capital Fund) ବାବଦରେ ପ୍ରାରମ୍ଭିକ ପୁଞ୍ଜି ହିସାବରେ ୧କୋଟି ୫୦ ଲକ୍ଷ ଟଙ୍କାର ବ୍ୟୟବରାଦ ମଧ୍ୟ କରାଯାଇଛି ଯାହାକି ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗୀମାନଙ୍କୁ ପ୍ରୋତ୍ସାହିତ କରିବ ବୋଲି କହିବାରୁ ଗୀତାରାଣୀ ରାଜ୍ୟ ସରକାରଙ୍କର ଏପରି ପଦକ୍ଷେପକୁ ପ୍ରଶଂସା କରିଥିଲେ ।

ଗୀତାରାଣୀ, ଜଣେ ଶ୍ରେଷ୍ଠ ମହିଳା ଶିଳ୍ପଦ୍ୟୋଗୀ ଭାବେ ନବେ ଦଶକରେ ରାଜ୍ୟପାଳଙ୍କଠାରୁ ସମ୍ମାନ ଓ ପୁରସ୍କାର ଲାଭ କରିବା ସହିତ ଓଡ଼ିଶା କ୍ଷୁଦ୍ର ଓ ମଧ୍ୟମ ଶିଳ୍ପଦ୍ୟୋଗୀ ସଂଘ ଓ ଲାୟନ୍ସ କ୍ଲବ ପ୍ରଭୃତିରୁ ମଧ୍ୟ ବିଭିନ୍ନ ପୁରସ୍କାର ଲାଭ କରିଛନ୍ତି । ମତ୍ସ୍ୟ ପ୍ରକ୍ରିୟାକରଣ କରି ଦେଶ ବିଦେଶକୁ ରପ୍ତାନୀ କରିବା ପାଇଁ ନୂତନ ଶିଳ୍ପସଂସ୍ଥା ପ୍ରତିଷ୍ଠା ଲାଗି ସ୍ୱପ୍ନ ଦେଖୁଥିବା ଏହି ମହିଳା

ଶିଳ୍ପଦ୍ୟୋଗୀ ଜଣକ ଅନେକ ଜନହିତକର ସାମାଜିକ କାର୍ଯ୍ୟରେ ମଧ୍ୟ ନିଜକୁ ସାମିଲ କରିଛନ୍ତି । ରାଜଧାନୀ ଭୁବନେଶ୍ୱରର ଉପକଣ୍ଠ ନହରକଣ୍ଟାଠାରେ ସମାଜର ମୁଖ୍ୟସ୍ରୋତରୁ ଛିନ୍ନ ହୋଇ ଅବହେଳିତ ଅବସ୍ଥାରେ ଥିବା ପିଲାଙ୍କ ପାଠପଢା ପାଇଁ ଯତ୍ନ ନେଉଥିବା ସଂସ୍ଥା, 'ପଲ୍ଲୀ ଉନ୍ନୟନ ସଂସ୍ଥା' ସହ ସେ ୧୯୮୭–୮୮ ମସିହାରୁ ଜଡିତ ଥିଲେ ଏବଂ ଗତ ୨୦୦୮ ମସିହାରୁ ସେ ଏହାର ସଭାନେତ୍ରୀ ଭାବେ ଦାୟିତ୍ୱ ତୁଲାଇ ଆସୁଛନ୍ତି । ଏହି ସଂସ୍ଥାକୁ କାଦମ୍ବିନୀ ଭୂୟାଁ ଆରମ୍ଭ କରିଥିଲେ । ସେଠାରେ ଖେଳଘର ଓ ପ୍ରଥମ ଶ୍ରେଣୀରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ଥିବା ସ୍କୁଲରେ ୨୫୦ ଜଣ ଛାତ୍ରୀଙ୍କ ଶିକ୍ଷାଦାନର ବ୍ୟବସ୍ଥା କରାଯାଇଛି । ସେହିପରି ୮ଜଣ ଅନାଥ କନ୍ୟାକୁ ନେଇ ଏମ୍.ଡି.ବି. ଟ୍ରଷ୍ଟ ଜରିଆରେ ପଳାଶୁଣୀଠାରେ ଗୀତାରାଣୀ ଖୋଲିଛନ୍ତି ଏକ ଆଶ୍ରୟସ୍ଥଳ । ଗତ ଜାନୁଆରୀ ମାସରୁ ମଧ୍ୟ ସେଠାରେ ପିଲାମାନଙ୍କର ଶାରୀରିକ ଓ କଳାତ୍ମକ ବିକାଶ ଲାଗି ସେ ଖୋଲିଛନ୍ତି ଅନ୍ୟ ଏକ କଳାକେନ୍ଦ୍ର ।

ଗୀତାରାଣୀଙ୍କର ଦୁଇ କନ୍ୟା ବିବାହ ପରେ ଚାକିରି କରିଛନ୍ତି ଅନ୍ୟତ୍ର । ଉତ୍ତରାଧିକାରୀ ସୂତ୍ରରେ ତାଙ୍କର ଶିଳ୍ପ ସଂସ୍ଥାର ଦାୟିତ୍ୱ ନେବାକୁ ସେମାନେ ଅନାଗ୍ରହୀ । ତଥାପି ସ୍ୱାମୀଙ୍କ ସହଯୋଗରେ ଗୀତାରାଣୀ ଜଣେ ଶିଳ୍ପଦ୍ୟୋଗୀ ଭାବେ ଆପଣାର ତଥା ରାଜ୍ୟର ଉନ୍ନତି କରିବାକୁ ଆଗ୍ରହୀ । ସେଥିପାଇଁ ସେ ପ୍ରାୟ ୩ଗୋଟି ଶିଳ୍ପଦ୍ୟୋଗୀ ସଂଘ ସମେତ ଲାୟନ୍ସ କ୍ଲବ୍ ସହିତ ସମ୍ପର୍କ ରଖିଛନ୍ତି । ଏପରିକି ଲାୟନ୍ସ ଜିଲ୍ଲା ୩୨୨–ସି୨ର କ୍ୟାବିନେଟ୍ ସେକ୍ରେଟାରୀ ପଦବୀ ସେ ମଣ୍ଡନ କରିପାରିଥିଲେ । ତାଙ୍କର ସଫଳତା ପାଇଁ ତାଙ୍କୁ ଅଭିନନ୍ଦନ ।

ମୁକ୍ତବୃତ୍ତ ସାମ୍ବାଦିକ
ଭିଏ ୨୯/୩, ୟୁନିଟ୍–୨
ଭୁବନେଶ୍ୱର–୭୫୧୦୦୯

# ତୁମ ରୂପର ନିଆରାପଣ

**ଡକ୍ଟର ସରୋଜିନୀ ଷଡ଼ଙ୍ଗୀ**

କେଉଁ ଚିତ୍ରକର ତା'ର
ଅପୂର୍ବ ତୂଳୀ ମୁନରେ
ଆଙ୍କିଦେବ ତୁମ ଚିତ୍ରପଟ ?
କେଉଁ କବି, ଗୀତିକାର
ଭାବ, ଭାଷା, ଛନ୍ଦ ଆଉ
ଶବ୍ଦର ଘନ ରସରେ
ରଚିଦେବ ଲଳିତ ସଂଗୀତ ?
କେଉଁ ସୌମ୍ୟ ଶିଳ୍ପୀଟିଏ
ନିହାଣ ମୁନରେ ତା'ର
ଗଢିଦେବ ତୁମ ମୂର୍ତ୍ତି
ଫୁଟାଇବ ଦେହେ ତୁମ
ଶିଳ୍ପକଳା, ଅପୂର୍ବ ଭାସ୍କର୍ଯ୍ୟ ?
କେଉଁ କାରିଗର କୁହ
ବାଲି ଦେହେ ଗଢିଦେବ
ତୁମ ସୌମ୍ୟ ଉଜ୍ଜ୍ୱଳ ଶ୍ରୀମୁଖ !

ଯେତେ ଯିଏ ମୂର୍ତ୍ତି ଗଢୁ
ଚିତ୍ର ଆଙ୍କୁ
ଲେଖନୀରେ ଲେଖୁଥାଉ
କବିତାର ଶୁଦ୍ଧ ଚଉପଦୀ
ଏସବୁ ନିସ୍ତେଜ ଦିଶେ
ଏସବୁ ମଳିନ ଲାଗେ
ଏସବୁ ତଦନ୍ୟୁନ ପଡିଯାଏ
ତୁମ କଳାକାଂଚନ ଦେହର
ମୁଗ୍ଧ ମାଧୁର୍ଯ୍ୟରେ
ତୁମ ରୂପ ଲାଳିତ୍ୟର
ନିଆରା ପଣରେ ।
ନୀଳାଂଜନ !
ତୁମେ ହିଁ ତୁମ ଉପମା
ତୁମେ ହିଁ ତୁମ ସୁଷମା

ତୁମ ରୂପ ଆଂକିବା
ନାହିଁ ପ୍ରୟୋଜନ
ତୁମେ କରୁଣାର ସିନ୍ଧୁ
ତୁମେ ଭକ୍ତଗଣଙ୍କର
ଅସୀମ ଶ୍ରଦ୍ଧାପଣର
ଅଖଣ୍ଡ ତନ୍ମୟତାର
ସୂକ୍ଷ୍ମ କେନ୍ଦ୍ରବିନ୍ଦୁ !
ତୁମ ନାଲି ଅଧରରୁ
ଚିରଦିନ ଝରୁଥାଉ
ଅଖଣ୍ଡ ଅମୃତ
ତୁମ ଶ୍ରୀଅଂଗରୁ ସଦା
ଚିରକାଳ ଝରୁଥାଉ ଆମ ପାଇଁ
କୃପାର କୈବଲ୍ୟ !!

ଲିଙ୍କରୋଡ
କଟକ–୧୨

# ବିଶ୍ୱ ପର୍ଯ୍ୟଟନ ମାନଚିତ୍ରରେ ଓଡ଼ିଶା

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ପ୍ରାଚୀନ ଯୁଗରୁ ଓଡ଼ିଶା ଭୂଖଣ୍ଡ ଓଡ୍ର, ଓଡ୍ରବିଷୟ, ଉଡ୍ର, କଳିଙ୍ଗ, ଉତ୍‌କଳିଙ୍ଗ, ତୋଷଳ, ଓଡ଼ିଶା ପ୍ରଭୃତି ବହୁ ନାମରେ ପରିଚିତ ଥିଲା । ଉତ୍ତରରେ ପୁଣ୍ୟତୋୟା ଗଙ୍ଗା, ଦକ୍ଷିଣରେ ପାପନାଶିନୀ ଗୋଦାବରୀ, ପୂର୍ବରେ ମହାତୀର୍ଥ ମହୋଦଧି ଏବଂ ପଶ୍ଚିମରେ ଗିରିତୀର୍ଥ ଅମରକଣ୍ଟକ ପ୍ରାଚୀନ ଓଡ଼ିଶାର ପରିସୀମା ରୂପେ ଚିହ୍ନିତ ଥିଲା । ବିଭିନ୍ନ ପରିସ୍ଥିତିରେ ଓଡ଼ିଶା ଭୂଖଣ୍ଡର ଉତ୍ତରାଂଶ, ପଶ୍ଚିମାଂଶ ଓ ଦକ୍ଷିଣାଂଶର ଓଡ଼ିଆ ଭାଷାଭାଷୀ ଭୂଖଣ୍ଡକୁ ବାଦ୍ ଦେଇ ଏକ ଖଣ୍ଡିତ ଓଡ଼ିଶାକୁ ୧୯୩୬ ଅପ୍ରେଲ ୧ ତାରିଖଠାରୁ ଓଡ଼ିଶା ପ୍ରଦେଶ ରୂପେ ପରିଚିହ୍ନିତ ହେଲା । ପ୍ରାଚୀନ ସାହିତ୍ୟ, ଶିଳାଲେଖ, ତାମ୍ରପତ୍ର ତଥା ବିଦେଶୀ ପରିବ୍ରାଜକଙ୍କ ବିବରଣୀରେ ଓଡ଼ିଶା ଏକ ସମୃଦ୍ଧିଶାଳୀ, ସାମରିକ ଶକ୍ତି ସମ୍ପନ୍ନ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ, ଉତ୍କୃଷ୍ଟ କଳାକୌଶଳ ଜ୍ଞାତ ତଥା ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ ରାଜ୍ୟ ରୂପେ ଚିତ୍ରିତ । ପ୍ରାଚୀନ କାଳରୁ ଓଡ଼ିଆମାନେ ସାମୁଦ୍ରିକ ବାଣିଜ୍ୟ ମାଧ୍ୟମରେ ଦୂରଦୂରାନ୍ତ ଦରିଆପାରି ଦେଶମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିଲେ ଏବଂ ସେହିସବୁ ଦେଶରୁ ପରିବ୍ରାଜକମାନେ ଓଡ଼ିଶାର ପ୍ରାକୃତିକ ଶୋଭା ଓ କଳା କାରିଗରୀରେ ଆକୃଷ୍ଟ ହୋଇ ଆଗମନ କରିଥିଲେ । ଏହି ଦୃଷ୍ଟିକୋଣରୁ ପ୍ରମାଣିତ ହୁଏ, ଓଡ଼ିଶା ପ୍ରାଚୀନ କାଳରୁ ବିଶ୍ୱର ପର୍ଯ୍ୟଟନ ମାନଚିତ୍ରରେ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଥିଲା ।

ପ୍ରାକୃତିକ ରୂପ ଲାବଣ୍ୟଭରା ଓଡ଼ିଶାର ନୀଳାଚଳ, ମହେନ୍ଦ୍ରାଚଳ, ସ୍ୱର୍ଣ୍ଣାଚଳ, ବ୍ରହ୍ମାଦ୍ରି, କପିଳାସ, ଗନ୍ଧମାର୍ଦ୍ଦନ, ମାଲ୍ୟଗିରି, ରାମଗିରି, ଖଣ୍ଡଗିରି, ଉଦୟଗିରି, ଲଳିତଗିରି, ସୁରଭଗିରି, ମଣିନାଗ, ସପ୍ତଶଯ୍ୟା ଓ ମେଘାସନ ପ୍ରଭୃତି ଗିରିପର୍ବତ, ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ଚିତ୍ରୋତ୍ପଳା, ବିରୂପା, ପ୍ରାଚୀ, ଋଷିକୁଲ୍ୟା, ବଂଶଧାରା, ସୁବର୍ଣ୍ଣରେଖା ଓ ବୁଢାବଳଙ୍ଗ ପ୍ରଭୃତି ନଦୀ, ଶ୍ରୀକ୍ଷେତ୍ର, ଏକାମ୍ରକ୍ଷେତ୍ର, ଅର୍କକ୍ଷେତ୍ର, ଗଦାକ୍ଷେତ୍ର, କପିଳାସ କ୍ଷେତ୍ର, ନୃସିଂହ କ୍ଷେତ୍ର, ତୁଳସୀ କ୍ଷେତ୍ର, ମହାବିନାୟକ କ୍ଷେତ୍ର ପ୍ରଭୃତି ଦେଶୀବିଦେଶୀ ପର୍ଯ୍ୟଟକଙ୍କର ଆକର୍ଷଣ ଥିଲା । ପର୍ଯ୍ୟଟକମାନେ ଓଡ଼ିଶାର ବିଭିନ୍ନ ସ୍ଥାନରେ ନିର୍ମିତ ମନ୍ଦିରର କାରୁକାର୍ଯ୍ୟ ଓ କଳାସ୍ଥାପତ୍ୟ ଦେଖି ବିସ୍ମିତ ଓ ବିମୋହିତ ହୋଇଯାଉଥିଲେ । ପରିବ୍ରାଜକମାନଙ୍କର ଅନ୍ୟତମ ଆକର୍ଷଣ ଥିଲା ଓଡ଼ିଶାର ଖଣ୍ଡାଧାର, ପ୍ରଧାନପାଟ ଓ ବରେହିପାଣି ଜଳପ୍ରପାତ ତଥା ଅତ୍ରି, ତପ୍ତପାଣି ଓ ଦେଉଳଝରୀ ପ୍ରଭୃତି ଉଷ୍ଣପ୍ରସବଣ । ପ୍ରାଚୀନ ଯୁଗରୁ ଓଡ଼ିଶାର ରତ୍ନଗିରି, ଉଦୟଗିରି, ଲଳିତଗିରି, ତାରାପୁର, ଷୋଳମ୍ପୁର, ବାଣାସୁରନାସୀ, ବ୍ରଜଗିରି, କାଏମା ପ୍ରଭୃତି ସ୍ଥାନରେ ଅନେକ ବୌଦ୍ଧବିହାର ଓ ଅସଂଖ୍ୟ ବୌଦ୍ଧକୀର୍ତ୍ତି ନିର୍ମିତ ହୋଇ ଓଡ଼ିଶା ବିଶ୍ୱ ଦରବାରରେ ବୌଦ୍ଧଭୂଖଣ୍ଡ ରୂପେ ପରିଚିତ ହୋଇଥିଲା । ଫଳରେ ଅଗଣିତ ବୌଦ୍ଧଭିକ୍ଷୁ ଓ ପର୍ଯ୍ୟଟକ ଚୀନ୍, ଜାପାନ, ଥାଇଲାଣ୍ଡ, ବ୍ରହ୍ମଦେଶ ଓ ସିଂହଳ ପ୍ରଭୃତି ଦେଶରୁ ଓଡ଼ିଶାକୁ ଆଗମନ କରିଥିଲେ । ସଂକ୍ଷେପରେ ଉଲ୍ଲେଖ କଲେ ଓଡ଼ିଶାର ପୁରୀ, କୋଣାର୍କ, ଭୁବନେଶ୍ୱର, ଯାଜପୁର ଓ ବୌଦ୍ଧକୀର୍ତ୍ତିରାଜି ଥିଲା ବିଦେଶୀ ପର୍ଯ୍ୟଟକଙ୍କର ମୁଖ୍ୟ ଆକର୍ଷଣ ।

ବିଦେଶୀ ପର୍ଯ୍ୟଟକଙ୍କ ଓଡ଼ିଶାକୁ ଅନାୟାସରେ ଯାତାୟାତ କରିବାର ପ୍ରବେଶ ଦ୍ୱାର ଥିଲା ଅନେକ ପ୍ରାକୃତିକ ବନ୍ଦର । ଏହି ପ୍ରାଚୀନ ପ୍ରାକୃତିକ ବନ୍ଦର ମଧ୍ୟରେ ନନିଗେନ (ପୁରୀ), କଟିକର୍ଦ୍ଦମ (କଟକ), କୋଣଗର (କୋଣାର୍କ), କୋଳାମ୍ବ (ବାଲେଶ୍ୱର), ପୁଲୁର (ଜଳେଶ୍ୱର), ମନଦ (ମହାନଦୀ), ତିଳିସ୍ (ବ୍ରାହ୍ମଣୀ), ଦୋସରମ୍ (ବୈତରଣୀ), ଅଦମସ୍ (ସୁବର୍ଣ୍ଣରେଖା), ପଳୁରା (ଗଞ୍ଜାମ) ଓ ପାଲୁର ପ୍ରଭୃତି ପ୍ରଧାନ । ପର୍ଯ୍ୟଟକମାନେ ଜଳଜାହାଜରେ ଆସି ଏହି ସବୁ ବନ୍ଦରମାନଙ୍କରେ ପହଞ୍ଚିବା ପରେ

ବିଭିନ୍ନ ନଦୀ ପଥରେ ନୌକାଦ୍ୱାରା ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳକୁ ଯାଇ ପାରୁଥିଲେ ତଥା ଆଭ୍ୟନ୍ତରୀଣ ଓଡ଼ିଶାର ପ୍ରାକୃତିକ ଶୋଭାରାଜି ସହିତ ନୌଯାତ୍ରାକୁ ବେଶ ଉପଭୋଗ କରୁଥିଲେ । ବିଭିନ୍ନ କାରୁକାର୍ଯ୍ୟପୂର୍ଣ୍ଣ କୀର୍ତ୍ତିରାଜି ଓ ପ୍ରାକୃତିକ ଶୋଭା ଦର୍ଶନ ପରେ ପର୍ଯ୍ୟଟକମାନେ ପ୍ରତ୍ୟାବର୍ତ୍ତନ କାଳରେ ଓଡ଼ିଶାରେ ମିଳୁଥିବା ହାତୀଦାନ୍ତ, ସୂକ୍ଷ୍ମବସ୍ତ୍ର, ପଟ୍ଟବସ୍ତ୍ର, ସୌଖୀନ ହସ୍ତଶିଳ୍ପ ସାମଗ୍ରୀ, ମୂଲ୍ୟବାନ ରତ୍ନପଥର ଓ ଚାନ୍ଦୁଆ ତଥା ସୁନା ରୂପାର ତାରକସି ଗହଣା ସ୍ୱଦେଶକୁ ନେଉଥିଲେ । ଓଡ଼ିଆଙ୍କ ଆତିଥ୍ୟ ବିଦେଶୀ ପର୍ଯ୍ୟଟକଙ୍କୁ ମୁଗ୍ଧ କରିଥିଲା । ଏହି କାରଣରୁ ପର୍ଯ୍ୟଟକମାନଙ୍କ ଦୃଷ୍ଟିରେ ଓଡ଼ିଶା ଥିଲା 'ପର୍ଯ୍ୟଟକଙ୍କର ଭୂସ୍ୱର୍ଗ' ।

ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ଓଡ଼ିଶାର ନୌବାଣିଜ୍ୟ ବନ୍ଦ ହୋଇଯାଇଥିଲା ତଥା ଇଂରେଜ ସରକାରଙ୍କ କଟକଣା ଯୋଗୁଁ ଓଡ଼ିଶାକୁ ପର୍ଯ୍ୟଟକମାନଙ୍କ ଆଗମନ ପ୍ରାୟ ବନ୍ଦ ହୋଇଥିଲା । ଦେଶ ସ୍ୱାଧୀନ ହେବା ପରେ ଓଡ଼ିଶା ସରକାର ପର୍ଯ୍ୟଟନ ବିଭାଗ ଖୋଲିଲେ ଏବଂ ପର୍ଯ୍ୟଟନକୁ ଗୋଟିଏ ଅର୍ଥକରୀ ଶିଳ୍ପର ମାନ୍ୟତା ପ୍ରଦାନ କଲେ । ଓଡ଼ିଶାର ପର୍ଯ୍ୟଟନ ବିଭାଗ ମଧ୍ୟ ପର୍ଯ୍ୟଟନର ବିକାଶ ଘଟାଇ ହୃତଗୌରବ ଫେରାଇ ଆଣିବାକୁ ପଦକ୍ଷେପ ନେଲେ । ସେଥିନିମିତ୍ତ ଓଡ଼ିଶାର କୋଣ ଅନୁକୋଣରେ ଥିବା ବିଭିନ୍ନ ପର୍ଯ୍ୟଟନସ୍ଥଳୀ ଚିହ୍ନଟ କରାଗଲା ଓ ସେହିସବୁ ସ୍ଥାନକୁ ଯାତାୟାତର ସୁବିଧା କରାଗଲା, ପର୍ଯ୍ୟଟକମାନଙ୍କ ରହିବା ନିମିତ୍ତ ନିବାସସ୍ଥଳୀ ନିର୍ମାଣ କରାଗଲା ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ବିଧିବ୍ୟବସ୍ଥା ଗ୍ରହଣ କରାଗଲା । ବର୍ତ୍ତମାନ ବିଦେଶୀ ପର୍ଯ୍ୟଟକମାନେ ଜଳଜାହାଜ ପରିବର୍ତ୍ତେ ଉଡାଜାହାଜରେ ଆସୁଥିବାରୁ ବିଭିନ୍ନ ଉଡାଜାହାଜ ଉଡାଣ କେନ୍ଦ୍ରରେ ପର୍ଯ୍ୟଟକମାନଙ୍କୁ ସ୍ୱାଗତ କରାଯିବା ନିମିତ୍ତ ବିଧିବ୍ୟବସ୍ଥା ଗ୍ରହଣ କରାଯାଇଛି । ଦିଲ୍ଲୀ, କୋଲକତା, ମୁମ୍ବାଇ ପ୍ରଭୃତି ସହରରେ ପର୍ଯ୍ୟଟକମାନଙ୍କ ଅବଗତ ନିମିତ୍ତ ସୂଚନା କେନ୍ଦ୍ରମାନ ଖୋଲାଯାଇଛି । ପର୍ଯ୍ୟଟକମାନଙ୍କୁ ବିଭିନ୍ନ ସ୍ଥଳୀ ବୁଲାଇବା ନିମିତ୍ତ ଗାଡି ଓ ପଦାଧିକାରୀ ନିଯୁକ୍ତ ହୋଇଛନ୍ତି । ଅଧିକନ୍ତୁ ପ୍ରତ୍ୟେକ ପର୍ଯ୍ୟଟନ ସ୍ଥଳୀର ଇତିହାସ, ପରମ୍ପରା ଓ ମହାତ୍ମ୍ୟ ସମ୍ପର୍କରେ ପର୍ଯ୍ୟଟକମାନଙ୍କୁ ବୁଝାଇବା ନିମିତ୍ତ ମାର୍ଗଦର୍ଶକ ନିଯୁକ୍ତ ହୋଇଛନ୍ତି । ଏହା ସତ୍ୟ ଯେ, ଭାରତର ଅନ୍ୟାନ୍ୟ ସ୍ଥାନ ଅପେକ୍ଷା ଓଡ଼ିଶାରେ ଅଧିକ ପର୍ଯ୍ୟଟନ ସ୍ଥଳୀ ରହିଛି ତଥା ଓଡ଼ିଶାର ବିଭିନ୍ନ ପର୍ଯ୍ୟଟନ ସ୍ଥଳୀ ଦର୍ଶନ କରିବାକୁ ବିଦେଶୀ ପର୍ଯ୍ୟଟକମାନେ ଆଗ୍ରହ ପ୍ରକାଶ କରୁଅଛନ୍ତି ।

ଓଡ଼ିଶାର ପର୍ଯ୍ୟଟନ ବିଭାଗ ବିଭିନ୍ନ ଜିଲ୍ଲାରେ ଅବସ୍ଥିତ ପର୍ଯ୍ୟଟନ ସ୍ଥଳୀ ମଧ୍ୟରୁ ୩୪୦ ଗୋଟି ସ୍ଥଳୀକୁ ପର୍ଯ୍ୟଟନ କେନ୍ଦ୍ର ରୂପେ ଚିହ୍ନଟ କରିଛନ୍ତି । ସେହି ଚିହ୍ନଟ ପର୍ଯ୍ୟଟନ ସ୍ଥଳୀ ମଧ୍ୟରୁ ପୁରୀ, କୋଣାର୍କ, ଚିଲିକା, ଭୁବନେଶ୍ୱର, କପିଳାସ, ଯାଜପୁର, ଟିକରପଡା, ଖଣ୍ଡାଧାର, ପ୍ରଧାନପାଟ, ନୃସିଂହନାଥ, ହରିଶଙ୍କର, ଚାନ୍ଦିପୁର, ପଞ୍ଚଲିଙ୍ଗେଶ୍ୱର, ରାଇବଣିଆ, ରେମୁଣା, ଆରଡି, ଚାନ୍ଦବାଲି, ଧାମରା, ଧବଳେଶ୍ୱର, ଭଟ୍ଟାରିକା, ସିଂହନାଥ, ନିଆଳୀ, ଯୋରନ୍ଦା, ସପ୍ତଶଯ୍ୟା, ମହେନ୍ଦ୍ରଗିରି, ଚନ୍ଦ୍ରଗିରି, ପାରାଦୀପ, ଲଳିତଗିରି, ରତ୍ନଗିରି, ଉଦୟଗିରି, ଯାଜପୁର, ଛତିଆ, ମହାବିନାୟକ, କାଏମା, ରାଧାନଗର, ବିକ୍ରମଖୋଲ, ଦାରିଙ୍ଗିବାଡି, ଦେଓଗାଁ କୁଶଳେଶ୍ୱର, ଘଟଗାଁ, ଗୋନାସିକା, ଅତ୍ରି, ଭୁବନେଶ୍ୱର, ଧଉଳି, ଖଣ୍ଡଗିରି, ଉଦୟଗିରି, ନନ୍ଦନକାନନ, ହୀରାପୁର, କେନ୍ଦୁଲି, ଗୁପ୍ତେଶ୍ୱର, ନିନ୍ଦପୁର, ଖିଚିଙ୍ଗ, ସିମିଳିପାଳ, ଓଡଗାଁ, କଣ୍ଟିଲୋ, ଗନ୍ଧରାଡି, ଅସ୍ତରଙ୍ଗ, ଚୌରାଶୀ, କୁରମ, ମାଣିକପାଟଣା, ପିପିଲି, ରଘୁରାଜପୁର, ସାକ୍ଷୀଗୋପାଳ, ହୀରାକୁଦ, ହୁମା, ବିନିକା, ସୋନପୁର, ଉଷାକୋଠୀ ଓ ବେଦବ୍ୟାସ ପ୍ରଭୃତି ପ୍ରଧାନ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ପର୍ଯ୍ୟଟନ ସ୍ଥଳୀ ରହିଛି । ଅଦ୍ୟାବଧି ସମସ୍ତ ପର୍ଯ୍ୟଟନ ସ୍ଥଳୀକୁ ରାସ୍ତା ନିର୍ମାଣ ହୋଇ ପାରିନାହିଁ । କେତେଗୋଟି ମୁଖ୍ୟ ସ୍ଥାନ ବ୍ୟତୀତ ଅନ୍ୟାନ୍ୟ ସ୍ଥାନରେ ପର୍ଯ୍ୟଟକମାନଙ୍କ ରହିବା ନିମିତ୍ତ ବିଶ୍ରାମସ୍ଥଳୀ ନିର୍ମାଣ ହୋଇ ପାରିନାହିଁ । ଅର୍ଥାଭାବରୁ ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧା କରାଯାଇ ପାରି ନଥିଲେ ହେଁ ସେହି ସ୍ଥାନଗୁଡିକର ପ୍ରସିଦ୍ଧି ରହିଛି । ଦୁଃଖର ବିଷୟ, ଯାଜପୁର ଜିଲ୍ଲାର ଜାରକା ନିକଟସ୍ଥ ତାରାପୁର ପାହାଡରେ ବିଶ୍ୱର ପ୍ରଥମ ବୌଦ୍ଧସ୍ତୂପ ଅର୍ଥାତ୍ ଭିକ୍ଷୁ ତପସୁଙ୍କ ଦ୍ୱାରା ନିର୍ମିତ କେଶସ୍ତୂପ ରହିଥିଲେ ହେଁ ଅନେକ ଏ ବିଷୟରେ ଜାଣନ୍ତି ନାହିଁ । ନିକଟ ଅତୀତରେ ଲକ୍ଷ୍ନୌରୁ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ଉପନିର୍ଦ୍ଦେଶକ ଡକ୍ଟର ଜୟପ୍ରକାଶ ଆସି ଏହାର ଶିଳାଲେଖ ପାଠ କରିଥିଲେ । କିନ୍ତୁ ପ୍ରଚାର ପ୍ରସାର ଅଭାବରୁ ବିଶ୍ୱର ଏହି ପ୍ରଥମ ବୌଦ୍ଧସ୍ତୂପ ଲୋକଲୋଚନ ଅଗୋଚରରେ । ୨୦୧୩ ମସିହାରେ ଏହି ଲେଖକ ପତରାଜପୁରରେ ଅନୁଷ୍ଠିତ ଆନ୍ତର୍ଜାତୀୟ ବୌଦ୍ଧ ସମ୍ମିଳନୀରେ ବୌଦ୍ଧତନ୍ତ୍ର ଉପରେ ବକ୍ତବ୍ୟ ପ୍ରଦାନ କରିବାକୁ ଯାଇଥିଲା । ଏହି ଅବସରରେ କେତେକ ବୌଦ୍ଧ ଭିକ୍ଷୁ ଓ ଗବେଷକଙ୍କ ସହିତ ଆଲୋଚନାକ୍ରମରେ ଜାଣିବାକୁ ପାଇଲା ଯେ ଚୀନ୍ ଦେଶରେ କେତେକ ବୌଦ୍ଧସ୍ଥଳୀକୁ ସ୍ଥଳପଥ ଓ ଆକାଶ ପଥରେ ସଂଯୋଗ କରାଯାଇଛି । ତଦନୁରୂପ ରତ୍ନଗିରି,

ଉଦୟଗିରି, ଲଳିତଗିରି ପ୍ରଭୃତି ବୌଦ୍ଧପୀଠ ସହିତ ବିଶ୍ୱର ପ୍ରଥମ ବୌଦ୍ଧସ୍ତୂପ ଥିବା ତାରାପୁର ପାହାଡକୁ ଯଦି ସ୍ଥଳପଥ ଓ ଆକାଶ ପଥରେ ସଂଯୁକ୍ତ କରାଯାଇ ପାରନ୍ତା ତେବେ ଏହି ପର୍ଯ୍ୟଟନସ୍ଥଳୀଟି ବିଶ୍ୱର ଶ୍ରେଷ୍ଠ ଆକର୍ଷଣୀୟ ସ୍ଥଳୀରେ ପରିଣତ ହୋଇପାରନ୍ତା ।

ଓଡ଼ିଶାର ଅନେକ ପ୍ରାଚୀନସ୍ଥଳୀ ଅଦ୍ୟାବଧି ପର୍ଯ୍ୟଟନ ସ୍ଥଳୀ ରୂପେ ଉଦ୍‌ଘୋଷିତ ହୋଇପାରିନାହିଁ । ତନ୍ମଧ୍ୟରେ ବାଲେଶ୍ୱର ଜିଲ୍ଲାର ଷଷ୍ଠ ଶତାବ୍ଦୀର ଜୟରାମପୁର ବୌଦ୍ଧବିହାର, ଭଦ୍ରଖ ଜିଲ୍ଲାର ଅଷ୍ଟମ ଶତାବ୍ଦୀର ଖୋଳମ୍ପୁର ମହାବିହାର ଓ ସପ୍ତମ ଶତାବ୍ଦୀର ଅନ୍ନପୁର ସପ୍ତମାତୃକା ପୀଠ, ଯାଜପୁର ଜିଲ୍ଲାର ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀର କେଶସ୍ତୂପ, ଢେଙ୍କାନାଳ ଜିଲ୍ଲାର ମାର୍ଥାପୁର ଶାସନରେ ଥିବା ପ୍ରାଚୀନ ବାଲୁଙ୍କେଶ୍ୱର ପୀଠ, ପରଜଙ୍ଗ ଥାନାର ଦ୍ୱିତୀୟ କପିଳାସ ପଥରଗଡ, ଗଁଦିଆ ଥାନାର ଦ୍ୱାଦଶ ଶତାବ୍ଦୀର ନାଗନାଥେଶ୍ୱର ପୀଠ, ନୟାଗଡର ଜଗନ୍ନାଥ ମନ୍ଦିର, ପ୍ରାଚୀନ ଭୀମନଗରୀର ରାମଚଣ୍ଡୀ ପୀଠ, ଜଗତ୍‌ସିଂହପୁର ଜିଲ୍ଲାର ସପ୍ତମ ଶତାବ୍ଦୀର କୁଣ୍ଡେଶ୍ୱର ସପ୍ତମାତୃକା ପୀଠ, କାମାକ୍ଷା ନଗର ସନ୍ନିକଟ ରାମେଶ୍ୱର ଓ କପିଳେଶ୍ୱର ପୀଠ, ଢେଙ୍କାନାଳ ଜିଲ୍ଲାର ଅଶ୍ୱଖୋଲା ଓ ଗଣେଶ ଖୋଲା ପ୍ରଭୃତି ଅନ୍ୟତମ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ପର୍ଯ୍ୟଟନ ସ୍ଥଳୀ ରହିଛି । ଓଡ଼ିଶାର ସମସ୍ତ ପର୍ଯ୍ୟଟନ ସ୍ଥଳୀର ପରିଚୟ ଓ ଯାତାୟାତ ସମ୍ପର୍କୀୟ ପୁସ୍ତିକା ଅଦ୍ୟାବଧି ପ୍ରକାଶିତ ହୋଇନାହିଁ, ଯେଉଁ ପୁସ୍ତିକାରେ ସକଳ ତଥ୍ୟ, ରାସ୍ତା ଓ ବିବରଣ ଉପଲବ୍ଧ ହୋଇପାରିବ । ତେଣୁ ଉଦ୍‌ଘୋଷିତ ହୋଇଥିବା ସ୍ଥଳୀ ସମ୍ପର୍କରେ ମଧ୍ୟ ଅନେକ ବ୍ୟକ୍ତି ଜାଣି ପାରୁ ନାହାନ୍ତି । ଓଡ଼ିଶାର କେଉଁ ପର୍ଯ୍ୟଟନ ସ୍ଥଳୀ କେଉଁଥି ପାଇଁ ପ୍ରସିଦ୍ଧ ସେ ବିଷୟରେ ମଧ୍ୟ ଅନ୍ତର୍ଜାତୀୟ ସ୍ତରରେ ପ୍ରଚାର ପ୍ରସାରର ଆବଶ୍ୟକତା ରହିଛି । ବିଦେଶରୁ ଓଡ଼ିଶାକୁ ଆସୁଥିବା ପର୍ଯ୍ୟଟକମାନେ କେବଳ ପୁରୀ, କୋଣାର୍କ, ଭୁବନେଶ୍ୱର ତଥା ଉପକୂଳ ଅଞ୍ଚଳରେ ଥିବା ବୌଦ୍ଧକୀର୍ତ୍ତି ଦର୍ଶନ କରୁଛନ୍ତି ଏବଂ ଆଭ୍ୟନ୍ତରୀଣ ଅଞ୍ଚଳରେ ଥିବା ପର୍ଯ୍ୟଟନ ସ୍ଥଳୀ ଦର୍ଶନ କରିବାରୁ ବଂଚିତ ହେଉଛନ୍ତି । ସେମାନେ ଓଡ଼ିଶାର ସକଳ ପର୍ଯ୍ୟଟନ ସ୍ଥଳୀ ଦର୍ଶନ କରିବାର ବିଧିବ୍ୟବସ୍ଥା କରାଯାଇ ପାରିଲେ ଓଡ଼ିଶାର ପର୍ଯ୍ୟଟନ ଶିଳ୍ପ ସୁଦୃଢ ହୋଇପାରିବ ।

ଓଡ଼ିଶାର ପର୍ଯ୍ୟଟନ ବିଭାଗ ଦେଶୀବିଦେଶୀ ପର୍ଯ୍ୟଟକଙ୍କ ନିମିତ୍ତ ବହୁବିଧ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି । ପର୍ଯ୍ୟଟନମାନଙ୍କୁ ଆକର୍ଷଣ କରିବା ନିମିତ୍ତ ଓଡ଼ିଶା ଭିତରେ କୋଣାର୍କ ମହୋତ୍ସବ, ମୁକ୍ତେଶ୍ୱର ମହୋତ୍ସବ, ରାଜାରାଣୀ ସଂଗୀତ ଉତ୍ସବ ଆୟୋଜନ କରିବା ସହିତ ବିଭିନ୍ନ ଘରୋଇ ଅନୁଷ୍ଠାନକୁ ଅନୁଦାନ ପ୍ରଦାନ ପୂର୍ବକ ବ୍ୟାପକ ମହୋତ୍ସବର ବ୍ୟବସ୍ଥା ପର୍ଯ୍ୟଟନ ବିଭାଗର ଆନୁକୂଲ୍ୟରେ ହୋଇ ପାରିଛି । ପର୍ଯ୍ୟଟନ ବିଭାଗ ଦ୍ୱାରା ଓଡ଼ିଶା ବାହାରେ କୋଲକତା, ଦିଲ୍ଲୀ, ଚେନାଇ, ମୁମ୍ବାଇ ପ୍ରଭୃତି ସ୍ଥାନରେ ଏବଂ ଭାରତ ବାହାରେ ସିଙ୍ଗାପୁର ପ୍ରଭୃତି ସ୍ଥାନରେ ମହୋତ୍ସବ ଅନୁଷ୍ଠିତ ହୋଇ ବିଶେଷ ଲୋକାକୃତି ଲାଭ କରିଛି । ରଥଯାତ୍ରା ଓ ବିଭିନ୍ନ ମହୋତ୍ସବ ସମୟରେ ପର୍ଯ୍ୟଟକମାନଙ୍କ ନିମିତ୍ତ ସ୍ୱତନ୍ତ୍ରବସର ବ୍ୟବସ୍ଥା କରି ପର୍ଯ୍ୟଟନ ବିଭାଗ ପ୍ରଶଂସିତ ହୋଇଛି । ଅଧିକରୁ ଅଧିକ କାର୍ଯ୍ୟକ୍ରମ କରିବାକୁ ପର୍ଯ୍ୟଟନ ବିଭାଗ ଯୋଜନାୟିତ ପ୍ରଚେଷ୍ଟା ଜାରି ରଖିଛି ।

ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶା ବିଶ୍ୱର ଏକ ପ୍ରମୁଖ ପର୍ଯ୍ୟଟନକ୍ଷେତ୍ର ସ୍ୱରୂପରେ ସୁବିଖ୍ୟାତ । ଓଡ଼ିଶାର ଶିଳ୍ପ, କଳା, ସ୍ଥାପତ୍ୟ, ସଙ୍ଗୀତ ଓ ନୃତ୍ୟ ଦୀର୍ଘକାଳଧରି ବିଦେଶୀ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିପାରିଛି । ବିଶେଷତଃ ସ୍ୱାଧୀନତା ପରେ ପର୍ଯ୍ୟଟନ ବିଭାଗ ଆନୁକୂଲ୍ୟରେ ବିବିଧ କାର୍ଯ୍ୟକ୍ରମ, ମହୋତ୍ସବ, ସମ୍ମିଳନୀ ପ୍ରଭୃତି ଅନୁଷ୍ଠିତ ହୋଇ ବିଶ୍ୱ ଦରବାରରେ ଓଡ଼ିଶାର ପର୍ଯ୍ୟଟନ ଏକ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ ତଥା ବିଶ୍ୱ ପର୍ଯ୍ୟଟନ ମାନଚିତ୍ରରେ ଓଡ଼ିଶା ପର୍ଯ୍ୟଟକମାନଙ୍କ ଭୂସ୍ୱର୍ଗ ସ୍ୱରୂପରେ ପରିଚିହ୍ନିତ ।

ଶ୍ରୀରାମ ମଣ୍ଡପ ସରଣୀ
ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ



# କଳା ଓ ସଂସ୍କୃତିର ଅନନ୍ୟ ସମ୍ଭାର ଭୁବନେଶ୍ୱର

ଶାଶ୍ୱତୀ ସୌମ୍ୟା ମିଶ୍ର

ଓଡିଶାର ପ୍ରସିଦ୍ଧ ପଞ୍ଚପୀଠମାନଙ୍କ ମଧ୍ୟରୁ ଶୈବପୀଠ ଭୁବନେଶ୍ୱର ବିଶ୍ୱବିଦିତ । କପିଳ ସଂହିତାରେ ଉଲ୍ଲେଖ କରାଯାଇଛି ଅତୀତରେ ଏଠାରେ ଏକ ମୁକ୍ତିପ୍ରଦ ଆମ୍ରବୃକ୍ଷ ଆତ୍ମପ୍ରକାଶ କରିଥିଲା । ତାହାରି ସ୍ମୃତି ସ୍ୱରୂପ ଏହା ଏକାମ୍ର କ୍ଷେତ୍ର ଭାବରେ ପରିଚିତ । ମହାଦେବ ଶିବଶଙ୍କରଙ୍କର ଏକାନ୍ତ ପ୍ରିୟ ସ୍ଥାନ ହୋଇଥିବାରୁ ଏହା ଏକ ବିଖ୍ୟାତ ଶୈବପୀଠ ଭାବରେ ପ୍ରସିଦ୍ଧି ଲାଭ କରିଛି । ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ ଯେଉଁଭଳି ଭାବରେ ନାରାୟଣ ଶ୍ରୀକ୍ଷେତ୍ର ପରିତ୍ୟାଗ ନ କରିବା ପାଇଁ ତ୍ରିବାର ସତ୍ୟ କରିଛନ୍ତି, ସେହିପରି ସ୍ୱୟଂ ମହାଦେବ ଏହି ଏକାମ୍ର କ୍ଷେତ୍ରକୁ ତ୍ୟାଗ ନ କରିବା ପାଇଁ ସ୍ପଷ୍ଟ କରିଛନ୍ତି । ସେ କହିଛନ୍ତି–

ସତ୍ୟଂ ସତ୍ୟଂ ବଦମ୍ୟନ୍ତ୍ର ତିଷ୍ଠାମି ମଧୁସୂଦନ ।<br>
ବାରାଣାସୀଂ ପରିତ୍ୟଜ୍ୟଚାନ୍ୟକ୍ଷେତ୍ରାଣୀ ମାଧବ ॥<br>
ଏକାମ୍ର ବିପିନେ ସ୍ଥାପ୍ୟେ ତବ ସନ୍ନିହିତୋ ପ୍ରଭୋ ।<br>
ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ନ ଯାମି ଚ କୁତ୍ରଚିଦ୍ ॥

ସ୍ୱର୍ଣ୍ଣାଦ୍ରି ମହୋଦୟ ପୁସ୍ତକରେ ଉଲ୍ଲେଖ ଅଛି ଯେ ପ୍ରାଚୀନ ଯୁଗରେ ପଶ୍ଚିମରେ ଖଣ୍ଡାଚଳ (ଖଣ୍ଡଗିରି) ଓ ପୂର୍ବରେ ବହିରଙ୍ଗେଶ୍ୱର (ଧଉଳିଗିରି)ର ମଧ୍ୟବର୍ତ୍ତୀ ଭୂଖଣ୍ଡ ଭୁବନେଶ୍ୱର ଭାବେ ପରିଚିତ ଥିଲା । ଏହାର ଦକ୍ଷିଣ ପଶ୍ଚିମରେ ପ୍ରବାହିତା ବୈତରଣୀ, ବ୍ରାହ୍ମଣୀ, ମହାନଦୀ ଓ ତା'ର ଶାଖା କାଠଯୋଡି ପାର୍ଶ୍ୱବର୍ତ୍ତୀ ଭୂଖଣ୍ଡକୁ ଉର୍ବର ଓ ଉତ୍ପାଦନକ୍ଷମ କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏଠାରେ ପ୍ରବାହିତା ଗଙ୍ଗୁଆ ଓ ଦୟାନଦୀ ଏବଂ ଗିରିମାଳାମାନେ ଏହାର ପରିବେଶକୁ ଅତ୍ୟନ୍ତ ଚିତ୍ତାକର୍ଷକ କରି ତୋଳି ଥିଲେ ।

ଭୁବନେଶ୍ୱରର କଳା ସ୍ଥାପତ୍ୟର ନୈପୁଣତାକୁ କିଛି ଜୈନଗ୍ରନ୍ଥ ଅତି ସୁନ୍ଦର ଭାବରେ ବ୍ୟାଖ୍ୟା କରିଛନ୍ତି । ତନ୍ମଧ୍ୟରୁ ଜୈନଶାସ୍ତ୍ର, ହରିବଂଶ ପୁରାଣ, ହରିଭଦ୍ରୀୟ ଭିତ୍ତି, ଆବଶ୍ୟକ ସୂତ୍ର ଗ୍ରନ୍ଥର ନାମ ଉଲ୍ଲେଖଯୋଗ୍ୟ । ଉପରୋକ୍ତ ଗ୍ରନ୍ଥମାନଙ୍କ ଅନୁଯାୟୀ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ମହାବୀର ଜୀନ କଳିଙ୍ଗକୁ ଆଗମନ କରି କୁମାରୀ ପର୍ବତ (ବର୍ତ୍ତମାନର ଭୁବନେଶ୍ୱରର ଉଦୟଗିରି) ଉପରେ ଧର୍ମବାଣୀ ପ୍ରଦାନ କରିଥିଲେ । ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ମଗଧର ନନ୍ଦବଂଶର ରାଜତ୍ୱ ଭୁବନେଶ୍ୱରର ଇତିହାସକୁ ଅଧିକ ମୁଖରିତ କରିଥିଲା । ସେତେବେଳର ମଗଧର ନନ୍ଦରାଜା କଳିଙ୍ଗ ଜୟର ସ୍ମାରକୀ ସ୍ୱରୂପ ଓଡିଆ ଜାତିର ସର୍ବୋଚ୍ଚ ଓ ସର୍ବପ୍ରଧାନ ଉପାସନାର ଆଧାର ଜୀନାସନକୁ ମଗଧକୁ ସ୍ଥାନାନ୍ତରିତ କରିଥିଲେ । ପରେ ଅବଶ୍ୟ ଏହା କଳିଙ୍ଗ ସମ୍ରାଟ ମହାମେଘବାହାନ ଐର ଖାରବେଳଙ୍କ ଦ୍ୱାରା ଓଡିଶାକୁ ପୁନଶ୍ଚ ଫେରି ଆସିଥିଲା । ଏହି ତଥ୍ୟ ଭୁବନେଶ୍ୱରସ୍ଥିତ ହାତୀଗୁମ୍ଫାରେ ଉଲ୍ଲେଖ କରାଯାଇଛି । ନନ୍ଦବଂଶ ପରେ ମଗଧର ମୌର୍ଯ୍ୟବଂଶ ଉତ୍କଳ ତଥା ଭୁବନେଶ୍ୱର ଇତିହାସକୁ ରଦ୍ଧିମନ୍ତ କରିଥିଲା । ଖ୍ରୀଷ୍ଟପୂର୍ବ ୩୦୦ରୁ ୩୫୦ ମଧ୍ୟରେ ମୌର୍ଯ୍ୟବଂଶର ପ୍ରଖ୍ୟାତ ନରପତି ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଦ୍ୱାରା ଭୁବନେଶ୍ୱରଠାରେ ଶିଶୁପାଳଗଡର ନିର୍ମାଣ କରାଯାଇଥିଲା । ବର୍ତ୍ତମାନ ଏହା ଆମ ଓଡିଶାର ଐତିହ୍ୟ ଏବଂ ସାଂସ୍କୃତିକ ଅଭିବୃଦ୍ଧିର ମୂକସାକ୍ଷୀ ପାଲଟିଛି ।

ମୌର୍ଯ୍ୟବଂଶର ତୃତୀୟ ନରପତି ଅଶୋକଙ୍କ ରାଜତ୍ୱ ଉତ୍କଳର ଭିତ୍ତିଭୂମିକୁ ଦୋହଲାଇ ଦେଇଥିଲା । ସେତେବେଳେ ଉତ୍କଳର ରାଜଧାନୀ ଥିଲା ତୋଷାଳୀ, ଯାହା ଭୁବନେଶ୍ୱରଠାରୁ ୧୦କିଲୋମିଟର ଦକ୍ଷିଣକୁ ଦୟାନଦୀ କୂଳରେ ଅବସ୍ଥିତ ଥିଲା । ବର୍ତ୍ତମାନ ସେହି ତୋଷାଳୀ ଅପଭ୍ରଂଶ ହୋଇ ଧଉଳି ନାମ ଧାରଣ କରିଛି । ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଦରବାରକୁ ଆସିଥିବା ଗ୍ରୀକ୍‌ଦୂତ ମେଘାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ ଯେ ପାର୍ଥଳୀ କଳିଙ୍ଗର

ରାଜଧାନୀ ଥିଲା ଏବଂ ଏହାକୁ ତୋଷାଳୀ ବା ଧଉଳି ସହିତ ଚିହ୍ନିତ କରାଯାଇ ପାରେ । ଅଶୋକଙ୍କ ଶିଳାଲେଖରୁ ଉତ୍କଳର ଉତ୍କର୍ଷତାର ପ୍ରମାଣ ମିଳେ । ସୁତରାଂ କଳିଙ୍ଗରେ ପ୍ରଥମ କଳାର ନିଦର୍ଶନ ଭୁବନେଶ୍ୱରରେ ଦେଖାଯାଏ । ତାହା ହେଉଛି ଅଶୋକଙ୍କ ସମୟରେ ନିର୍ମିତ ଏକ ହାତୀ । ଏହା ଧଉଳିଠାରେ ଅବସ୍ଥିତ । ଧଉଳିରେ ମଧ୍ୟ ବୌଦ୍ଧଧର୍ମର ଲୋକପ୍ରିୟତାର ସବିଶେଷ ତଥ୍ୟ ମିଳେ ।

ଅଶୋକଙ୍କ ପରେ ଭୁବନେଶ୍ୱର ଇତିହାସରେ ଅନ୍ୟ ଏକ ଉଜ୍ଜ୍ୱଳମୟ ଅଧ୍ୟାୟର ଅୟମାରମ୍ଭ ହୋଇଥିଲା । ତାହା ଚେଦୀ ବଂଶର ତୃତୀୟ ସମ୍ରାଟ କଳିଙ୍ଗାଧିପତି ମହାମେଘବାହାନ ଐର ଖାରବେଳଙ୍କ ନେତୃତ୍ୱରେ ସମ୍ଭବପର ହୋଇଥିଲା । ଏହା ପ୍ରାୟ ଖ୍ରୀଷ୍ଟପୂର୍ବ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀର ଘଟଣା । ଭୁବନେଶ୍ୱରରେ ଅବସ୍ଥିତ ଉଦୟଗିରି ଓ ଖଣ୍ଡଗିରିର କୀର୍ତ୍ତିସ୍ତମ୍ଭ, ହାତୀଗୁମ୍ଫାର ଖୋଦିତ ଶିଳାଳିପି ସହିତ ଅନ୍ୟାନ୍ୟ ପ୍ରସ୍ତର ଗୁମ୍ଫା ତାଙ୍କ ଜୀବନୀ ଏବଂ କୃତିତ୍ୱ ସହିତ ଜୈନଧର୍ମର ପ୍ରଚାର ଏବଂ ପ୍ରସାରର ତଥ୍ୟ ପ୍ରଦାନ କରନ୍ତି । ଖାରବେଳଙ୍କ ରାଜଧାନୀ ଥିଲା କଳିଙ୍ଗ ନଗରୀ । ପ୍ରତ୍ନତାତ୍ତ୍ୱିକ ପ୍ରମାଣରୁ ଅନୁମାନ କରାଯାଏ କଳିଙ୍ଗନଗରୀ ଶିଶୁପାଳ ଗଡର ଅପରନାମ ।

ଖାରବେଳଙ୍କ ସାମ୍ରାଜ୍ୟର ପତନଠାରୁ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଭୁବନେଶ୍ୱରରେ ଆନ୍ଧ୍ର ସାତବଂଶୀୟ ନରପତିଗଣ ରାଜୁତି କରୁଥିବା ଜଣାଯାଏ । ଶିଶୁପାଳଗଡର ଧ୍ୱଂସାବଶେଷରୁ ପ୍ରାପ୍ତ ଆନ୍ଧ୍ର ସାତବାହାନ ମୁଦ୍ରା ଏହି ତଥ୍ୟର ସତ୍ୟତା ପ୍ରତିପାଦନ କରେ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଭୁବନେଶ୍ୱରରେ ଶୈବ ଧର୍ମର ପ୍ରତିଷ୍ଠା ହେବା ସହ ବୌଦ୍ଧ ଏବଂ ଜୈନ ଧର୍ମର ପ୍ରସାର ମଳିନ ପଡିଯାଇଥିଲା । ଏକାମ୍ର ପୁରାଣରେ ବ୍ୟାଖ୍ୟା କରାଯାଇଛି କି ଗଙ୍ଗୁଆ ନଦୀ କୂଳରେ ଦାନବ ଏବଂ ଦେବତାଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା ଏବଂ ଏଥିରେ ଦେବତାମାନେ ବିଜୟୀ ହୋଇଥିଲେ । ସମ୍ଭବତଃ ଏହା ଶୈବ ଏବଂ ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ହୋଇଥିଲା । ଏକାମ୍ରପୁରାଣ ଏକ ଶୈବଗ୍ରନ୍ଥ ହୋଇଥିବାରୁ ବୌଦ୍ଧମାନଙ୍କୁ ଦାନବ ଏବଂ ଶୈବମାନଙ୍କୁ ଦେବତା ରୂପେ ଅଭିହିତ କରିଥାଇପାରେ । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଗୌଡର ମହାପରାକ୍ରମୀ ଶାସକ ଶଶାଙ୍କ ଓଡିଶାର ଶାସନଭାର ସମ୍ଭାଳି ଥିଲେ । ଏକାମ୍ର ପୁରାଣରେ ବର୍ଣ୍ଣିତ ଅଛି ତାଙ୍କ ସମୟରୁ ଭୁବନେଶ୍ୱରକୁ ଏକାମ୍ରକ୍ଷେତ୍ର ନାମରେ ଅଭିହିତ କରାଯାଇଛି । ଏହାର ଏକ ସୁନ୍ଦର ଉପାଖ୍ୟାନ ଅଛି । ଭୁବନେଶ୍ୱରର କୌଣସି ଏକ ଆମ୍ରବୃକ୍ଷ ତଳେ ଏକ ଲିଙ୍ଗ ଉପାସିତ ହେଉଥିଲେ । ଶଶାଙ୍କ ସେଠାରେ ଏକ ମନ୍ଦିର ନିର୍ମାଣ କରାଇଥିଲେ । ତାହା ତ୍ରିଭୁବନେଶ୍ୱର ମନ୍ଦିର ଭାବରେ ପରିଚିତ । ସେହି ଆମ୍ରବୃକ୍ଷ ଏବଂ ତ୍ରିଭୁବନେଶ୍ୱର ମନ୍ଦିରର ସ୍ମାରକୀ ସ୍ୱରୂପ ଭୁବନେଶ୍ୱରକୁ ଏକାମ୍ର କ୍ଷେତ୍ର ଭାବେ ନାମିତ କରାଗଲା ।

ଏହା ପରେ ପ୍ରାୟତଃ ୭୩୬ ଖ୍ରୀଷ୍ଟାବ୍ଦରୁ ୯୨୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦୀର୍ଘ ୨୦୦ବର୍ଷ ଧରି ଭୌମକର ବଂଶ ଓଡିଶାକୁ ଶାସନ କରିଥିଲେ । ସେହି ସମୟରେ ଶକ୍ତି ଉପାସନାର ବହୁଳତା ଦୃଷ୍ଟିଗୋଚର ହୁଏ । ଭୁବନେଶ୍ୱରର ବୋଇତାଳ ମନ୍ଦିର, ବିନ୍ଦୁସାଗର ସନ୍ନିକଟ ମୋହିନୀ ମନ୍ଦିର, ଗଙ୍ଗୁଆ ନଦୀ କୂଳର ଭୁଆସୁଣୀ ମନ୍ଦିର ଏହାର ଜ୍ୱଳନ୍ତ ନିଦର୍ଶନ । ଧଉଳି ପାହାଡ ଉପରେ ନିର୍ମିତ ବହିରଙ୍ଗେଶ୍ୱର ମନ୍ଦିର ମଧ୍ୟ ଭୌମକର ବଂଶର ଏକ ବିରଳ କୀର୍ତ୍ତି ।

ପ୍ରାୟତଃ ଖ୍ରୀ. ୮୮୨ରୁ ଖ୍ରୀ. ୧୧୧୦ ପର୍ଯ୍ୟନ୍ତ ଓଡିଶାରେ ସୋମବଂଶୀମାନଙ୍କର ଅଭ୍ୟୁଦୟ ହୋଇଥିଲା । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର (ପ୍ରଥମ ଯଯାତି), ଇନ୍ଦ୍ରେଶ୍ୱର ବା ରାଜାରାଣୀ ମନ୍ଦିର, ୧୮୦ଫୁଟ୍ ଉଚ୍ଚତା ବିଶିଷ୍ଟ ଲିଙ୍ଗରାଜ (ଦ୍ୱିତୀୟ ଯଯାତି), କେଦାରେଶ୍ୱର, ସୁରେଶ୍ୱର, ସିଦ୍ଧେଶ୍ୱର ଆଦି ମନ୍ଦିର ଏହି ସୋମବଂଶୀମାନେ ନିର୍ମାଣ କରିଥିଲେ । ସୋମବଂଶୀ ରାଜାଙ୍କ ଦ୍ୱାରା ନିର୍ମିତ ବିନ୍ଦୁସାଗର ମଧ୍ୟ ଏହି ସମୟର ଉତ୍କୃଷ୍ଟ ସୃଜନଶୀଳତାର ପରିଚୟ ଦିଏ ।

ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶର ଅଭ୍ୟୁଦୟ ଭୁବନେଶ୍ୱରର ସାଂସ୍କୃତିକ ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରିଥିଲା । ଏହି ବଂଶର ରାଜା ମହାରାଜା ଚୋଡଗଙ୍ଗଦେବ ଭୁବନେଶ୍ୱର ଓ ତା'ର ସୀମାନ୍ତବର୍ତ୍ତୀ ଅଞ୍ଚଳରେ ବହୁ ଅକ୍ଷୟ କୀର୍ତ୍ତିମାନ ସ୍ଥାପନ କରିଥିଲେ । ନିଜ ରାଣୀ ଲକ୍ଷ୍ମୀଦେବୀଙ୍କ ନାମରେ ଏଠାରେ ଏକ ପୁଷ୍କରିଣୀ ଖନନ କରିଥିଲେ, ଯାହାକି ଏବେ ଲକ୍ଷ୍ମୀସାଗର ନାମରେ ସୁପରିଚିତ । ଏହି ବଂଶର ସ୍ୱପ୍ନେଶ୍ୱର ଦେବ ୧୧୯୫ଖ୍ରୀଷ୍ଟାବ୍ଦରେ ଭୁବନେଶ୍ୱରଠାରେ ମେଘେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଗଙ୍ଗବଂଶର ରାଜା ତୃତୀୟ ଅନଙ୍ଗଭୀମ ଦେବଙ୍କ କନ୍ୟା ଚନ୍ଦ୍ରିକା ଦେବୀ ୧୨୭୮ ଖ୍ରୀଷ୍ଟାବ୍ଦରେ ବିନ୍ଦୁସାଗରର ପୂର୍ବ ଦିଗରେ ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣ କରିଥିଲେ । ଭାସ୍କରେଶ୍ୱର ମନ୍ଦିର, ମିତ୍ରେଶ୍ୱର ମନ୍ଦିର, ବରୁଣେଶ୍ୱର ମନ୍ଦିର ଆଦି ଗଙ୍ଗବଂଶର ଅନନ୍ୟ କଳା ନୈପୁଣ୍ୟତାର ପରିଚୟ ଦିଅନ୍ତି । ଭାସ୍କରେଶ୍ୱର ମନ୍ଦିରରେ ୯ଫୁଟ୍ ଉଚ୍ଚ ଏବଂ ୧୨ଫୁଟ ୫ଇଞ୍ଚ୍ ବ୍ୟାସାର୍ଦ୍ଧ ବିଶିଷ୍ଟ ଏକ ବିଶାଳ

ଲିଙ୍ଗ ପୂଜା ପାଉଛନ୍ତି । ଏହା ଅଶୋକ ସ୍ତମ୍ଭର ଅଂଶବିଶେଷ ହୋଇଥିବା ଅନୁମାନ କରାଯାଏ । ଏତଦ୍‌ବ୍ୟତୀତ ଲିଙ୍ଗରାଜ ମନ୍ଦିରର ନାଟ ମନ୍ଦିର, ଭୋଗମଣ୍ଡପ ଓ ବୃଷଭସ୍ତମ୍ଭ ଗଙ୍ଗ ରାଜତ୍ୱରେ ନିର୍ମିତ ହୋଇଥିଲା । ଏଣୁ ଭୁବନେଶ୍ୱରକୁ ମନ୍ଦିରମାଳିନୀ ଆଖ୍ୟା ଦେବାରେ ଗଙ୍ଗବଂଶ ପ୍ରମୁଖ ଭୂମିକା ଗ୍ରହଣ କରିଛି ।

ଗଙ୍ଗବଂଶ ପରେ ୧୪୩୫ ଖ୍ରୀଷ୍ଟାବ୍ଦରେ ସୂର୍ଯ୍ୟବଂଶୀମାନେ ଓଡିଶା ତଥା ଭୁବନେଶ୍ୱରର ଶାସନ ଭାର ଗ୍ରହଣ କରିଥିଲେ । ଏହି ବଂଶର ଗଜପତି କପିଳେନ୍ଦ୍ର ଦେବ (ଖ୍ରୀ ୧୪୩୫-୧୪୨୭)ଙ୍କ ସମୟରେ ଗଙ୍ଗୁଆ ନଦୀ କୂଳବର୍ତ୍ତୀ କପିଳେଶ୍ୱର ମନ୍ଦିର ଏବଂ ପାପନାଶିନୀ ମନ୍ଦିର ଭୁବନେଶ୍ୱରର ନୈସର୍ଗିକ ଭାବଧାରାକୁ ପରିପୁଷ୍ଟ କରିଛନ୍ତି ।

ସୂର୍ଯ୍ୟବଂଶ ପରେ ପ୍ରାୟତଃ ୧୫୭୦ରୁ ରାମଚନ୍ଦ୍ରଦେବ (ପ୍ରକୃତନାମ ରମାଇ ରାଉତରାୟ ମହାପାତ୍ର) ବରୁଣେଇ ପାଦ ଦେଶରେ ଏକ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା କରିଥିଲେ । ପରେ ତାହା ଖୋର୍ଦ୍ଧା ରାଜ୍ୟ ଭାବରେ ପରିଚିତ ହୋଇଥିଲା । ସେ ସୂର୍ଯ୍ୟବଂଶୀୟ ଗଜପତି ବୋଲି ଦାବି କରୁଥିଲେ ମଧ୍ୟ ପ୍ରକୃତରେ ସେ ସୂର୍ଯ୍ୟବଂଶୀ ନ ଥିଲେ । ତାଙ୍କ ରାଜବଂଶ ୧୫୭୧ରୁ ପ୍ରାୟତଃ ୨୩୯ ବର୍ଷ ଧରି ରାଜତ୍ୱ କରିଥିଲେ । ପରେ ୧୮୦୭ ମସିହାରେ ଇଂରେଜ ପ୍ରଶାସକଙ୍କ ଆଦେଶକ୍ରମେ ପୁରୀକୁ ସ୍ଥାନାନ୍ତରିତ ହୋଇଥିଲେ । ସେହିବର୍ଷ ଖୋର୍ଦ୍ଧାରେ ଗଜପତି ସାମ୍ରାଜ୍ୟର ଯବନିକା ପଡି ପୁରୀରେ ତାହା ଆରମ୍ଭ ହୋଇଥିଲା । ଏହାପରେ ଇଂରେଜମାନେ ୧୮୦୩ରୁ ୧୯୪୭ ମସିହା ଅଗଷ୍ଟ ୧୫ ପର୍ଯ୍ୟନ୍ତ ଭୁବନେଶ୍ୱରରେ ରାଜତ୍ୱ କରିଥିଲେ । ଏହାପରେ ଦେଶ ତଥା ରାଜ୍ୟ ସ୍ୱାଧୀନ ଲାଭ କରିବା ପରେ ୧୯୪୮ମସିହାରେ ଓଡିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ଅଦମ୍ୟ ପ୍ରଚେଷ୍ଟା ବଳରେ ଭୁବନେଶ୍ୱର ଓଡିଶାର ରାଜଧାନୀଭାବେ ଘୋଷିତ ହୋଇ ନିଜର ଭିତ୍ତିଭୂମି ପ୍ରତିଷ୍ଠା କରିଥିଲା ।

ଭୁବନେଶ୍ୱର ଯେ କେବଳ ଦେବତାମାନଙ୍କ ଆବାସସ୍ଥଳୀ ତାହା ନୁହେଁ ଏଠାରେ ନାଗ ତଥା ଯକ୍ଷ ଉପାସନା ମଧ୍ୟ ପରିଲକ୍ଷିତ ହୁଏ । ଏକାମ୍ର କ୍ଷେତ୍ର ପୁସ୍ତକରେ ଡକ୍ଟର ତୀର୍ଥାନନ୍ଦ ମିଶ୍ର ଉଲ୍ଲେଖ କରିଛନ୍ତି କି ଏକାମ୍ର କ୍ଷେତ୍ର ତଥା କୀର୍ତ୍ତିବାସ କ୍ଷେତ୍ର ଭାବେ ଅତୀତରେ ପ୍ରତିଷ୍ଠା ଅର୍ଜନ କରିଥିବା ଭୁବନେଶ୍ୱରରେ ଅନେକ ଯକ୍ଷ ଓ ନାଗମୂର୍ତ୍ତି ଦେଖାଯାଏ । ଭୁବନେଶ୍ୱରର ଅନତି ଦୂରରେ ଅବସ୍ଥିତ ଶିଶୁପାଳ ଗଡରେ ଅନେକ ଅର୍ଦ୍ଧପ୍ରୋଥିତ ନାଗ ଓ ଯକ୍ଷ ମୂର୍ତ୍ତିମାନ ଦେଖାଯାଆନ୍ତି । ଭୁବନେଶ୍ୱରଠାରୁ ପ୍ରାୟ ତିନି କିଲୋମିଟର ଦୂରରେ ଅବସ୍ଥାପିତ ଥିବା ସୁନ୍ଦରପଦାଠାରେ ଗ୍ରାମଦେବତା ରୂପେ ପୂଜିତ ହେଉଥିବା କେତେକ ମୂର୍ତ୍ତି ନାଗମୂର୍ତ୍ତି ବୋଲି ଜଣାପଡନ୍ତି । ସେମାନଙ୍କ ମସ୍ତକରେ ପାଞ୍ଚଗୋଟି ଫଣା ବିଶିଷ୍ଟ ଛତ୍ର ପରିଶୋଭିତ ଥିବାର ଦେଖାଯାଏ । ସାଧାରଣତଃ ଫଣା ଭେଦରୁ ନାଗ ଓ ନାଗୀମାନଙ୍କ ମଧ୍ୟରେ ପାର୍ଥକ୍ୟ କେବଳ ବାରିହୁଏ । ନାଗମାନଙ୍କର ଏକାଧିକ ଫଣା ଥିବାବେଳେ ନାଗୀର କେବଳ ଗୋଟିଏ ମାତ୍ର ଫଣା ଥାଏ । କପିଳ ପ୍ରସାଦ ଗ୍ରାମରେ ଅତୀତରେ ବହୁଳ ଭାବରେ ପ୍ରଚଳିତ ନାଗ ଉପାସନାର ସୂଚନା ଦିଏ । ଭୁବନେଶ୍ୱରର ଅଦୂରବର୍ତ୍ତୀ ଅଞ୍ଚଳମାନଙ୍କରେ ଅନେକ ଯକ୍ଷମୂର୍ତ୍ତି ବିଦ୍ୟମାନ ଥିବାର ଜଣାଯାଏ । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଖଣ୍ଡଗିରି ନିକଟବର୍ତ୍ତୀ ଡୁମୁଡୁମା ନାମକ ଏକ ଗ୍ରାମରୁ ପାଞ୍ଚଫୁଟ ସାତଇଞ୍ଚ ଉଚ୍ଚତା ବିଶିଷ୍ଟ ଏକ ଯକ୍ଷ ମୂର୍ତ୍ତି ପାଇଥିବାର ଜଣାଯାଏ ।

ସର୍ବଧର୍ମ ସମନ୍ୱୟର କ୍ଷେତ୍ର ଏ ଏକାମ୍ର କ୍ଷେତ୍ର । ବୌଦ୍ଧ, ଜୈନ, ନାଗ, ଯକ୍ଷ, ଶୈବ, ଶାକ୍ତ, ବୈଷ୍ଣବ ସମସ୍ତ ଧର୍ମାବଲମ୍ବୀଙ୍କର ଆବାସସ୍ଥଳୀ ଏ ଭୁବନେଶ୍ୱର । ନିଜର ଭକ୍ତିଭାବପୂର୍ଣ୍ଣ ପରିବେଶ ଏବଂ ପରିସୀମା ପାଇଁ ସର୍ବଦା ବିଶ୍ୱରେ ଚର୍ଚ୍ଚିତ ଏହାର ପ୍ରତ୍ୟେକଟି କୋଣ ଅନୁକୋଣ । ପ୍ରାଚୀନ ପରମ୍ପରାକୁ ଜାବୁଡି ଧରି ଆଧୁନିକତାର ସିଡି ଚଢିବାରେ ଲାଗିଛି ଭୁବନେଶ୍ୱର । ରାଜ୍ୟ ସରକାରଙ୍କର ଅକୁଣ୍ଠ ସହଯୋଗ ବଳରେ ଆଧୁନିକ ଶିକ୍ଷା ପଦ୍ଧତି ଏବଂ କର୍ମ ଯୋଗାଣରେ ଆଜି ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି ଆଧୁନିକ ଭୁବନେଶ୍ୱର । ଏହା କେବଳ ନିଜର ପାରଦର୍ଶିତା ଯେ ତାହା ନୁହେଁ ସରକାରଙ୍କର ଆପ୍ରାଣ ଉଦ୍ୟମ ବଳରେ ଆଜି ଚାକଚକ୍ୟର ଚରମ ସୀମାରେ ପହଞ୍ଚି ପାରିଛି ରାଜଧାନୀ ଭୁବନେଶ୍ୱର ।

ଦରଖା ପାଟଣା, ପୋ-କଲ୍ୟାଣୀ ନଗର,
ଜିଲ୍ଲା- କଟକ, ପିନ୍ - ୭୫୩୦୧୩



# କେନ୍ଦ୍ରାପଡ଼ା ଜିଲ୍ଲାର ବିଭିନ୍ନ ପର୍ଯ୍ୟଟନ ସ୍ଥଳୀ

ଅଧ୍ୟାପିକା ସୌଦାମିନୀ ବେହେରା

ଏ ସୁନ୍ଦର ପୃଥିବୀ ହେଉଛି ଭଗବାନଙ୍କ କମନୀୟ ସୃଷ୍ଟି । ଜୀବଜଗତର ସ୍ୱଚ୍ଛଳ ଜୀବନଲୀଳା ମଧ୍ୟରେ ଧରିତ୍ରୀ ମାତାର ପ୍ରାଣଶକ୍ତି ସ୍ଫୁରିତ ହୁଏ । ଭାରତ ମାତାର କୋଳ ମଣ୍ଡନ କରିଛି କେତେ ନଦନଦୀ, ବୃକ୍ଷଲତା, ପଶୁପକ୍ଷୀ, ପାହାଡ଼ ପର୍ବତ । ତା' ଅବୟବରେ ଉତ୍କୃଷ୍ଟ କଳାର ଦେଶ ଉତ୍କଳ ମୁଣ୍ଡ ଟେକିଛି ନିଜର ସ୍ୱତନ୍ତ୍ର ପରମ୍ପରା, ଐତିହ୍ୟ, ସଂସ୍କୃତି, କଳା, ସ୍ଥାପତ୍ୟ, ସୂକ୍ଷ୍ମ କାରୁକାର୍ଯ୍ୟ, ପର୍ଯ୍ୟଟନସ୍ଥଳୀ ଇତ୍ୟାଦିକୁ ନେଇ ।

ପର୍ଯ୍ୟଟନ ଶବ୍ଦଟି ଅତି ପ୍ରାଚୀନ । ଅଜଣା ବସ୍ତୁକୁ ଜାଣିବାରେ ମଣିଷର ପ୍ରବୃତ୍ତି ପୁରାତନ ଅଟେ । ଜାଣିବାକୁ ତା' ମନରେ କୌତୁହଳ ଜନ୍ମେ । ଏହି ଆଗ୍ରହ ଓ ଉତ୍ସାହ ହିଁ ମଣିଷକୁ ସାରା ପୃଥିବୀ ପ୍ରଦକ୍ଷିଣ କରିବା ପାଇଁ ଉତ୍ସାହିତ କରିଥାଏ । ସୌନ୍ଦର୍ଯ୍ୟ ଲିପ୍ସୁ ମଣିଷ ବିଭିନ୍ନ ଦର୍ଶନୀୟ ତଥା ପର୍ଯ୍ୟଟନସ୍ଥଳୀ ବୁଲିବାରେ ଅଧିକ ବ୍ୟାକୁଳ ହୋଇଥାଏ । ତାକୁ ଉପଭୋଗ କରି ସେ ବିଭୋର ହୋଇପଡ଼େ । କବିବର ରାଧାନାଥ ରାୟ ଲେଖିଛନ୍ତି–

ସୁନ୍ଦର ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।

ପ୍ରତ୍ୟେକ ଦର୍ଶନୀୟ ସ୍ଥାନ ସୌନ୍ଦର୍ଯ୍ୟ କଳାରେ ଭୂଷିତ । ତେଣୁ ମନରେ ଉତ୍ସୁକତା ଦେଖାଯାଏ । ଆମ ଦେଶର ପର୍ଯ୍ୟଟନ ବିଷୟରେ ପ୍ରାଚ୍ୟ ଶାସ୍ତ୍ରବିଦ୍ କୁହନ୍ତି, ଭାରତର କିଛି ସ୍ଥାନ ସ୍ୱର୍ଗର ନନ୍ଦନକାନନର ଭ୍ରମ ସୃଷ୍ଟି କରେ । ଏହାର ଭାସ୍କର୍ଯ୍ୟ, କଳା, ସ୍ଥାପତ୍ୟ, ସଙ୍ଗୀତ, ନୃତ୍ୟ, ଜଙ୍ଗଲ, ବେଳାଭୂମି, ପଶୁସମ୍ପଦ, ଐତିହାସିକ ସ୍ମାରକୀ ଦର୍ଶକଙ୍କୁ ହତଚକିତ କରିଦିଏ ।

ହୁଏନ୍‌ସାଂ ଓ ଫାହିୟାନ୍ ଓଡ଼ିଶା ଭ୍ରମଣରେ ଆସିଥିଲେ । ସେମାନେ ତାଙ୍କ ପୁସ୍ତକରେ ଲେଖିଛନ୍ତି ଏଠାରେ ପ୍ରକୃତି ସତରେ ଉଦାର, ବିସ୍ମୟ ଓ ସୌନ୍ଦର୍ଯ୍ୟଭରା କୁହୁକ ନଗରୀ । ଓଡ଼ିଶାରେ ଅନେକ ସୌନ୍ଦର୍ଯ୍ୟଭରା ପର୍ଯ୍ୟଟନସ୍ଥଳୀ ରହିଅଛି । ପୁରୀର ଶ୍ରୀକ୍ଷେତ୍ରର ମହିମା, ଅର୍କକ୍ଷେତ୍ର କୋଣାର୍କ ମନ୍ଦିରର ସୂକ୍ଷ୍ମ କାରୁକାର୍ଯ୍ୟର ବିସ୍ମୟ, ଚିଲିକାର ମନମୁଗ୍ଧକର ହ୍ରଦର ଚିତ୍ର, ପୁରୀ ବେଳାଭୂମିରେ ସମୁଦ୍ରର ତାଣ୍ଡବରେ ଜୁଆର ଭଟ୍ଟା, ମୟୂରଭଞ୍ଜର ଶିମିଳିପାଳ ଅଭୟାରଣ୍ୟ, କେନ୍ଦ୍ରାପଡ଼ାର ଭିତର କନିକା ଓ ଗହୀରମଥାର ପର୍ଯ୍ୟଟନସ୍ଥଳୀ ଦର୍ଶକମାନଙ୍କୁ ଆକର୍ଷିତ କରିଥାଏ । ଦେଶ ବିଦେଶରୁ ପର୍ଯ୍ୟଟକ ଛୁଟି ଆସନ୍ତି ଓଡ଼ିଶା ଭୂଇଁକୁ । ମୁଖ୍ୟତଃ ବିଶ୍ୱ ପର୍ଯ୍ୟଟନ ମାନଚିତ୍ରରେ ଓଡ଼ିଶା ଧାର୍ମିକ ପର୍ଯ୍ୟଟନ ପାଇଁ ପ୍ରସିଦ୍ଧି ଲାଭ କରିଅଛି । ଓଡ଼ିଶାର ଅନେକ ଦର୍ଶନୀୟ ସ୍ଥାନ ସୌନ୍ଦର୍ଯ୍ୟରେ ଭରପୂର ହୋଇଥିଲେ ମଧ୍ୟ ଏହା ଲୋକଲୋଚନକୁ ଆସିପାରି ନାହିଁ । ସତରେ ସେ ଅଞ୍ଚଳଗୁଡ଼ିକୁ ଥରେ ଦେଖିଦେଲେ ବିଶ୍ୱାସ କରିହେବ ନାହିଁ ଯେ, ଓଡ଼ିଶାରେ ମଧ୍ୟ ଏମିତି ଭୂସ୍ୱର୍ଗର ଆବିର୍ଭାବ ଘଟିଛି । ସତରେ ପ୍ରକୃତିର ସୌନ୍ଦର୍ଯ୍ୟ ଆମ ଓଡ଼ିଶା ମାଟିରେ ଖୁନ୍ଦିହୋଇ ରହିଅଛି ।

ଓଡ଼ିଶାର ୩୦ଟି ଜିଲ୍ଲା ମଧ୍ୟରୁ କେନ୍ଦ୍ରାପଡ଼ା ଜିଲ୍ଲାର ଗୁରୁତ୍ୱ ଓଡ଼ିଶା ମାନଚିତ୍ରରେ ରହିଅଛି । ଏହାର ସବୁ ଅଞ୍ଚଳରେ ଘନ ବନାନୀର ଶୋଭାଠାରୁ ଆରମ୍ଭ କରି ବନ୍ୟପ୍ରାଣୀ ପରିବେଶ ଓ ଧାର୍ମିକ ପର୍ଯ୍ୟଟନ ପାଇଁ ପ୍ରସିଦ୍ଧି ଲାଭ କରିଅଛି । କେନ୍ଦ୍ରାପଡ଼ା ସ୍ୱତନ୍ତ୍ର ଜିଲ୍ଲାର ମାନ୍ୟତା ପାଏ ୧୯୯୩ ମସିହାରେ । ଏହାର କ୍ଷେତ୍ରଫଳ ୨୬୪୪ ବର୍ଗ କିଲୋମିଟର । କେନ୍ଦ୍ରାପଡ଼ା ଜିଲ୍ଲା ଅନେକ ନଦୀର ସମାହାର । ସତେକି, ସେମାନେ ହାତ ଛନ୍ଦାଛନ୍ଦି ହୋଇ ବହିବାରେ ଲାଗିଛନ୍ତି । ବନ୍ୟପ୍ରାଣୀ ପରିବେଶ ପର୍ଯ୍ୟଟନ ବା 'ଇକୋ ଟୁରିଜିମ୍'ର ମାନ୍ୟତା ପାଇବା ସଂଗେ ସଂଗେ ଧର୍ମକ୍ଷେତ୍ର 'ତୁଳସୀ କ୍ଷେତ୍ର' ନାମରେ କେନ୍ଦ୍ରାପଡ଼ା ସାରା ଓଡ଼ିଶାରେ

ବିଖ୍ୟାତ ଅଟେ । ପ୍ରକୃତିର ନୈସର୍ଗିକ ସୁଷମା, ମହାନଦୀ ମୁହାଣଠୁଁ ଧାମରା ପର୍ଯ୍ୟନ୍ତ ୪୮ କିଲୋମିଟର ବ୍ୟାପୀ ଅକ୍ଷତ, ସାମୁଦ୍ରିକ ବେଳାଭୂମି ଏସିଆ ମହାଦେଶର ଦ୍ୱିତୀୟ ବୃହତ୍ତମ ଲୁଣା ଜଙ୍ଗଲ ଏ ଜିଲ୍ଲାର ଅନନ୍ୟ ଐଶ୍ୱର୍ଯ୍ୟ ।

ପୁରୀକୁ ମୁଖ୍ୟ ପର୍ଯ୍ୟଟନସ୍ଥଳୀ କୁହାଯାଉଥିବା ସ୍ଥଳେ କେନ୍ଦ୍ରାପଡ଼ାର ମଧ୍ୟ ସେପରି ପର୍ଯ୍ୟଟନ କ୍ଷେତ୍ରରେ ଯୋଗ୍ୟତା ତଥା ସାମର୍ଥ୍ୟ ରହିଛି । ବଳଦେବଜୀଉ କେନ୍ଦ୍ରାପଡ଼ାର ଆରାଧ୍ୟ ଦେବତା ଅଟନ୍ତି । ଜନମୁଖରୁ ନିସୃତ ହୁଏ ଯେ, ବଳଦେବ ଲଳିତଗିରିର କନ୍ଦରାସୁରକୁ ନିଧନ କରି ତା'ର ଏକମାତ୍ର କନ୍ୟା ତୁଳସୀର ପାଣିଗ୍ରହଣ କରିଥିଲେ। ସେବେଠାରୁ ଏ ସ୍ଥାନର ନାମ କେନ୍ଦ୍ରାପଡ଼ା ଓ ଏହାର ପରିସର ତୁଳସୀ କ୍ଷେତ୍ର ନାମରେ ପରିଚିତ । ପୁରୀ ରଥଯାତ୍ରା ଭଳି କେନ୍ଦ୍ରାପଡ଼ା ରଥଯାତ୍ରା ପ୍ରସିଦ୍ଧ ଓ ପୁରାତନ ।

ରାଜନଗର ବ୍ଲକ ଅନ୍ତର୍ଗତ ଭିତରକନିକାର ବନ୍ୟପ୍ରାଣୀ ଅଭୟାରଣ୍ୟ ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଭିତରକନିକା ପ୍ରକୃତିପ୍ରେମୀ, କବି, ଲେଖକ, ପର୍ଯ୍ୟଟକମାନଙ୍କୁ ଏହି ସବୁଜ ବନାନୀ, ଶାନ୍ତ ବାତାବରଣ ଓ ପରିବେଶ ଆକର୍ଷିତ କରିଥାଏ । ଏହି ସୌନ୍ଦର୍ଯ୍ୟ ବିମଣ୍ଡିତା ସୁନ୍ଦରୀ ଭିତରକନିକାର ଅପୂର୍ବ ରୂପ ଲାବଣ୍ୟରେ ଯେ ଏତେ ସୁନ୍ଦରତା ରହିଛି ନ ଦେଖିଲେ ଜଣେ ପର୍ଯ୍ୟଟକ ବିଶ୍ୱାସ କରିପାରିବ ନାହିଁ । ଏହାର ରୂପ ଅବର୍ଣ୍ଣନୀୟ ଓ ଅତୁଳନୀୟ ।

ବ୍ରାହ୍ମଣୀ, ବୈତରଣୀ ନଦୀ ମୁହାଣରେ ସୃଷ୍ଟି ହୋଇଥିବା ତ୍ରିକୋଣଭୂମି ଅଞ୍ଚଳରେ ୫୭୨ ବର୍ଗ କିଲୋମିଟର କ୍ଷେତ୍ରଫଳ ବିଶିଷ୍ଟ ଏହି ଅରଣ୍ୟ ୧୯୭୫ ମସିହାରୁ ଅଭୟାରଣ୍ୟର ମାନ୍ୟତା ପାଇ ଆସୁଛି । ପଶ୍ଚିମବଙ୍ଗର ସୁନ୍ଦରବନ ପରେ ଭିତରକନିକା ହେଉଛି ଭାରତର ଦ୍ୱିତୀୟ ବୃହତ୍ତମ ଲୁଣାଜଙ୍ଗଲ । ଏହାର ହେନ୍ତାଳ ବଣରେ ୯୨ ପ୍ରକାର ଗଛ ଦେଖିବାକୁ ମିଳେ । ଯାହା ଅନ୍ୟ ଜଙ୍ଗଲରେ ବିରଳ । ସୁନ୍ଦରୀ, ରାଇ, ବନୀ, କେରୁଆଁ, ଶିଶୁମାର, ଚୁରଣ୍ଡ, ପିତାମରି, ଗୁଆଁ, ହରକଚ ଇତ୍ୟାଦି ଉଦ୍ଭିଦ ଏହି ଜଙ୍ଗଲର ମୁଖ୍ୟ ଆକର୍ଷଣ । ଭିତରକନିକାର ମୁଖ୍ୟ ଆକର୍ଷଣ ହେଉଛି ବଉଳା କୁମ୍ଭୀର । ୧୫୦୦ରୁ ଊର୍ଦ୍ଧ୍ୱ ବଉଳା କୁମ୍ଭୀରମାନଙ୍କର ସମାହାର ଦେଖିବାକୁ ମିଳେ । ପୃଥିବୀର ବୃହତ୍ତମ କୁମ୍ଭୀର ସହିତ ଧଳା କୁମ୍ଭୀର ଏ ସ୍ଥାନର ଆଉ ଏକ ଆକର୍ଷଣ । ନଦୀ ପଠାରେ ପେଟେଇ ହୋଇ କୁମ୍ଭୀର ଶୋଇ ଥିବାର ଦୃଶ୍ୟ ପର୍ଯ୍ୟଟକମାନଙ୍କ ମନମୁଗ୍ଧ କରିଦିଏ । ଭିତରକନିକାର ଡାଙ୍ଗମାଳଠାରେ ବିଶ୍ୱପ୍ରସିଦ୍ଧ କୁମ୍ଭୀର ପ୍ରଜନନ କେନ୍ଦ୍ର ଅବସ୍ଥିତ । ଏଠାରେ ଜଙ୍ଗଲ ଓ ନଦୀ ଶଯ୍ୟାମାନଙ୍କରୁ ଅଣ୍ଡା ସଂଗ୍ରହ କରାଯାଇ ଗବେଷଣା କରାଯାଏ । ବୈଜ୍ଞାନିକ ପଦ୍ଧତି ଜରିଆରେ ଅଣ୍ଡାମାନଙ୍କରୁ ଛୁଆ ଫୁଟାଯାଏ । ସେମାନଙ୍କର ଲାଳନପାଳନ ପରେ ଛୁଆମାନେ ଟିକିଏ ବଡ଼ହେଲେ ଭିତରକନିକାର ନଦୀମାନଙ୍କରେ କୁମ୍ଭୀର ଛୁଆମାନଙ୍କୁ ଛାଡ଼ି ଦିଆଯାଏ ।

କୁମ୍ଭୀରମାନଙ୍କ ଛଡ଼ା ଏହି ଅଭୟାରଣ୍ୟରେ ୧୭୦ ପ୍ରକାର ପ୍ରଜାତିର ପକ୍ଷୀ ଦେଖିବାକୁ ମିଳେ । ଚିଲିକା ହ୍ରଦର ନଳବଣ ପରେ ଏହା ଆମ ରାଜ୍ୟର ଦ୍ୱିତୀୟ ପକ୍ଷୀ ମିଳନ ସ୍ଥଳ । ଭିତରକନିକାର ଏହି ପକ୍ଷୀ ଅଭୟାରଣ୍ୟକୁ 'ବଗଗହନ' କୁହାଯାଏ । ଭିତରକନିକାର ଅଭୟାରଣ୍ୟ ବହୁଳ ଭାବରେ ସମ୍ବର, ହରିଣ, ବାରାହା, ଝିଙ୍କ, କଟାସ, ମାଙ୍କଡ଼, ବିଲୁଆ, ଗୋଧି, ଅଜଗର, ଅହିରାଜ, ବୋଡ଼ା, ରଣା, ଚିତି ଆଦି ଜୀବଜନ୍ତୁ ଓ ସରୀସୃପମାନେ ନିର୍ଭୟରେ ବିଚରଣ କରନ୍ତି ।

ଧାମରା ମୁହାଣଠାରୁ ମହାନଦୀ ମୁହାଣ ପର୍ଯ୍ୟନ୍ତ ପ୍ରାୟ ୭୫ କିଲୋମିଟର ଅଞ୍ଚଳକୁ ୧୯୯୭ ସେପ୍ଟେମ୍ବର ୨୭ରେ ସାମୁଦ୍ରିକ ଅଭୟାରଣ୍ୟ ଭାବରେ ଘୋଷଣା କରାଯାଇଛି । ୧୯୭୪ ମସିହାରେ ବିପୁଳ ସଂଖ୍ୟାରେ କଇଁଛ ମେକ୍ସିକୋ ଓ ଅଷ୍ଟ୍ରେଲିଆ ଉପକୂଳକୁ ଛାଡ଼ି ଯେତେବେଳେ ଗହୀରମଥାକୁ ଅଣ୍ଡାଦେବା ସ୍ଥଳୀ ରୂପେ ବାଛି ନେଲେ ସେତେବେଳେ ପ୍ରାଣୀ ବିଶେଷଜ୍ଞ ଓ ବୈଜ୍ଞାନିକମାନଙ୍କର ଦୃଷ୍ଟି ଏହି ଗହୀରମଥା ଉପରେ ପଡ଼ିଲା । ୧୯୭୪ ମସିହାରେ କଇଁଛକୁ ସୁରକ୍ଷିତ ଜୀବ ଭାବରେ ତାଲିକାଭୁକ୍ତ କରାଗଲା । ୧୯୭୨ ବନ୍ୟପ୍ରାଣୀ ସଂରକ୍ଷଣ ଆଇନ୍ ଅନୁଯାୟୀ ମହାବଳ ଓ ଅଲିଭ୍‌ରିଡ଼୍‌ଲେ କଇଁଛକୁ ନ ମାରିବା ପାଇଁ କଠୋର ଦଣ୍ଡର ବ୍ୟବସ୍ଥା କରାଗଲା । କଇଁଛ ବିଶ୍ୱର ଏକ ଅମୂଲ୍ୟ ପ୍ରାଣୀ । ଏହାର ସୁରକ୍ଷା ପାଇଁ ୧୯୯୪ ମସିହାରେ ଗହୀରମଥାଠାରେ ସମୁଦ୍ର ଆଡ଼କୁ ୨୦ କିଲୋମିଟର ଦୂରତା ମଧ୍ୟରେ ମାଛଧରା ନିଷିଦ୍ଧ କରାଗଲା । କାରଣ ମାଛଧରା ଟ୍ରଲର ଶବ୍ଦ ଓ ଆଘାତରେ କଇଁଛମାନଙ୍କର ଜୀବନ ଚାଲିଯାଏ । ତେଣୁ ଗହୀରମଥା ପରି ଅଲିଭ୍‌ରିଡ଼୍‌ଲେ କଇଁଛ ଅଭୟାରଣ୍ୟରେ କଇଁଛମାନେ ସୁରକ୍ଷିତ ରହିଥାଆନ୍ତି । ଦେଶବିଦେଶରୁ ଲକ୍ଷଲକ୍ଷ ପର୍ଯ୍ୟଟକ ଏଠାକୁ ଆସି ସମୁଦ୍ରର ବେଳାଭୂମିରେ କଇଁଛମାନଙ୍କର ମନୋହର ପରିବେଶର ଦୃଶ୍ୟକୁ ଉପଭୋଗ କରିଥାନ୍ତି । ବିଶ୍ୱରେ ଆଠ ପ୍ରକାରର କଇଁଛ ଦେଖା ଯାଆନ୍ତି ଯଥା– ଲେଦର ବ୍ୟାକ୍, ବ୍ଲାକ ଟର୍ଟଲ୍, ଗ୍ରୀନ୍ ଟର୍ଟଲ୍, ଅଲିଭ୍‌ରିଡ଼୍‌ଲେ, କେମ୍ପସରିଡ଼୍‌ଲେ,

ହକ୍ସବିଲ୍, ଅଷ୍ଟ୍ରେଲିଆନ୍ ଲଗର ହେଡ୍ ଇତ୍ୟାଦି । ଆମ ଓଡ଼ିଶାରେ ଚାରି ପ୍ରକାର କଇଁଛ ଦେଖାଯାଆନ୍ତି ।

ଭାରତ ସରକାର ପର୍ଯ୍ୟଟନକୁ ଲୋକପ୍ରିୟ କରିବାକୁ ଓ ବିଦେଶୀ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବାକୁ ୭ଟି ଦିଗ ଉପରେ ଧ୍ୟାନ ଦେଇଛନ୍ତି । ଯଥା – ଅତିଥି ଦେବ ଭବ, ସ୍ୱାଗତ, ସଂରଚନା, ସୁରକ୍ଷା, ସହଯୋଗ, ସୂଚନା, ସୁବିଧା ଓ ସଫେଇ ।

ଏହି ଜିଲ୍ଲାର ଆଉ ଏକ ପର୍ଯ୍ୟଟନସ୍ଥଳୀ ହେଲା ହୁକିଟୋଲା ଦ୍ୱୀପ । ଏଠାରେ ରହିଛି ସୁନ୍ଦର ପ୍ରାକୃତିକ ପରିବେଶ ଓ ପୁରୁଣା ଅଟ୍ଟାଳିକା । ହୁକିଟୋଲା ଯୋଡ଼ି ଯାଇଛି ପ୍ରସିଦ୍ଧ ବାରବାଟୀ ଦୁର୍ଗର ସ୍ମୃତି ଓ ସ୍ୱାକ୍ଷରରେ । ହୁକିଟୋଲା ନିକଟରେ ରହିଛି କେତେକ ଛୋଟଛୋଟ ଦ୍ୱୀପ । ଯଥା– ଲଙ୍ଗ ଡୌଡେଶ୍ୱେଲ୍, ପ୍ଲୌଡେନ୍, ହୁଇଲର ଆଦି ଦ୍ୱୀପ ଓ ରେଡ୍ପ୍ରୀପଏ, ଫଲସ୍ ପଏ ତଥା ଲାଇଟ୍ ହାଉସ୍ । ଏହି ଦ୍ୱୀପଗୁଡ଼ିକ ଆମେରିକା କି ୟୁରୋପରେ ରହିଲା ଭଳି ଜଣାପଡ଼େ, କିନ୍ତୁ ପ୍ରକୃତରେ ଓଡ଼ିଶାରେ ହିଁ ଏହା ଅଛି । ପ୍ରଥମେ ପର୍ତ୍ତୁଗୀଜ୍‌ମାନେ ହୁକିଟୋଲାରେ ବନ୍ଦର ନିର୍ମାଣ କରିଥିଲେ । ଆମଦାନୀ ଓ ରପ୍ତାନୀର ପର୍ବ ଏଠାରେ ଚାଲୁଥିଲା । ୧୮୬୭ରେ ଫେମିନ୍ କମିଶନ ରିପୋର୍ଟ ଅନୁଯାୟୀ ହୁକିଟୋଲା ବନ୍ଦର ହୁଗୁଳିଠାରୁ ବମ୍ବେ ମଧ୍ୟରେ ସର୍ବୋକୃଷ୍ଟ ସ୍ଥାନ ବୋଲି କୁହାଯାଉଥିଲା । ଇଂରେଜମାନଙ୍କର ଆଧିପତ୍ୟ ସମୟରେ ୧୮୭୯ରେ ଏହି ବନ୍ଦରକୁ କଷ୍ଟମସ୍ ପୋର୍ଟ ଭାବେ ଘୋଷଣା କରାଯାଇଥିଲା । ସେଠାରେ ପୋର୍ଟ ଅଫ୍ କଷ୍ଟମ୍ସ ସଂସ୍ଥା ଖୋଲାଗଲା । ହୁକିଟୋଲା ବନ୍ଦର ନିକଟରେ ପାଣିର ଗଭୀରତା ୧୬ରୁ ୨୦ଫୁଟ । ହୁକିଟୋଲା ଦ୍ୱୀପରେ ବନ୍ଦର ପାଇଁ ଗଢ଼ି ଉଠିଥିଲା ସୁନ୍ଦର ବସତି । ସେଠାରେ ଥିଲା ପୋତାଶ୍ରୟ ରକ୍ଷକଙ୍କର ଘର, କାର୍ଯ୍ୟାଳୟ, କୁଲି ଓ ନାବିକମାନଙ୍କର କୁଡ଼ିଆଘର । ଆଜି ଏସବୁ ଧ୍ୱସ୍ତବିଧ୍ୱସ୍ତ ହୋଇଗଲାଣି, ତଥାପି ବନ୍ଦର ଦେଖିବା ପାଇଁ ଦେଶ ଓ ବିଦେଶରୁ ଅନେକ ପର୍ଯ୍ୟଟକଙ୍କର ଭିଡ଼ ଲାଗିରହେ । ହୁକିଟୋଲାର ସୌନ୍ଦର୍ଯ୍ୟମୟୀ ଦ୍ୱୀପରେ ଏ ପର୍ଯ୍ୟନ୍ତ ମଳିନତାର ଛାପ ଦେଖାଯାଇ ନାହିଁ ।

କେନ୍ଦ୍ରାପଡ଼ା ସହରରୁ ୫୨ କିଲୋମିଟର ପରେ ପର୍ଯ୍ୟଟନର ଆଉ ଏକ ଆକର୍ଷଣ 'କନିକା ରାଜବାଟୀ' । ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ବିଲାତରେ ବାରିଷ୍ଟରୀ ପଢ଼ିବା ଆଗରୁ ଅନେକ ଥର ବିଲାତ ଯାଇଥିଲେ । ଏହି ସମୟରେ ସେ ଲଣ୍ଡନର ବକିଙ୍ଗହାମ୍ ବ୍ରିଟିଶ୍ ରାଜପ୍ରାସାଦ ନିର୍ମାଣ ଶୈଳୀ ଦ୍ୱାରା ପ୍ରଭାବିତ ହୋଇ ତାହାରି ଢାଞ୍ଚାରେ ନିଜ ରାଜ୍ୟ ବୈତରଣୀ ଓ ଖରସ୍ରୋତା ନଦୀ ଉପତ୍ୟକାର ବାଲୁକା ଶଯ୍ୟା ଉପରେ କନିକାର ରାଜଧାନୀ ରାଜକନିକା ନଗରୀରେ ଏକ ମନୋରମ ତଥା ଅତ୍ୟାଧୁନିକ ରାଜପ୍ରାସାଦ ୧୯୦୯ ମସିହାରେ ନିର୍ମାଣ ଆରମ୍ଭ କରିଥିଲେ । ନରାଜରୁ ପଥର, କଲିକତାରୁ ନିର୍ମାଣ ଉପକରଣ, ବ୍ରହ୍ମଦେଶରୁ ଶାଗୁଆନ କାଠ, ଇଟାଲୀରୁ ମାର୍ବଲ ଟାଇଲ୍ ଓ ବେଲ୍‌ଜିୟମ୍‌ରୁ କାଠ ସାମଗ୍ରୀ ଆଣିଥିଲେ । ଖୁବ୍ ସୁନ୍ଦର ଶୈଳୀରେ କନିକା ରାଜବାଟୀ ନିର୍ମାଣ ହୋଇଥିଲା । କିନ୍ତୁ ସମୟର ଚକ୍ରରେ ରାଜବାଟୀରୁ ବହୁ ଜିନିଷ ଚୋରି ହୋଇଗଲାଣି । ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ରାଜବାଟୀର ସୌନ୍ଦର୍ଯ୍ୟ ଫିକା ପଡ଼ି ଆସିଲାଣି । ତଥାପି ଅସଂଖ୍ୟ ପର୍ଯ୍ୟଟକମାନଙ୍କ ପ୍ରତିବର୍ଷ ଏଠାରେ ଭିଡ଼ ଜମେ ।

ଚାରିଧାମରୁ ପୁରୀର ଶ୍ରୀକ୍ଷେତ୍ର ଏକ ଧାମରେ ଅନ୍ତର୍ଭୁକ୍ତ । ଶ୍ରୀକ୍ଷେତ୍ର ପୁରୀରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଗୁରୁତ୍ୱ ରହୁଥିବା ବେଳେ କେନ୍ଦ୍ରାପଡ଼ା ତୁଳସୀ କ୍ଷେତ୍ରରେ ପ୍ରଭୁ ଶ୍ରୀବଳଭଦ୍ରଙ୍କର ସେହିପରି ଗୁରୁତ୍ୱ ରହିଛି । ବଳଦେବଜୀଉ କେନ୍ଦ୍ରାପଡ଼ାର ଆରାଧ୍ୟ ଦେବତା ଅଟନ୍ତି । ଆଧୁନିକ କେନ୍ଦ୍ରାପଡ଼ା ବ୍ରହ୍ମକ୍ଷେତ୍ର ଓ ବ୍ରାହ୍ମଣୀ ତୁଳସୀଙ୍କୁ ସମ୍ମିଳିତ କରି ପରବର୍ତ୍ତୀ ସମୟରେ ତୁଳସୀକ୍ଷେତ୍ର ହୋଇଅଛି । ସ୍ଥୂଳତଃ ଜଗନ୍ନାଥ ଚେତନାର ବିକାଶ ପୂର୍ବରୁ ବଳଦେବ ଚେତନାର ବିକାଶ ଘଟିଥିବାରୁ ବଳଦେବ ବଡ଼ଭାଇର ମର୍ଯ୍ୟାଦା ଲାଭ କରିଅଛନ୍ତି । ହିନ୍ଦୁ ବିଦ୍ୱେଷୀ କଳାପାହାଡ଼ ଉତ୍କଳ ଆକ୍ରମଣ କରି ସୁନା, ରୂପା, ହୀରା ଇତ୍ୟାଦି ମୂଲ୍ୟବାନ ରତ୍ନ ଲୁଟି ନେଇଥିଲେ, ମାତ୍ର ମନ୍ଦିର ଅକ୍ଷତ ଅବସ୍ଥାରେ ରହିଥିଲା । ସେବାୟତମାନେ ଠାକୁରଙ୍କୁ ଜଙ୍ଗଲରେ ଲୁଚାଇ ରଖିଥିଲେ । କଳାପାହାଡ଼ ଯିବା ପରେ ମନ୍ଦିରକୁ ଫେରାଇ ଆଣି ବିଗ୍ରହ ପ୍ରତିଷ୍ଠା କରାଯାଇଥିଲା । ବଳଦେବଜୀଉଙ୍କର ପୁରୀ ରଥଯାତ୍ରା ଭଳି କେନ୍ଦ୍ରାପଡ଼ାରେ ମଧ୍ୟ ପ୍ରତିବର୍ଷ ରଥଯାତ୍ରା ପାଳନ କରାଯାଏ ବହୁ ଆଡ଼ମ୍ବରରେ । ଅନେକ ଭକ୍ତ ଓ ପର୍ଯ୍ୟଟକମାନେ ରଥଯାତ୍ରା ଦେଖିବା ପାଇଁ ଏଠାକୁ ଆସିଥାନ୍ତି । ବର୍ଷତମାମ ମନ୍ଦିରରେ ଭିଡ଼ ଲାଗି ରହିଥାଏ ।

କେନ୍ଦ୍ରାପଡ଼ା ଏକ ଧାର୍ମିକ ପର୍ଯ୍ୟଟନସ୍ଥଳୀ ଭାବରେ ବିଖ୍ୟାତ । ଏଠାରେ ଗଜଲକ୍ଷ୍ମୀ ପୂଜା ଓଡ଼ିଶା ପ୍ରସିଦ୍ଧି ଲାଭ କରିଛି । ଏହାଛଡ଼ା ଇନ୍ଦୁପୁରର ବାରୁଣୀଯାତ୍ରା, ଓଲାଶୁଣୀ ଯାତ୍ରା, ରିଘାଗଡ଼ର ଶ୍ରୀ ବଳଦେବଜୀଉ, ପେଣ୍ଠର ଶ୍ରୀଶ୍ରୀ ବନବିହାରୀ ଜୀଉ, ଗୋବିନ୍ଦ ଜୀଉ ମନ୍ଦିର, ମାହାଳର ହରିହର କ୍ଷେତ୍ର, ଆଳିର ଶ୍ରୀ ଲକ୍ଷ୍ମୀବରାହ, ଚନ୍ଦନ ନଗରର ଚନ୍ଦ୍ରମୌଳୀ, ପଟ୍ଟାମୁଣ୍ଡାଇର ହରପାର୍ବତୀ,

କାଠିଆପଡ଼ାର ଦକ୍ଷିଣେଶ୍ୱର ମନ୍ଦିର ପ୍ରସିଦ୍ଧି ଲାଭ କରିଅଛି । ଏହାଛଡ଼ା କେନ୍ଦ୍ରାପଡ଼ାରେ ବିଭିନ୍ନ ପ୍ରାଚୀନ ମଠ ଦେଖିବାକୁ ମିଳେ ଯଥା– କନ୍ତିଆ ମଠ, ଗରିପୁର ହନୁମାନ ମଠ, ବାୟାବାବାଙ୍କ ମଠ, କଷଣଅଣ୍ଡାର ମୋହନ ଦାସ ମଠ ଇତ୍ୟାଦି ଧର୍ମ ଅନୁଷ୍ଠାନ ଦେଖିବାକୁ ମିଳେ ।

ପ୍ରାଚୀନ ଓଡ଼ିଶାର ଅନେକ ଐତିହ୍ୟର କଥା କହୁଥିବା ଦୁର୍ଗ ଶହଶହ ବର୍ଷ ଧରି ବିସ୍ମୃତିର ବିରାଟ ବଳୟ ମଧ୍ୟରେ ଜନମାନସରୁ ଲିଭି ଯିବାକୁ ବସିଲାଣି । ସେହି ଦୁର୍ଗମାନଙ୍କ ମଧ୍ୟରୁ 'ସାତଭାୟା' ଅନ୍ୟତମ । ସାତଗୋଟି ଗାଁକୁ ନେଇ ସାଧବପୁଅ ସାତ ଭାଇଙ୍କର ସ୍ମାରକୀ ବହନ କରୁଥିବା ସାତଭାୟାରେ ଗଡ଼ଚଣ୍ଡୀ ରୂପେ ପୂଜା ପାଉଥିବା ପ୍ରତ୍ୟକ୍ଷ 'ପଞ୍ଚବରାହୀ' ପୀଠ ଓ ମନଲୋଭା ବେଳାଭୂମି ଏହାର ଅନ୍ୟତମ ଆକର୍ଷଣ । ବଙ୍ଗୋପସାଗରର ତଟ ଦେଶରେ ପୂର୍ବମୁଖା ହୋଇ ଏକ ଛାତଘର ମଧ୍ୟରେ କଳାମୁଗୁନି ପଥରରେ ସ୍ଥାପିତ ୫ଟି ନାରୀ ମୂର୍ତ୍ତିକୁ ହିଁ ପଞ୍ଚବରାହୀ କୁହାଯାଏ । ଏହା ଏକ ପର୍ଯ୍ୟଟନସ୍ଥଳୀ ରୂପେ ପର୍ଯ୍ୟଟକମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟିଛି ।

ଓଡ଼ିଶା ପର୍ଯ୍ୟଟନ ସ୍ଥଳୀର ଗନ୍ତାଘର । ବିଭିନ୍ନ ଦର୍ଶନୀୟ ସ୍ଥାନମାନଙ୍କରେ ରାସ୍ତାଘାଟ, ଗମନାଗମନ, ରହଣିସ୍ଥଳ, ଖାଦ୍ୟର ଉପଯୁକ୍ତ ବ୍ୟବସ୍ଥା ଆଜି ପର୍ଯ୍ୟନ୍ତ ମଧ୍ୟ କାର୍ଯ୍ୟକାରୀ ହୋଇପାରି ନାହିଁ। ପର୍ଯ୍ୟଟକମାନେ ପ୍ରକୃତିର ସୌନ୍ଦର୍ଯ୍ୟମୟ ଲୀଳାର ଦର୍ଶନ କରିବା ପାଇଁ ଆଗ୍ରହୀ ଥିଲେ ମଧ୍ୟ ଉପଯୁକ୍ତ ବ୍ୟବସ୍ଥାର ଅଭାବ ଯୋଗୁଁ ବଞ୍ଚିତ ହେଉଛନ୍ତି । ସେଥିପାଇଁ ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ଯଦି ତତ୍ପର ହୋଇପଡ଼ନ୍ତା ତେବେ ଆମ ଓଡ଼ିଶାର ବିଭିନ୍ନ ପର୍ଯ୍ୟଟନ ସ୍ଥଳୀର ଖ୍ୟାତି ଦେଶ ତଥା ବାହାରେ ଅର୍ଜନ ହୁଅନ୍ତା । କେନ୍ଦ୍ରାପଡ଼ା ଜିଲ୍ଲାର ବିଭିନ୍ନ ଦର୍ଶନୀୟ ସ୍ଥଳର ବର୍ଣ୍ଣନା ମୁଖରେ ଅସମ୍ଭବ । ଜଣେ ଆଖିରେ ଏ ଦୃଶ୍ୟ ନ ଦେଖିଲେ ହୁଏତ୍ ବିଶ୍ୱାସ କରିପାରିବ ନାହିଁ । ଭିତର କନିକାର ଘଞ୍ଚ ସବୁଜ ଅରଣ୍ୟରେ ବିରଳ କୁମ୍ଭୀର ଜାତିଠୁ ଆରମ୍ଭ କରି ଗହୀରମଥାର ବିଭିନ୍ନ କିସମର କଇଁଛ ଚାଷ, ସମୁଦ୍ରର ବିସ୍ତୃତ ବେଳାଭୂମି, ବିଭିନ୍ନ ନଦୀର ଅବବାହିକାର ତ୍ରିକୋଣଭୂମିର ସବୁଜ ଘେରା ଜଙ୍ଗଲ ହୁକିଟୋଲାର ପ୍ରାଚୀନ ବନ୍ଦର, ବଳଦେବଜୀଉଙ୍କର ବିଖ୍ୟାତ ମନ୍ଦିର, ପଞ୍ଚୁବରାହୀ ମନ୍ଦିରର ଦୃଶ୍ୟ ସତରେ ମନମୁଗ୍ଧକର । ଓଡ଼ିଶାର ପର୍ଯ୍ୟଟନ ବିଭାଗର ଆଗ୍ରହରେ କେନ୍ଦ୍ରାପଡ଼ାର ଆହୁରି ପର୍ଯ୍ୟଟନ ବିଭିନ୍ନ ସ୍ଥାନରେ ଉନ୍ନତି ଘଟୁ, ବିଦେଶୀ ପର୍ଯ୍ୟଟକଙ୍କର ଏଠାକୁ ସୁବିଧାରେ ଆସିବାର ବ୍ୟବସ୍ଥା କରାଯାଉ । ଏପରି ଉଦ୍ୟମ ଯଦି ବଳବତ୍ତର ରହେ ତେବେ ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ବିତ୍ତଶାଳୀ ହୋଇପାରିବ । ଆମ ଓଡ଼ିଶାର ପର୍ଯ୍ୟଟନ ସ୍ଥଳୀର ବିକାଶ ହୋଇପାରିବ ଓ ପ୍ରକୃତିକୁ ଆମେ ନିଜ ହାତ ମୁଠାରେ ପାଇପାରିବାର ଅନୁଭବ କରିବା, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ରାଜନୀତି ବିଜ୍ଞାନ ବିଭାଗ
ଶ୍ରୀ ସୋମନାଥ ବାଲୁଙ୍କେଶ୍ୱର ଦେବ ମହିଳା
ମହାବିଦ୍ୟାଳୟ
କନ୍ତିଆ, ଜଟଣୀ, ଖୋର୍ଦ୍ଧା



# ପର୍ଯ୍ୟଟନ କ୍ଷେତ୍ର ଭୁଷଣ୍ଡପୁରର ମା' ଉଗ୍ରତାରା

କୃଷ୍ଣଚନ୍ଦ୍ର ସୁଆର

ଶ୍ରୀ ଶ୍ରୀ ତାରା ଭଗବତୀ ପରମ ଶକ୍ତି ସ୍ୱରୂପା । ଶକ୍ତିମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ଅଗ୍ରଗଣ୍ୟ । ସ୍ମରଣାତୀତ କାଳରୁ ଦୁର୍ଗତିନାଶିନୀ ମା' ଦୁର୍ଗାଙ୍କ ଉପାସନାର ଧାରା ପବିତ୍ର ଭାରତ ଭୂମିରେ ଅବ୍ୟାହତ । ଦେବୀ ସର୍ବ ଶକ୍ତିମୟୀ ସୃଷ୍ଟି ସ୍ଥିତି ଓ ସଂହାରକାରିଣୀ ରୂପେ ପୂଜିତା । ଶକ୍ତିତତ୍ତ୍ୱ, ତନ୍ତ୍ରତତ୍ତ୍ୱ ଓ ମୂର୍ତ୍ତିତତ୍ତ୍ୱ ଅନୁଯାୟୀ ଦେବୀଙ୍କର ଅସଂଖ୍ୟ ରୂପ ପରିକଳ୍ପିତ । ସମସ୍ତ ଦେବତାଙ୍କ ଶକ୍ତିରେ ମହିଷାସୁରକୁ ସଂହାର କରିବା ନିମନ୍ତେ ସେ ଦୁର୍ଗା ରୂପେ ଆବିର୍ଭୂତା । ବିଶେଷତଃ ଦେବୀଙ୍କର ଦଶବିଧ ରୂପ ହେଉଛି ଦଶବିଦ୍ୟା । ଦକ୍ଷ ଯଜ୍ଞ ସମୟରେ ସତୀଙ୍କ କ୍ରୋଧରୁ ଭିନ୍ନ ଭିନ୍ନ ରୂପ ଧରି ଦଶଦିଗକୁ ଆଚ୍ଛାଦିତ କରିଥିଲେ ମହାମାୟା । ଉତ୍ତର ଦିଗରେ କାଳୀ, ଊର୍ଦ୍ଧ୍ୱରେ ତାରା, ପୂର୍ବରେ ଛିନ୍ନମସ୍ତା, ପଶ୍ଚିମରେ ଭୁବନେଶ୍ୱରୀ, ଦକ୍ଷିଣରେ ବଗଳା, ଅଗ୍ନିକୋଣରେ ଧୂମାବତୀ, ନୈଋତରେ ଷୋଡଶୀ, ବାୟୁ କୋଣରେ ମାତଙ୍ଗୀ, ଐଶାନ୍ୟରେ କମଳା ଓ ଅଧୋଦ୍ଧଦେଶରେ ଭୈରବୀ ରୂପେ ପ୍ରକାଶ ହୋଇଥିଲେ । ଭଗବାନ ବିଷ୍ଣୁଙ୍କର ଦଶ ଅବତାର ଭଳି ଦେବୀଙ୍କର ଏହି ସ୍ୱରୂପକୁ ଦଶ ଅବତାର କୁହାଯାଏ । ଏହି ଦଶ ମହାବିଦ୍ୟା ପୃଥକ ଭାବରେ ଦଶଗୋଟି ରୂପ ହୋଇଥିଲେ ମଧ୍ୟ ମୂଳତଃ ଗୋଟିଏ । କେତେକ ଶାସ୍ତ୍ରରେ ଦଶରୁ ଅଧିକ ମହାବିଦ୍ୟାଙ୍କ ସଂପର୍କରେ ବର୍ଣ୍ଣିତ । ଆଦ୍ୟାଶକ୍ତି ସତ୍ତ୍ୱ, ରଜ ଓ ତମ ଆଦି ତ୍ରିଗୁଣାତ୍ମିକ ପ୍ରକୃତି ସହିତ ଯୁକ୍ତ ହୋଇ ଦଶ ମହାବିଦ୍ୟା ରୂପ ଧାରଣ କରିଛନ୍ତି । ତେଣୁ ବ୍ରହ୍ମମୟୀଙ୍କୁ ଆରାଧନା କଲେ ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ଚତୁର୍ବର୍ଗ ଫଳପ୍ରାପ୍ତି ହୁଏ । ପ୍ରତ୍ୟେକ ମତବାଦରେ ନିଜ ନିଜ ଆରାଧ୍ୟ ଠାକୁରଙ୍କ ଉପରେ ଗୁରୁତ୍ୱାରୋପ କରାଯାଇଛି । କେହି କେହି ଶିବଙ୍କର ପ୍ରାଧାନ୍ୟ ପ୍ରତିଷ୍ଠା କଲାବେଳେ କେତେକ ଶକ୍ତିଙ୍କର ପ୍ରାଧାନ୍ୟ ସ୍ୱୀକାର କରନ୍ତି । ତେଣୁ ଶୈବ ହୁଅନ୍ତୁ ବା ଶାକ୍ତ 'ଶିବ ଓ ଶକ୍ତି' ଯେ ଏକ ଏବଂ ଅଭିନ୍ନ ଅବିଚ୍ଛେଦ୍ୟ ସଂପର୍କ ଏଥିରେ ଦ୍ୱିମତ ନାହିଁ ।

ପ୍ରାଚୀନ ଶାସ୍ତ୍ରାନୁସାରେ କ୍ଷୀରସାଗର ମନ୍ଥନ କାଳରେ ଅମୃତ ବଦଳରେ ଯେତେବେଳେ ହଳାହଳ ବିଷ ନିର୍ଗତ ହେଲା, ସେତେବେଳେ ସଦାଶିବଙ୍କ ବ୍ୟତୀତ ସମସ୍ତ ଦେବତା ଓ ଅସୁରମାନେ ବିମୂଢ଼ ହେବା ସଂଗେ ସଂଗେ ବିଷର୍ଣ୍ଣ ହୋଇଗଲେ । ଏଭଳି ପରିସ୍ଥିତି ଲକ୍ଷ୍ୟ କରି ସଦାଶିବ ବିଷପାନ କରିବାକୁ ମନସ୍ଥ କରି ଆଗେଇ ଆସିଲେ । ସେସମୟରେ ସେ ଥିଲେ ଅପ୍ରମିତ ଓ ପ୍ରଶାନ୍ତ ଚିତ୍ତ । ଏଥିପାଇଁ ତାଙ୍କୁ ଅକ୍ଷୋଭ୍ୟ କୁହାଯାଏ । ତାଙ୍କର ଶକ୍ତି ହେଲେ ତାରା । ସମଗ୍ର ଜଗତର ବିପଦରୁ ତଥା ମହାବିପଦରୁ ତ୍ରାଣ ପାଇଁ ତାଙ୍କ ମଧ୍ୟରେ ଯେଉଁ ଶକ୍ତି ଦେଖାଗଲେ, ସେ ହିଁ ତାରା ଶକ୍ତି । ତେଣୁ କେତେକ ତନ୍ତ୍ର ଶାସ୍ତ୍ରରେ ତାରାଙ୍କର ଅକ୍ଷୋଭ୍ୟ ପରି କାଳିକାଙ୍କ ମହାକାଳ, ଛିନ୍ନମସ୍ତାଙ୍କର ବିକରାଳ, ଭୁବନେଶ୍ୱରୀଙ୍କର ମହାଦେବ, ବଗଳାଙ୍କର ମୃତ୍ୟୁଞ୍ଜୟ, ଧୂମାବତୀଙ୍କର କାଳଭୈରବ, ତ୍ରିପୁରା ସୁନ୍ଦରୀଙ୍କର ଲଳିତେଶ୍ୱର, ମାତଙ୍ଗୀଙ୍କର ମାତଙ୍ଗ ବା ସଦାଶିବ, ଷୋଡଶୀଙ୍କର ନାରାୟଣ ଓ ଭୈରବୀଙ୍କର ବଟୁକ ଆଦି ଦଶ ଭୈରବ ରୂପେ କଳ୍ପିତ ହୋଇଛନ୍ତି । ଏତଦ୍‌ବ୍ୟତୀତ କେତେକ ଶାସ୍ତ୍ରରେ କାଳୀଙ୍କ ବ୍ୟତୀତ ଅନ୍ୟ ନଅଟି ମହାବିଦ୍ୟାଙ୍କୁ ନବଗ୍ରହଙ୍କ ଇଷ୍ଟ ଦେବତା ଭାବରେ ବର୍ଣ୍ଣିତ । ଦେବଗୁରୁ ବୃହସ୍ପତି ମହାଗ୍ରହଙ୍କର ଇଷ୍ଟଦେବୀ ହେଉଛନ୍ତି ମା'ତାରା । ସେ ଶୂନ୍ୟବ୍ରହ୍ମର ପ୍ରତୀକ ଅଟନ୍ତି । ତେଣୁ ବୃହସ୍ପତି ଗ୍ରହ କବଳରୁ ମୁକ୍ତିର ଏକମାତ୍ର ମାର୍ଗ ହେଉଛି ମା'ତାରାଙ୍କ ଆରାଧନା । ତେଣୁ ଗ୍ରହ ଶାନ୍ତି ନିମନ୍ତେ ଏହି ନବ ମହାବିଦ୍ୟାଙ୍କୁ ନିଷ୍ଠାର ସହ ଆରାଧନା କରିବାର ବିଧି ପ୍ରଚଳିତ ।

ତାରା ହେଉଛନ୍ତି ବହୁ ପ୍ରାଚୀନ ଓ ଦ୍ୱିତୀୟା ମହାବିଦ୍ୟା । କେତେକଙ୍କ ମତରେ ଏହି ଦେବୀ ବିଦେଶାଗତା । ସମ୍ଭବତଃ ତିବ୍ବତ ଓ ଚୀନରୁ ତାଙ୍କର ଆଗମନ । ବ୍ରାହ୍ମଣ୍ୟ ଧର୍ମରେ ଦୁର୍ଗାଙ୍କ ଉପାସନା ତୁଲ୍ୟ ବୌଦ୍ଧ ଧର୍ମରେ ତାରାଙ୍କର ପ୍ରାଧାନ୍ୟ ପରିଲକ୍ଷିତ । ମହାଦେବୀ ତାରା ହେଉଛନ୍ତି ତନ୍ତ୍ରର ମହାଦେବୀ । 'ତୃ' ଧାତୁରୁ ତାରା ଶବ୍ଦ ନିଷ୍ପନ୍ନ । 'ତୃ' ଧାତୁ ଅର୍ଥ ତାରଣ କରିବା । ପୁନଶ୍ଚ ତାରା ଅର୍ଥ ଯିଏ ରକ୍ଷା କରନ୍ତି ଓ କରାନ୍ତି । ତ୍ରାଣକର୍ତ୍ତ୍ରୀ ଭାବେ ଦେବୀ ଖୁବ୍ ପ୍ରସିଦ୍ଧ । ଅଖିଳ ଜୀବ ଜଗତକୁ ମହାବିଦ୍ୟା ମା' ତାରା ହିଁ ତ୍ରାଣ କରନ୍ତି । ପ୍ରକୃତରେ 'ତାରୟତି ଇତି ତାରା' । ସେ ହେଉଛନ୍ତି ନୀଳବର୍ଣ୍ଣା, ଏକଜଟା, ତ୍ରିନୟନା ଓ ଶିବୋପରି ଆରୂଢ଼ା । ଏହି ଦେବୀ ବାକ୍ ସିଦ୍ଧି ପ୍ରଦାନ କରନ୍ତି ବୋଲି 'ନୀଳ ସରସ୍ୱତୀ' ନାମରେ ଖ୍ୟାତ । ଉଗ୍ର ବା ଭୟାନକ ଓ କଠିନ ବିପଦରୁ ଉଦ୍ଧାର କରନ୍ତି ବୋଲି ସେ ଉଗ୍ରତାରା ରୂପରେ ପରିଚିତ । ସେ ଭୟଙ୍କରୀ କିନ୍ତୁ ବରଦା । ସେ ସୁଖ ଓ ମୋକ୍ଷ ପ୍ରଦାନ କରନ୍ତି ।

ସ୍ୱରୂପ ଦୃଷ୍ଟିରୁ କାଳୀ ଓ ତାରା ଅଭିନ୍ନ । ତେଣୁ କେତେକ ତାଙ୍କୁ ଏକ ବୋଲି କହନ୍ତି । ବୌଦ୍ଧ ଧର୍ମରେ ବୋଧିସତ୍ତ୍ୱ ଅବଲୋକିତେଶ୍ୱରଙ୍କର ସେ ହେଉଛନ୍ତି ଶକ୍ତି । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର, ସାଧକ ବଶିଷ୍ଠ, ବୋଧିସତ୍ତ୍ୱ, ନାଗାର୍ଜୁନ ବା ସିଦ୍ଧ ନାଗାର୍ଜୁନ ହିଁ ତାରାଙ୍କର ପ୍ରଥମ ଉପାସକ । ତାଙ୍କରି ଦ୍ୱାରା ହିଁ ତାରା ତନ୍ତ୍ର ତଥା ତାରା ଦେବୀ ଓଡିଶାରେ ପ୍ରଚାରିତ । ଏହି ତାରା 'ତାରିଣୀ' ଭାବେ ମଧ୍ୟ ପରିଚିତା । ତାଙ୍କର ପୂଜା, ଉପାସନା ଫଳରେ ହିଁ ଜ୍ଞାନ, କାବ୍ୟ ଶୈଳୀ, ସଂପତ୍ତି, ବାଣିଜ୍ୟରେ ଉନ୍ନତି ଓ ରାଜଦରବାରରେ ସଂସ୍ଥାନ ଆଦି ସମ୍ଭବ ହୋଇଥାଏ ।

ଓଡିଶାର ବିଭିନ୍ନ ସ୍ଥାନରେ ମହାଦେବୀ ତାରା ପୂଜା ପାଉଛନ୍ତି । ତନ୍ମଧ୍ୟରେ ଖୋର୍ଦ୍ଧା ଜିଲ୍ଲାର ଚିଲିକା ନିକଟବର୍ତ୍ତୀ ଭୁଷଣ୍ଡପୁରର ଉଗ୍ରତାରା, କେନ୍ଦୁଝରର ଘଟଗାଁର ତାରିଣୀ, ଝଙ୍କଡର ଶାରଳା, ତାରାତାରିଣୀ ଆଦିପୀଠ ଓ ପୀଠେଶ୍ୱରୀ ମହାଦେବୀ ତାରାଙ୍କର ପୀଠ ରୂପେ ପ୍ରସିଦ୍ଧ । ଏତଦ୍‌ବ୍ୟତୀତ ବଂଗଳାର ବୀରଭୂମ୍ ଜିଲ୍ଲାରେ ତାରା ପୀଠ ରହିଛି ଓ ବାମାକ୍ଷେପା ଏଠାରେ ସିଦ୍ଧି ଲାଭ କରିଥିଲେ । ଆସାମର କାମରୂପ ପାହାଡ ଉପରେ ତାରା ଓ ଭୁବନେଶ୍ୱରୀ ମନ୍ଦିର ମଧ୍ୟ ରହିଛି ।

ତନ୍ତ୍ର ଶାସ୍ତ୍ରରେ ମହାବିଦ୍ୟାର ପାରିଭାଷିକ ନାମ ରାତ୍ରୀ । ଦେବୀଙ୍କ ନାମକରଣ ଆବିର୍ଭାବ କାଳାନୁଯାୟୀ ତାରାଙ୍କ କ୍ରୋଧ ରାତ୍ରୀ । ତାଙ୍କର ଚାରି ସହସ୍ର ନାମ ରହିଛି ଏବଂ ଅଷ୍ଟନାମାତ୍ମକ (ତାରାଷ୍ଟକ) ସ୍ତୋତ୍ରକୁ ପାଠ ଅଥବା ଶ୍ରବଣ କଲେ ସର୍ବାର୍ଥ ସିଦ୍ଧି ପ୍ରାପ୍ତି ହୋଇଥାଏ ।

ପୁରାଣ ପୃଷ୍ଠାରେ ଅନେକ ମୁନି ଋଷି ତାରାଙ୍କୁ ଉପାସନା କରି ସିଦ୍ଧିପ୍ରାପ୍ତ ହୋଇଥିବା ବର୍ଣ୍ଣିତ । ବାସ୍ତବରେ ତାଙ୍କର ମନ୍ତ୍ର, ଧ୍ୟାନ ଓ କବଚ ପାଠ କରିବା ଦ୍ୱାରା ତିନି ଲୋକରେ କୌଣସି ସ୍ଥାନରେ ମଧ୍ୟ ଭୟ ସ୍ପର୍ଶ କରିନପାରେ । କେତେକ ଗ୍ରନ୍ଥରେ ସାତ ପ୍ରକାର ତାରାଙ୍କର ଉଲ୍ଲେଖ ମିଳୁଥିବା ବେଳେ ଆଲୋଚକମାନେ ଏକୋଇଶି ପ୍ରକାର ତାରାଙ୍କ ମଧ୍ୟରୁ ମଙ୍ଗଳା ଏକ ପ୍ରକାର ତାରା ବୋଲି କହନ୍ତି । ଅଗ୍ନିପୁରାଣରେ ତାଙ୍କୁ ଯୋଗିନୀ ରୂପରେ ବର୍ଣ୍ଣନା କରାଯାଇଛି ।

ପ୍ରାଚୀନ ତନ୍ତ୍ରପୀଠମାନଙ୍କ ମଧ୍ୟରେ 'ଉଗ୍ରତାରା' ହେଉଛି ଅନ୍ୟତମ । ଏହାର ବହୁ ଖ୍ୟାତି ରହିଅଛି । ଏହିପୀଠ ନିକଟରେ ଶ୍ମଶାନ, ଗୋଗୋଷ୍ଠ, ଜଳଉତ୍ସ, ବେଲ ବୃକ୍ଷର ସମାହାର, ଦକ୍ଷିଣ, ପଶ୍ଚିମ, ଉତ୍ତରରେ ପାହାଡମାଳା ଏବଂ ଅନ୍ୟ ଦିଗରେ ଚିଲିକା ହ୍ରଦ ଓ ପାରିପାର୍ଶ୍ୱିକ ପରିବେଶ ଦେଖିଲେ ନିଚ୍ଛକ ତନ୍ତ୍ରକ୍ଷେତ୍ର ବୋଲି ସମସ୍ତେ ଧାରଣା କରିବା ସ୍ୱାଭାବିକ । ଏତଦ୍‌ବ୍ୟତୀତ ଏ କ୍ଷେତ୍ରରେ ଏଠାକାର ପଞ୍ଚକ୍ରୋଶ ମଧ୍ୟରେ ଚଣ୍ଡେଶ୍ୱର, ଉତ୍ତରେଶ୍ୱର, ରାମେଶ୍ୱର, କପିଳେଶ୍ୱର ଓ ଗତୀଶ୍ୱର, ପଞ୍ଚଶିବଲିଙ୍ଗ ପ୍ରତିଷ୍ଠିତ ହେତୁ ଏହା ଏକ ସିଦ୍ଧପୀଠ ରୂପେ ପରିଗଣିତ ।

ଖୋର୍ଦ୍ଧା ଜିଲ୍ଲା ଟାଙ୍ଗୀ ବ୍ଲକ ଭୁଷଣ୍ଡପୁର ରେଳଷ୍ଟେସନଠାରୁ ପ୍ରାୟ ଦୁଇ କିଲୋମିଟର ଦୂରତାରେ ଏକ ପ୍ରାକୃତିକ ରମଣୀୟ ପରିବେଶ ମଧ୍ୟରେ ମା' ଉଗ୍ରତାରାଙ୍କ ମନ୍ଦିର ଅବସ୍ଥିତ । ଏହାର ଚାରି ପଟରେ ଯଥାକ୍ରମେ ଚମ୍ପାଗଡ, କନ୍ଧନୟାଗଡ, ଗଡବଡ ପୋଖରିଆ, ଭଜାଗଡ, ଗଡବଳ ଭଦ୍ରପୁର ଓ ଗଡଖରଦ ରହିଛି । ସଡକ ପଥରେ ଭୁବନେଶ୍ୱରଠାରୁ ଉକ୍ତ ପୀଠର ଦୂରତା ପ୍ରାୟ ୫୦ କି.ମି ହେବ । ଏହି ପର୍ଯ୍ୟଟନସ୍ଥଳୀ ନିକଟରେ ଆରାଧ୍ୟ ଦେବୀ ଭୈରବୀଙ୍କ ପୀଠ, ରାମେଶ୍ୱରର ବଘେଇ ଠାକୁରାଣୀ, ହରିପୁରର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ରାମଚଣ୍ଡୀ ପୀଠ ସମେତ କେତେକ ଦର୍ଶନୀୟ ସ୍ଥାନ ଅବସ୍ଥିତ ହେତୁ ପର୍ଯ୍ୟଟକମାନେ ଏହି ଆଧ୍ୟାତ୍ମିକ କ୍ଷେତ୍ର ଦର୍ଶନ କରି ଥାଆନ୍ତି ।

ପୀଢ ଶୈଳୀରେ ମନ୍ଦିର ନିର୍ମିତ । ଏହାର ଗର୍ଭଗୃହରେ ମା' ଏକ କାରୁକାର୍ଯ୍ୟ ସଂପନ୍ନ ସୁଶୋଭିତ ସିଂହାସନରେ ବିରାଜିତା । ଗର୍ଭଗୃହର ଆୟତନ ଲମ୍ବରେ ପ୍ରାୟ ଦଶଫୁଟ ଓ ପ୍ରସ୍ଥରେ ଆଠଫୁଟ ହେବ । ତାଙ୍କ ମୂର୍ତ୍ତିର ଉଚ୍ଚତା ପ୍ରାୟ ୮ଇଞ୍ଚ

ଏବଂ ମନ୍ଦିରର ଉଚ୍ଚତା ପ୍ରାୟ ୩୦ ଫୁଟ ହେବ । ମନ୍ଦିରର ଉପରି ଭାଗରେ ଦଧିନଉତି ଓ ଚାରି ଦିଗରେ ଚାରିଗୋଟି ଉଡା ସିଂହ ରହିଛି । ମା'ଙ୍କ ବିଗ୍ରହ ଗଠନ ଶୈଳୀରୁ ଏହା ବୁଦ୍ଧଙ୍କ ସମୟର ବୋଲି କେତେକ ପ୍ରତ୍ନତତ୍ତ୍ୱବିତ୍ ମତ ପ୍ରଦାନ କରନ୍ତି । ମୂର୍ତ୍ତିର ବାମ ପାଦ ଦେବାଧିଦେବ ମହାଦେବଙ୍କ ବକ୍ଷରେ ଥିବା ବେଳେ ଦକ୍ଷିଣପାଦ ଶିବଙ୍କ ଜାନୁରେ ରହିଛି । ତାଙ୍କ ଗଳାରେ ନରମୁଣ୍ଡ ମାଳ ଓ ହସ୍ତରେ ଶୋଭା ପାଉଛନ୍ତି ନାଗରାଜ । ଦେବୀଙ୍କ ଉଭୟ ପାର୍ଶ୍ୱରେ ଦୁଇଜଣ ସ୍ତୁତିରତା । ଠିକ୍ ଏହି ଦୁଇ ଜଣଙ୍କ ଉପରକୁ ରହିଛି ଦୁଇଟି ସିଂହ ଏବଂ ତା'ର ଊର୍ଦ୍ଧ୍ୱରେ ଦୁଇଟି ପରୀ ଫୁଲମାଳ ଧରି ଉଡୁଛନ୍ତି । ଦେବୀଙ୍କର ତିନୋଟି ରକ୍ତଲୋଭା ଚକ୍ଷୁ, ଚତୁର୍ବାହୁ ରହିଛି । ଦେବୀ ବ୍ୟାଘ୍ର ଚର୍ମ ପରିହିତା । ବାମହସ୍ତ ଦ୍ୱୟରେ ଖଣ୍ଡା ଓ କଟୁରୀ ଧାରଣ କରିଛନ୍ତି । ଦେବୀଙ୍କ ଶରୀର ଏକ ସର୍ପାବୃତ ଏବଂ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଶୋଭା ପାଉଛି ।

ପ୍ରଧାନ ମନ୍ଦିରକୁ ଲାଗି ରହିଛି ଜଗମୋହନ ବା ମୁଖଶାଳା । ଏହା ମଧ୍ୟରେ ବଗଳା, ଧୂମାବତୀ, ମାତଙ୍ଗୀ, ଭୁବନେଶ୍ୱରୀ, ଷୋଡଶୀ, ଲକ୍ଷ୍ମୀ, କାଳୀ, ସରସ୍ୱତୀ ଓ ଛିନ୍ନମସ୍ତା ଆଦି ଦେବୀମାନଙ୍କୁ ଦେଖିବାକୁ ମିଳେ । ଜଗମୋହନର ତିନିପଟେ ତିନୋଟି ପ୍ରଶସ୍ତ ଦ୍ୱାର ରହିଛି । ଏହା ପୂର୍ବ, ଦକ୍ଷିଣ ଓ ପଶ୍ଚିମ ଦିଗକୁ ରହିଛି । ଦକ୍ଷିଣ ମୁହାଁ ହୋଇ ରହିଥିବାରୁ ଦକ୍ଷିଣ ପଟେ ଏକ ବାରଣ୍ଡା ରହିଛି ଏବଂ ତାହା ସହିତ ଦୁଇଟି ବଡ ସିଂହର ମୂର୍ତ୍ତି ରହିଛି । ମୁଖଶାଳାର ପଶ୍ଚିମ ପଟ ଦ୍ୱାରର କିଛି ଦୂରରେ ରୋଷେଇଶାଳା ଅଛି । ଏହାର ପଶ୍ଚିମ ପଟେ ଏକ ସୁନ୍ଦର ସ୍ୱଚ୍ଛଝରର ରହିଛି । ସିମେଣ୍ଟ ବଂଧ କରି ଝରକୁ ପୃଥକ କରାଯାଇଛି । ଗୋଟିକରୁ ଜଳ ରୋଷେଇ ସକାଶେ ବ୍ୟବହୃତ ହେଉଥିଲା ବେଳେ ଅନ୍ୟଟି ସ୍ନାନ ଓ ହସ୍ତପାଦ ପ୍ରକ୍ଷାଳନ ପାଇଁ ବ୍ୟବହାର କରାଯାଇଥାଏ ।

ଏଠାରେ ପୂଜିତ ହେଉଥିବା ପାର୍ଶ୍ୱ ଦେବାଦେବୀଙ୍କ ମଧ୍ୟରେ ଗ୍ରାମେଶ୍ୱର ମହାଦେବ, ନୃସିଂହ, ପର୍ଶୁରାମ, ଗଣେଶ, ହନୁମାନ ଆଦି ପ୍ରଧାନ ।

ପ୍ରତ୍ୟହ ପ୍ରାତଃକାଳରେ ଚୁଡାଘଷା, ମଧ୍ୟାହ୍ନରେ ଅନ୍ନ, ଖେଚୁଡି, ଡାଲି, ଆମିଷ, ନିରାମିଷ ତରକାରୀ ଖିରି ଆଦି ସୁସ୍ୱାଦୁ ବ୍ୟଞ୍ଜନ ମା'ଙ୍କୁ ଲାଗି କରାଯାଏ ଏବଂ ସଂଧ୍ୟାରେ ଫଳ ଭୋଗ ହୋଇଥାଏ ।

ମା'ଙ୍କ ପୂଜା ବିଧିର ବଡ ବିଶେଷତ୍ୱ ହେଲା ଏହା ପଞ୍ଚମକାର ଓ ତନ୍ତ୍ର ମତେ ପୂଜା ହେଉଥିବାରୁ ଆମିଷ ସହିତ ବେଲ ପତ୍ର ଏକତ୍ର ପୂଜା ହୋଇଥାଏ । ମଧ୍ୟାହ୍ନ ଧୂପ ପରେ ଏଠାରେ ସର୍ବସାଧାରଣଙ୍କ ନିମନ୍ତେ ଅନ୍ନ ପ୍ରସାଦ ମଧ୍ୟ ଉପଲବ୍ଧ ହୁଏ ।

ପ୍ରତିବର୍ଷ ଜ୍ୟେଷ୍ଠ/ଆଷାଢ ମାସରେ ପବିତ୍ର ରଜ ସଂକ୍ରାନ୍ତିରୁ ପନ୍ଦର ଦିନ ପର୍ଯ୍ୟନ୍ତ ଯାତ୍ରା ଲାଗି ରହିଥାଏ । ଏହି ସମୟରେ ମା'ଙ୍କର ଲକ୍ଷ୍ମୀବେଶ ମନମୁଗ୍ଧକର ହୋଇଥାଏ । ସେହିପରି ଆଶ୍ୱିନ ମାସ ଦଶହରା ଓ ଚୈତ୍ରରେ ବାସନ୍ତିକ ଦୁର୍ଗାପୂଜା ସମୟରେ ମା'ଙ୍କର ଷୋଡଶ ଉପଚାରରେ ପୂଜା ଓ ଯଜ୍ଞ ଆୟୋଜିତ ହୋଇଥାଏ । କାର୍ତ୍ତିକ ମାସରେ ଶ୍ୟାମାକାଳୀ, ମାଘ ମାସରେ ସରସ୍ୱତୀ ବେଶ, ବୈଶାଖରେ ଅକ୍ଷୟ ତୃତୀୟାରେ ଚନ୍ଦନ ବେଶ ହୋଇଥାଏ । ଏହି ସମୟରେ ପୀଠ ସହସ୍ରାଧିକ ଶ୍ରଦ୍ଧାଳୁ ଓ ଭକ୍ତମାନଙ୍କ ସମାଗମ ଯୋଗୁଁ ଲୋକାରଣ୍ୟ ହୋଇଉଠେ । ଯାତ୍ରୀମାନଙ୍କ ସୁବିଧା ନିମନ୍ତେ ଏହି ସମୟରେ ପରିବେଶ ପରିବେଷ୍ଟନୀ ପରିଷ୍କାର ପରିଚ୍ଛନ୍ନ ରଖିବା ସମେତ ଉକ୍ତ ସ୍ଥାନର ରକ୍ଷଣାବେକ୍ଷଣ କରିବା ଓ ବିଶୁଦ୍ଧ ଖାଦ୍ୟ, ପାନୀୟ ଜଳ, ଉଜ୍ଜ୍ୱଳ ଆଲୋକ ବ୍ୟବସ୍ଥା ଓ ଦୂରଦୂରାନ୍ତରୁ ଆସୁଥିବା ପର୍ଯ୍ୟଟକଙ୍କ ପାଇଁ ଯାତ୍ରୀ ବିଶ୍ରାମଗାର ପ୍ରତି ଅଧିକ ଧ୍ୟାନ ଦିଆଯିବା ଆବଶ୍ୟକ । ନଚେତ୍ ଛୋଟ ଶିଶୁ, ବୃଦ୍ଧ, ବୃଦ୍ଧାଙ୍କଠାରୁ ଆରମ୍ଭ କରି ସମସ୍ତଙ୍କୁ ସଂକ୍ରମଣ ହୋଇଯିବା ଢେର ସମ୍ଭାବନା ଅଛି ।

ପ୍ରାଚୀନ ସମର କଳା ପ୍ରଦର୍ଶନ ସ୍ୱରୂପ ଦଶହରା ଦିନ ଘୋଡାରେ ଚଢି ସ୍ଥାନୀୟ କେତେକ ଉତ୍ସାହୀ ଯୁବକ ସେଠାକୁ ଯାଇ ପାଇକ ଖେଳ ପ୍ରଦର୍ଶନ କରନ୍ତି । ବହୁ ଦେଖଣାହାରି ଏହି କୌତୁକ ଖେଳ ଦେଖିବା ପାଇଁ ରୁଣ୍ଡ ହୋଇଥାନ୍ତି । ପାଇକ ବୀର ବକ୍ସି ଜଗବନ୍ଧୁ ମା'ଙ୍କ ପୀଠରେ ରହୁଥିବା ବେଳେ ଇଂରେଜ ସରକାର ତାଙ୍କୁ ବନ୍ଦୀ କରିବାକୁ ସାହସ କରି ନଥିଲେ ।

ମା' ଉଗ୍ରତାରାଙ୍କୁ ସ୍ଥାନୀୟ ଲୋକେ 'ତାରା ଦେଈ' ବୋଲି କହିଥାନ୍ତି । ଏତଦ୍‌ବ୍ୟତୀତ ମୂଳଝରଗଡ ଗ୍ରାମର ଯୁଦ୍ଧ ଦେବୀ ଭାବରେ ମା' କଥିତ । ଆପଦ ବିପଦରେ ବା ଶତ୍ରୁ ଆକ୍ରମଣରୁ ମା' ଘଣ୍ଟ ଘୋଡାଇ ଗ୍ରାମବାସୀଙ୍କୁ ରକ୍ଷା କରନ୍ତି । ଅତୀତରେ ଗଡର ପାଇକ ଓ ଗଜପତି ଦେବୀଙ୍କୁ ପୂଜାର୍ଚ୍ଚନା କରି ଯୁଦ୍ଧକୁ ଯାଉଥିଲେ ।

ପ୍ରଥମେ ଏକ ବଉଳ ଗଛମୂଳେ ଉଗ୍ରତାରା ପୂଜା ପାଉଥିଲେ । କେହି କେହି ମାଳତୀ ଗଛ ବୋଲି ଉଲ୍ଲେଖ କରିଛନ୍ତି ।

ପରେ ସ୍ଥାୟୀ ମନ୍ଦିର ନିର୍ମାଣ ହେଲା । ମା' ବିରାଜିତ ମନ୍ଦିରଟି ସ୍ଥାନୀୟ ବୋଡଙ୍ଗରା ଗ୍ରାମର ସ୍ୱର୍ଗତଃ ନାରାୟଣ ତ୍ରିପାଠୀଙ୍କ ଉଦ୍ୟମ ଯୋଗୁଁ ବିଗତ ୧୯୩୬–୧୯୪୬ ମସିହା ମଧ୍ୟରେ ଗଜପତି ରାମଚନ୍ଦ୍ର ଦେବଙ୍କ ଦ୍ୱାରା ପ୍ରତିଷ୍ଠା ହୋଇଥିଲା । ଉକ୍ତ ପ୍ରତିଷ୍ଠା ଉତ୍ସବରେ କେନ୍ଦୁଝର ରାଜା ବଳଭଦ୍ର ଭଂଜଦେଓଙ୍କ ସପରିବାର ଯୋଗ ଦେଇଥିଲେ । ଉକ୍ତ ମନ୍ଦିର ସହ ଘଟଗାଁ ତାରିଣୀଙ୍କ ସାମଞ୍ଜସ୍ୟ ଥିବାର ଜଣାଯାଏ । କାରଣ କେନ୍ଦୁଝରର ରାଜାମାନେ ଉଗ୍ରତାରାଙ୍କ ଭକ୍ତ ଥିଲେ ।

ଜନଶ୍ରୁତିରୁ ଜଣାଯାଏ ଦକ୍ଷିଣକୁ ଧର୍ମ ପ୍ରଚାର ପାଇଁ ଯାଉଥିବା ଜନୈକ ସନ୍ନ୍ୟାସୀ କାଶୀପୁର ନିକଟସ୍ଥ ଚିତ୍ରକୂଟ ପର୍ବତ ତଳେ ଦୁଇଟି ମୂର୍ତ୍ତିକୁ ଏକ ତେନ୍ତୁଳି ଗଛ ମୂଳେ ଦେଖି ପୂଜା ଆରାଧନା କରି ଯୋଗ ବଳରେ ଜାଣି ପାରିଥିଲେ ଯେ ଜଣେ ହେଉଛନ୍ତି 'ଭୈରବୀ' ଓ ଅନ୍ୟ ଜଣେ 'ତାରା' । ସନ୍ନ୍ୟାସୀ ବହୁ ପ୍ରାର୍ଥନା କରି ତାରାଙ୍କୁ ସଂଗରେ ନେବାକୁ ମିନତି କରନ୍ତେ, ଦେବୀ ତାଙ୍କ କଥାରେ ସମ୍ମତି ପ୍ରକାଶ କରି ଏକ ସର୍ତ୍ତ ରଖିଥିଲେ ଯେ ସନ୍ନ୍ୟାସୀ ଆଗେ ଆଗେ ଯିବେ ଓ ପଛକୁ ଚାହିଁବେ ନାହିଁ । କିଛି ବାଟ ଗଲା ପରେ ଘୋର ଜଙ୍ଗଲ ମଧ୍ୟରେ ଦେବୀ ଆସୁଛନ୍ତି କି ନାହିଁ ଜାଣିବା ପାଇଁ ପଛକୁ ଚାହିଁବାରୁ ଦେବୀ ସେହିଠାରେ ହିଁ ଅନ୍ତର୍ଦ୍ଧାନ ହୋଇଯାଇ ପାଷାଣ ମୂର୍ତ୍ତି ଭାବେ ପ୍ରକଟ ହେଲେ । ସେହି ସ୍ଥାନଟି ହେଉଛି ମୂଳଝରଗଡ, ଯେଉଁଠି ଦେବୀ ଆବହମାନ କାଳରୁ ପୂଜା ପାଇ ଆସୁଛନ୍ତି ।

ଆଉ କେତେକ କହନ୍ତି ଗଜପତି କପିଳେନ୍ଦ୍ର ଦେବଙ୍କ ରାଜୁତି ସମୟରେ ସ୍ଥଳୀଟି ଲୋକଲୋଚନକୁ ଆସିଥିଲା । ତାଙ୍କ ନିର୍ଦ୍ଦେଶରେ ମା'ଙ୍କ ପୂଜାର୍ଚ୍ଚନା ନିମନ୍ତେ ଜମି ଓ ସେବା ଆଦି ଖଞ୍ଜା ହୋଇଥିଲା । ତାଙ୍କ ସହିତ ଦାକ୍ଷିଣାତ୍ୟର ମୁସଲମାନମାନଙ୍କର ଏଠାରେ ଏକ ଭୟଙ୍କର ଯୁଦ୍ଧ ହୋଇଥିଲା ଏବଂ ଏହି ଯୁଦ୍ଧରେ ଉଭୟ ପକ୍ଷର ଲକ୍ଷାଧିକ ସୈନ୍ୟ ମୃତାହତ ହୋଇଥିଲେ ଓ ଏହା ଉପରେ ଏହି ତନ୍ତ୍ରପୀଠ ନିର୍ମିତ ହୋଇଥିଲା । ବୌଦ୍ଧତନ୍ତ୍ର ଅନୁସାରେ ତାରା ଓ ଶିବ ଅର୍ଦ୍ଧନାରୀଶ୍ୱର । ତାରା (ନକ୍ଷତ୍ର) ବ୍ରହ୍ମାଣ୍ଡକୁ ଆଲୋକିତ କରି ଦିବସ ସୃଷ୍ଟି କରେ । ଶିବ (ସୋମ–ଚନ୍ଦ୍ର) ରାତ୍ରିର ଅମା ଅନ୍ଧକାରକୁ ଦୂରୀଭୂତ କରେ । ଫଳତଃ ଦିବସ ଓ ରାତ୍ରି ଏହି ଦୁଇ ଶକ୍ତି ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ।

'ଓଁ ଚତୁର୍ଭୁଜାଂ ନୀଳବର୍ଣ୍ଣାଂ ଜଟାଯୁକ୍ତାଂ ମାଭୀମାମ୍ ।  
ଲମ୍ବୋଦରାଂ ବରପ୍ରଦାଂ ବନ୍ଦେ ହରହୃଦି ସ୍ଥିତାମ୍ ॥  
ସର୍ବଶକ୍ତିମୟୀଂ ନିତ୍ୟାଂ ବ୍ରହ୍ମମୟୀଂ ପରାତ୍ ପରମ ।  
ଜ୍ଞାନରୂପାଂ ମହାଦେବୀଂ ତାରିଣୀଂ ପ୍ରଣମାମ୍ୟହମ୍ ॥'

ସର୍ବସାଧାରଣ ବିନୋଦନ ପାଇଁ ବଣଭୋଜି ପିଣ୍ଡି, କ୍ରାଫ୍ଟସ୍ ବଜାର, ଶିଶୁ ଉଦ୍ୟାନ ପ୍ରଭୃତି ରହିଥିବା ସ୍ଥଳେ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟରେ ସ୍ଥାନଟି ଅତ୍ୟନ୍ତ ଚିତ୍ତାକର୍ଷକ ମନେହୁଏ । ତେଣୁ କବି କହନ୍ତି–

'ଝର ଝର ଝର ଝରି ଯାଉଅଛି  
ଝରଣାର ସ୍ୱଚ୍ଛ ନୀର,  
ଘନବନ ବେଶୀ ଘେରି ରହିଅଛି  
ଅରଣ୍ୟ ବନସ୍ତ ଘୋର ।  
ଆକାଶକୁ ଛୁଇଁ ହାତିଆ ପାହାଡ  
ରହିଅଛି ତୁନି ହୋଇ,  
ଅଦୂରେ ଚିଲିକା ମଥା ପିଟୁଥାଏ  
ନିତି ତରଙ୍ଗିତ ହୋଇ ।'

ବର୍ତ୍ତମାନ ମନ୍ଦିରର ରକ୍ଷଣାବେକ୍ଷଣ ଦାୟିତ୍ୱ ଦେବୋତ୍ତର ବିଭାଗ ନେଇଛି । ଏକ ପୁରାତନ ଶକ୍ତିପୀଠ ଓ ସୁନ୍ଦର ପର୍ଯ୍ୟଟନ ସ୍ଥଳୀ ହୋଇ ଥିବାରୁ ଏହାକୁ ଦେଖିବା ଲାଗି ଅନେକ ଶ୍ରଦ୍ଧାଳୁ ଏବଂ ପର୍ଯ୍ୟଟକ ଏଠାକୁ ପ୍ରତ୍ୟହ ଆସିଥାନ୍ତି । ମାଆଙ୍କର ସାନିଧ୍ୟ ସାଂଗକୁ ଏହାର ଦୃଶ୍ୟରାଜି ବାସ୍ତବରେ ଅପାଶୋରା ।

ଏମ୍.ଆଇ.ଜି.ଓ୍ୱାନ– ୪୨/୧  
ଚନ୍ଦ୍ରଶେଖରପୁର, ହାଉସିଂବୋର୍ଡ କଲୋନୀ  
ଭୁବନେଶ୍ୱର–୧୬



# ଜଙ୍ଗଲ ସଂରକ୍ଷଣରେ ଆମ ଭୂମିକା

ମହେନ୍ଦ୍ର କୁମାର ନାୟକ

ପ୍ରାଗ୍ ଐତିହାସିକ ଯୁଗରୁ ବନଭୂମି ସହ ପ୍ରାଣୀ ଜଗତର ସଂପର୍କ ରହି ଆସିଛି । ବନଭୂମିରେ ହିଁ ସଭ୍ୟତାର ପ୍ରଥମ ସୂର୍ଯ୍ୟୋଦୟ ହୋଇଥିଲା । ମନୁଷ୍ୟର କ୍ରମୋନ୍ନତି ସଭ୍ୟତା ସଂସ୍କୃତିର ପରିପୁଷ୍ଟ ପାଇଁ ବନର ଦାନ ମହାନ ଓ ଅବିସ୍ମରଣୀୟ । ଧରାପୃଷ୍ଠରେ ଯେତିକି ମୂଲ୍ୟବାନ ସଂପଦ ରହିଅଛି, ସେଥି ମଧ୍ୟରୁ ବନ୍ୟ ସଂପଦ ଅନ୍ୟତମ । କାନନ, କୁନ୍ତଳା, ତଟିନୀ, ମେଖଳା, ଏ ଧରାପୃଷ୍ଠ ବହୁ ପ୍ରାକୃତିକ ବିଭବରେ ପରିପୂର୍ଣ୍ଣ । ଏ ଧରାପୃଷ୍ଠର ବହୁ ଅଂଶ ନିବିଡ଼ ଅରଣ୍ୟାନୀ ଦ୍ୱାରା ସୁଶୋଭିତ । ଯେଉଁଠି ପକ୍ଷୀରାଜିର କଳକୂଜରେ ପ୍ରତି ସଂଗୀତ ମୁଖର ହୋଇଉଠେ, ଯେଉଁଠି ଗିରି ନିର୍ଝରିଣୀର କଳକଳ ନିନାଦ ମାନବ ପ୍ରାଣରେ ସାଙ୍ଗିତିକତା ଭରିଦିଏ, ଯେଉଁଠି ପ୍ରକୃତିର ଅପାସୋରା ସୌନ୍ଦର୍ଯ୍ୟ କବି ପ୍ରାଣରେ କବିତାର ଝଙ୍କାର ତୋଳେ, ସେହି ବନଭୂମି ହିଁ ଦିନେ ଆର୍ଯ୍ୟ ସଂସ୍କୃତିର ଆଦିପୀଠ ଥିଲା । ସଂସାର ବିରାଗୀ ତାପସ ଜୀବନରେ ଆଧ୍ୟାତ୍ମିକ ଅନୁଚିନ୍ତନର ଅନୁରାଗ ସୃଷ୍ଟି କରିଥିବା ଏହି ଜନ୍ମଭୂମି ଦିନେ ଅସଂଖ୍ୟ ଗୁରୁକୁଳାଶ୍ରମର ପାବନପୀଠ ରୂପେ ବୈଦିକ ସଂସ୍କୃତିକୁ ଋଦ୍ଧିମନ୍ତ କରିଥିଲା ।



ଭାରତବର୍ଷ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ବିଭବ ପାଇଁ ବିଶ୍ୱ ପ୍ରସିଦ୍ଧ ଅଟେ । ଏହି ଦେଶର ସଭ୍ୟତା ଓ ସଂସ୍କୃତି ଉପରେ ମଧ୍ୟ ପ୍ରକୃତିର ଗଭୀର ପ୍ରଭାବ ଦୃଷ୍ଟିଗୋଚର ହୁଏ । ଏ ଦେଶର ପ୍ରାକୃତିକ ସଂପଦ ଦ୍ୱାରା ଆକୃଷ୍ଟ ହୋଇ ଅନେକ ବୈଦେଶିକ ଜାତି ଏଠାକୁ ଆସି ସ୍ଥାୟୀ ଭାବରେ ବସବାସ କରିବାର ଲୋଭକୁ ସମ୍ବରଣ କରିପାରି ନାହାନ୍ତି । ସମଗ୍ର ପୃଥିବୀରେ ଭାରତ ଏକମାତ୍ର ଦେଶ ଯେଉଁଠାରେ ହଜାର ହଜାର ବର୍ଷ ପୂର୍ବେ ବୃକ୍ଷରେ ଦେବତ୍ୱ ଆରୋପ କରାଯାଇ ପୂଜା କରାଯାଉଥିଲା । ଭାରତୀୟ ମୁନିଋଷିମାନେ ପ୍ରତ୍ୟେକ ବୃକ୍ଷଲତାର ଔଷଧୀୟ ଗୁଣ ଆବିଷ୍କାର କରି ତାହାକୁ ଜୀବନ ରକ୍ଷାର ପ୍ରଧାନ ଉପାଦାନ ରୂପେ ଗ୍ରହଣ କରିଥିଲେ । ଏଣୁ ବୃକ୍ଷଲତା କାଟିବା କିମ୍ବା ନଷ୍ଟ କରିବା ପାପ ବା ଅପରାଧ ରୂପେ ଗଣ୍ୟ ହେଉଥିଲା । କିନ୍ତୁ ଅନାବଶ୍ୟକ ବୃକ୍ଷଲତା ବା ଘନ ଅରଣ୍ୟକୁ ନଷ୍ଟ କରି ମନୁଷ୍ୟ କ୍ରମଶଃ ନିଜର ଉପକାର ସାଧନାରେ ଅଗ୍ରସର ହେଲା । ବର୍ତ୍ତମାନ ତା'ର କୁପ୍ରଭାବ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଅନୁଭୂତ ହେଉଛି ।

ସବୁଜିମା ଘେରା ଅରଣ୍ୟର ଶୋଭା ସୁଷମା ଯେ କେବଳ ମନ ମୁଗ୍ଧକର ତାହା ନୁହେଁ, ବରଂ ଏହାର ଶୋଭା ସୁଷମା ରାଶିର ଅନ୍ତରାଳରେ ଯେ କେତେ ସଂପଦ ଲୁକ୍କାୟିତ ରହିଅଛି ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ମାନବର ଜୀବନ ଧାରାକୁ ବହୁଳ ଭାବରେ ପ୍ରଭାବିତ କରୁଥିବା ଏହି ଅରଣ୍ୟ ସଂପଦ ପୃଥିବୀର ଅନ୍ୟାନ୍ୟ ସଂପଦଠାରୁ

ନିଶ୍ଚିତ ଭାବେ ମହାର୍ଘ, ଏଥିରେ ଦ୍ୱିମତ ନାହିଁ । ଅରଣ୍ୟ ଲବ୍ଧ ଯାବତୀୟ ଦୁଷ୍ପ୍ରାପ୍ୟ ବସ୍ତୁ ମନୁଷ୍ୟ ସମାଜକୁ ପ୍ରାପ୍ତ ହୋଇ ଏହାର ଅନେକ ସମସ୍ୟାକୁ ସମାଧାନ କରିବା ଦିଗରେ ସହାୟତା ପ୍ରଦାନ କରୁଛି । ଏହି ପରିପ୍ରେକ୍ଷୀରେ ବନ୍ୟ ସଂପଦ ସର୍ବଜନ ବିଦିତ ।

ବନଭୂମି ବହୁ ପ୍ରାକୃତିକ ଦୃଶ୍ୟ ସମ୍ଭାରରେ ପରିପୂର୍ଣ୍ଣ । ନାନାଦି ଲତା, ଦ୍ରୁମ, ଉଚ୍ଚ ପାହାଡ଼, ପର୍ବତ ଓ କଳ କଳ ନାଦିନୀ ନିର୍ଝରିଣୀର ଭୀମକାନ୍ତ ଦୃଶ୍ୟ ଦର୍ଶକ ପ୍ରାଣରେ ଯୁଗପତ୍ ଭୟ ଓ ଆନନ୍ଦ ସଂଚାର କରିଥାଏ । ନାନାଦି ପଶୁ, ପକ୍ଷୀ ସରୀସୃପଙ୍କର ଏହା ହେଉଛି ଅବାଧ କ୍ରୀଡ଼ାଭୂମି । ସଭ୍ୟତାର ଆଖି ଝଲସିଆ ଅସତ୍ୟ ସହର ଭିତରୁ ବାହାରି ଆସି ବନଭୂମିରେ ପାଦଦେଲେ ମଣିଷ ଅନୁଭବ କରେ ନିଜ ଅସ୍ତିତ୍ୱର ଅସାରତା ଏବଂ ତା'ର ଅହଂକାର ଭାଙ୍ଗି ଚୁରମାର ହୋଇଯାଏ ।

ଅରଣ୍ୟ ହେଉଛି ସଂପଦର ଗନ୍ତାଘର । କାଠ ହେଉଛି ଅରଣ୍ୟ ଜାତ ସଂପଦ ମଧ୍ୟରେ ପ୍ରଧାନ । ଶାଳ, କୁରୁମ, ଶାଗୁଆନ, ପିଆଶାଳ, ଚନ୍ଦନ, ଶିଶୁ, ହରିଡ଼ା, ବାହାଡ଼ା, ଅଁଳା, ବାଉଁଶ, ଚମ୍ପା ଭଳି ବହୁ ମୂଲ୍ୟବାନ କାଠ, ଆମ୍ବ, ପଣସ ଜାମୁକୋଳି, କେନ୍ଦୁ, କମଳା, ହରିଡ଼ା, ବେଲ, ଲେମ୍ବୁ, ମହୁ ପିଜୁଳି, କରଞ୍ଜ, କଣ୍ଟାକୋଳି ଇତ୍ୟାଦି ଫଳ ଲାଖ, ଝୁଣା, ମହୁ ଭଳି ବିଭିନ୍ନ ଛେଲି ଇତ୍ୟାଦି ବହୁ ମୂଲ୍ୟବାନ ଦ୍ରବ୍ୟ, ବାଘ, ଭାଲୁ, ସିଂହ, ହରିଣ, ସମ୍ବର, ଜିଆଦ, ହାତୀ, ମାଙ୍କଡ଼, ଗଣ୍ଡା, ମୟୂର, ଶୁଆ, ଶାରୀ, ଶାଗୁଣା, କୋଚିଲାଖାଇ ଭଳି ପଶୁପକ୍ଷୀ କେନ୍ଦୁପତ୍ର, ସବାଇ ଘାସ, ମହୁଲ ଓ ଔଷଧୀୟ ବୃକ୍ଷ ତଥା ବକ୍ସାଇଟ୍, ଲୁହାପଥର ଓ ଆଲୁମିନିୟମ୍ ମଧ୍ୟ ଏହି ଜଙ୍ଗଲରୁ ହିଁ ମିଳେ । ପରୋକ୍ଷ ଭାବରେ ଅରଣ୍ୟ ଜଳବାୟୁ ଓ ବୃଷ୍ଟିପାତକୁ ପ୍ରଭାବିତ କରିବା ସଂଗେ ସଂଗେ ଝଡ଼ ବାତ୍ୟାର ବେଗ ହ୍ରାସ କରେ । ଅରଣ୍ୟ, ମୃତ୍ତିକା କ୍ଷୟ ନିରୋଧ କରେ, ମୃତ୍ତିକାର ଉର୍ବରତା ବୃଦ୍ଧି କରେ ଏବଂ ଦୀର୍ଘକାଳ ଧରି ଜଳୀୟ ଅଂଶ ଧାରଣ କରିପାରେ । ହିସାବ କରି ଦେଖାଯାଇଛି ଯେ, ଗୋଟିଏ ସାଧାରଣ ଆକାରର ବୃକ୍ଷ ତା'ର ଜୀବନକାଳ ମଧ୍ୟରେ ଆମକୁ ପ୍ରାୟ ଅଢ଼େଇ ଲକ୍ଷ ଟଙ୍କାର ଅମ୍ଳଜାନ ଦେଇପାରେ ।

ଯେକୌଣସି ଦେଶର ସମୁଦାୟ ଭୂଖଣ୍ଡ ଅନ୍ତତଃ ଏକ ତୃତୀୟାଂଶ ଅରଣ୍ୟ ଦ୍ୱାରା ଆଚ୍ଛାଦିତ ହେବା ଆବଶ୍ୟକ । ଫଳତଃ ତାହା ପରିସଂସ୍ଥାନୀୟ ସନ୍ତୁଳନ ରକ୍ଷା କରିବାରେ ସହାୟକ ହୋଇଥାଏ ମାତ୍ର ଆଜିକାଲି ଲୋକମାନେ ବିଚାରହୀନ ଭାବରେ ଅରଣ୍ୟକାଟି ସଫାକରି ଚାଲିଛନ୍ତି । ଅରଣ୍ୟର ପରିମାଣ ହ୍ରାସ ପାଉ ଥିବାରୁ କାଳକ୍ରମେ ପୃଥିବୀପୃଷ୍ଠ ଏକ ଅନୁର୍ବର, ଜୀବହୀନ ମରୁଭୂମିରେ ପରିଣତ ହେବାକୁ ଯାଉଛି ।

ବାସ୍ତବରେ ଅରଣ୍ୟ ଏକ ମୂଲ୍ୟବାନ ସଂପଦ । କିନ୍ତୁ ଏହି ମୂଲ୍ୟବାନ ସଂପଦ ଥାଉ ଥାଉ ମଧ୍ୟ ପ୍ରାକୃତିକ ଅଭିସମ୍ପାତରୁ ହେଉ ବା ମନୁଷ୍ୟକୃତ ଦୁର୍ବିପାକ ଯୋଗୁଁ ହେଉ ଆଜି ଧରାପୃଷ୍ଠରେ ହାହାକାର ।

ପରିବେଶକୁ ଶୁଦ୍ଧ କରିବାରେ ବୃକ୍ଷମାନଙ୍କ ଯୋଗଦାନ ସର୍ବୋପରି । ଅଶୁଦ୍ଧ ଅଙ୍ଗାରକାମ୍ଳ ଗ୍ରହଣ କରି ଅମ୍ଳଜାନ ପ୍ରସ୍ତୁତ କରିବା ସେମାନଙ୍କ ମୁଖ୍ୟ କାର୍ଯ୍ୟ। ଶୁଦ୍ଧବାୟୁ ମାନବ ଜୀବନ ପାଇଁ ନିତାନ୍ତ ଆବଶ୍ୟକ। । ବାତାବରଣର ଉତ୍ତାପକୁ ମଧ୍ୟ ବୃକ୍ଷ ନିୟନ୍ତ୍ରଣ କରେ । ବୃକ୍ଷଲତାରୁ ଜୀବନର ରକ୍ଷାକାରୀ ଅମୂଲ୍ୟ ଔଷଧ ପ୍ରସ୍ତୁତ ହୁଏ । ଏତଦ୍‌ବ୍ୟତୀତ ବୃକ୍ଷର ଫଳ ମନୁଷ୍ୟର ଏକ ଶ୍ରେଷ୍ଠ ପ୍ରାକୃତିକ ଖାଦ୍ୟ । ବୃକ୍ଷ ବା ଅରଣ୍ୟର ସବୁଠାରୁ ବଡ଼ ଉପକାରିତା ହେଉଛି ବର୍ଷା କରାଇବା । ଅରଣ୍ୟ ଅଭାବରେ ବର୍ଷା ହୁଏ ନାହିଁ । ବର୍ଷା ଅଭାବରୁ ଭୂମି ଅନୁର୍ବର ଓ ବାଲୁକାମୟ ହୋଇଯାଏ । ଫଳତଃ ଉପାଦାନ କମିଯାଏ ଏବଂ ତାହା ଦେଶର ଅର୍ଥନୈତିକ ବିଭ୍ରାଟ ସୃଷ୍ଟି କରେ ।

ସୃଷ୍ଟିର ଶ୍ରେଷ୍ଠ ଜୀବ ମନୁଷ୍ୟ । ସୃଷ୍ଟିର ବିକାଶ ନିମନ୍ତେ ତା'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସୁଖ,ଶାନ୍ତି, ମୈତ୍ରୀ, ପ୍ରୀତି ଓ ନିରାମୟ ଜୀବନଯାପନ ପ୍ରତ୍ୟେକ ମାନବ ଜୀବନର ଲକ୍ଷ୍ୟ, ମାତ୍ର ସ୍ୱାର୍ଥପର ମାନବ ଆଜି ସଭ୍ୟତାକୁ ଧ୍ୱଂସ କରିବାକୁ କୁଂଠାବୋଧ କରୁନି । ଜଗନ୍ନାଥ ଦାସଙ୍କ ଭାଷାରେ :

ଆପଣା ହସ୍ତେ ଜିହ୍ୱା ଛେଦୀ
କେ ଅଛି ତାର ପ୍ରତିବାଦୀ ।

ବିଜ୍ଞାନ ବଳରେ ମନୁଷ୍ୟ ଆଜି ବଳୀୟାନ ସତ, ଭସ୍ମାସୁର ସାଜି ସେ ହିଁ ବିଜ୍ଞାନର ଦୂରୁପଯୋଗ କରି ମାନବ ସଭ୍ୟତାକୁ ବିପର୍ଯ୍ୟସ୍ତ କରିବାକୁ ପ୍ରୟାସ କରୁଛି । ଶିଳ୍ପାୟନ, ଜନସଂଖ୍ୟାର ବୃଦ୍ଧି, ଅରଣ୍ୟ ସଂପଦର ଅବକ୍ଷୟ, ଆଜି ମାନବର ଅମୃତମୟ ପରିବେଶକୁ ଦୂଷିତ କରୁଛି ।

ଭାରତର ଭୂଭାଗର ଶତକଡ଼ା ପ୍ରାୟ ୨୩% ଭାଗ ବନ୍ୟ ସଂପଦରେ ଆଚ୍ଛାଦିତ ହୋଇଥିବା ବେଳେ ଓଡ଼ିଶାର ଶତକଡ଼ା ୩୨% ଭାଗ ଭୂମି ବନ୍ୟ ସଂପଦରେ ଆଚ୍ଛାଦିତ। ଅରଣ୍ୟ ସଂପଦର ଗନ୍ତାଘର ହୋଇଥିବାରୁ ସରକାର ତାକୁ ବିଭିନ୍ନ ଭାଗରେ ବିଭକ୍ତ କରିଛନ୍ତି । ଯଥା– ସଂରକ୍ଷିତ ଜଙ୍ଗଲ, ସୁରକ୍ଷିତ ଜଙ୍ଗଲ, ଗ୍ରାମ୍ୟ

ଜଙ୍ଗଲ, ପତ୍ରା ଜଙ୍ଗଲ ଇତ୍ୟାଦି । ଏଥି ନିମନ୍ତେ ସରକାର ଏହି ଜଙ୍ଗଲ ସଂପଦର ସୁରକ୍ଷା ପାଇଁ ଜଙ୍ଗଲ ବିଭାଗ, ବିଭାଗୀୟ ମନ୍ତ୍ରୀ ଓ ଜନସାଧାରଣଙ୍କ ମଧ୍ୟରେ ବନ ସୁରକ୍ଷା କମିଟିମାନ ଗଠନ କରିଛନ୍ତି । ଜାତୀୟ ସ୍ତରରେ ମଧ୍ୟ ଜଙ୍ଗଲ ସଂପଦର ସୁରକ୍ଷା ପାଇଁ ୧୯୫୨ ମସିହାଠାରୁ ବିଭିନ୍ନ ଆଇନ୍ କାର୍ଯ୍ୟକାରୀ ହେଉଛି । ଅରଣ୍ୟ ସଂପଦର ଉପାଦେୟତା ଉପଲବ୍ଧି କରି ଯୋଜନାରେ ଏଥିପ୍ରତି ବିଶେଷ ଗୁରୁତ୍ୱାରୋପ କରାଯାଇଛି । ବିଭିନ୍ନ ଯୋଜନା ମାଧ୍ୟମରେ ଜଙ୍ଗଲର ସୁରକ୍ଷା ଓ ତତ୍ତ୍ୱାବଧାନ ନିମନ୍ତେ ବିଭିନ୍ନ ଆଇନ୍ କାର୍ଯ୍ୟକାରୀ ହେଉଅଛି । କିନ୍ତୁ ସମସ୍ତ ସୁବିଧା ସୁଯୋଗ ଓ ଉପକାର ଲାଭ କରି ମନୁଷ୍ୟ ବହୁ ଦିଗରୁ ଲାଭବାନ ହେଉଥିଲେ ମଧ୍ୟ ଅରଣ୍ୟ ପ୍ରତି ତାର ଉପଯୁକ୍ତ ଯତ୍ନ ନେଇପାରୁ ନାହିଁ । ଉପଯୁକ୍ତ ଯତ୍ନ ନେବା ତ ଦୂରର କଥା ଅରଣ୍ୟର ଶୋଭା ରାଶିକୁ ଖିନ୍ନଭିନ୍ନ କରି ଅରଣ୍ୟର ବୃକ୍ଷ ଛେଦନରେ ବ୍ୟସ୍ତ ରହୁଛି । ନିଜ ସ୍ୱାର୍ଥ ଓ କାମନାକୁ ସାକାର କରିବାକୁ ଯାଇ ଅରଣ୍ୟ ପଦା କରିବାରେ ଲାଗିଛି । ଜଙ୍ଗଲ କଟା ତଥା ହାନି ଫଳରେ ଅରଣ୍ୟଜାତ ଦ୍ରବ୍ୟଗୁଡ଼ିକ କ୍ରମଶଃ ଦୁଷ୍ପ୍ରାପ୍ୟ ହୋଇଯାଉଛି । ବୃଷ୍ଟିପାତ ହ୍ରାସ ପାଉଛି ଓ ବାୟୁ ମଣ୍ଡଳର ତାପମାତ୍ରାରେ ତାରତମ୍ୟ ଘଟି ଜଳବାୟୁ ପରିବର୍ତ୍ତନ ହୋଇଯାଉଛି ।

ଓଡ଼ିଶାର ବନ୍ୟ ସଂପଦ ଯୋଗୁଁ ଆଜି ଓଡ଼ିଶା ଭୂଇଁ ବିଶ୍ୱ ଦରବାରରେ ପରିଚିତ । ଓଡ଼ିଶାରେ ଉତ୍ପନ୍ନ ବନ୍ୟ ସଂପଦ ଆଜି ଦେଶ ବିଦେଶରେ ରପ୍ତାନୀ ହେଉଅଛି । ଓଡ଼ିଶା ପ୍ରକୃତିର ଗନ୍ତାଘର । ଏହାର ପ୍ରାକୃତିକ ପରିବେଶ ମଧ୍ୟରେ ବହୁ ଅରଣ୍ୟ ସଂପଦ ପୂରି ରହିଛି । କିନ୍ତୁ ସଭ୍ୟତାର ବିକାଶ ସହିତ ବନଭୂମିର ଧ୍ୱଂସ ସାଧନ ମାନବ ଜାତି ପାଇଁ ଏକ ଅଭିଶାପ । ଜନସଂଖ୍ୟାର କଳ୍ପନାତୀତ ବୃଦ୍ଧି ସହିତ ବାସଗୃହ ଓ ଚାଷ ଜମିର ଆବଶ୍ୟକତା ପାଇଁ ମନୁଷ୍ୟ ଆଜି ଜଙ୍ଗଲ ଧ୍ୱଂସ କରୁଛି । ବନାଞ୍ଚଳରେ ବାସ କରୁଥିବା ଅଧିବାସୀ ପୋଡୁଚାଷ ପାଇଁ ଜଙ୍ଗଲ ସଫା,ଶରଣାର୍ଥୀ ଥଇଥାନ, ବିଭିନ୍ନ ନଦୀବନ୍ଧ ଯୋଜନା, ରେଳପଥ, କଳକାରଖାନା, ସହର ନିର୍ମାଣ ଭୂମିହୀନମାନଙ୍କୁ ଜମି ପ୍ରଦାନ ତଥା କାଠ ମାଫିଆମାନଙ୍କ ବେଆଇନ୍ ଗଛକଟା ଫଳରେ ପ୍ରକୃତିର ଗନ୍ତାଘର ଓଡ଼ିଶା ଆଜି ମରୁଭୂମି ପାଲଟି ଯାଉଛି । ଫଳରେ ଓଡ଼ିଶାରେ ଆଜି ଅନିୟମିତ ବୃଷ୍ଟିପାତ ମାଟିର ଉର୍ବରତା ହ୍ରାସ ମୃତ୍ତିକା କ୍ଷୟ ବନ୍ୟା ସମସ୍ୟା, ଖାଦ୍ୟ ସମସ୍ୟା ଓ ବର୍ଷାଭାବ ଦେଖାଯାଉଅଛି । ବାସ୍ତବରେ ଉତ୍କଳରେ ଅନ୍ନର ଅଭାବ ନାହିଁ, ଏଠାରେ କେବଳ ଅଛି ଉଦ୍ୟମର ଅଭାବ ।

ଅରଣ୍ୟ ସମସ୍ତ ସଂପଦଠାରୁ ଅତୁଳନୀୟ । ତେଣୁ ବାସ୍ତବରେ ବୃକ୍ଷଲତା ମାନବ ସମାଜର ପରମ ବନ୍ଧୁ । ଏହାର ରକ୍ଷଣାବେକ୍ଷଣ ପ୍ରତ୍ୟେକ ନାଗରିକଙ୍କ କର୍ତ୍ତବ୍ୟ ହେବା ଉଚିତ୍ । ଅରଣ୍ୟ ସଂପଦର ସଦ୍‌ବ୍ୟବହାର ଓ ସଂରକ୍ଷଣ ହୋଇପାରିଲେ ଦେଶ ତଥା ରାଜ୍ୟର ଆର୍ଥିକ ଅବସ୍ଥା ଦୃଢ଼ ହେବ । ଯେହେତୁ ଅରଣ୍ୟ ହେଉଛି ଦେଶର ପ୍ରଧାନ ସଂପଦ, ତେଣୁ ସମସ୍ତ ବିପଦକୁ ଏଡ଼ାଇ ଦେବା ପାଇଁ ହେଲେ ଆମ ସମସ୍ତଙ୍କର ମିଳିତ ଉଦ୍ୟମର ଆବଶ୍ୟକତା ରହିଛି । ଏଥିପାଇଁ ବେଳୁ ହିଁ ସାବଧାନ ଓ ସଚେତନ ହେବା ଉଚିତ୍ । ତେଣୁ ୧୯୫୦ ମସିହାଠାରୁ ପାଳନ ହେଉଥିବା ବନ ମହୋତ୍ସବକୁ ତ୍ୱରାନ୍ୱିତ କରି ବନ ସଂରକ୍ଷଣ, ମୃତ୍ତିକା ସଂରକ୍ଷଣ, ସାମାଜିକ ବନୀକରଣ ତଥା ବୃକ୍ଷରୋପଣ ଆଦି କାର୍ଯ୍ୟକ୍ରମର ସଫଳ ରୂପାୟନ କରିବା ଉଚିତ୍ । ଜଙ୍ଗଲ ବିଭାଗୀୟ କର୍ମଚାରୀ ତଥା ପ୍ରତ୍ୟେକ ନାଗରିକଙ୍କ ମିଳିତ ଉଦ୍ୟମରେ ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର, ପତିତ ଜମି, କୃଷି କ୍ଷେତର ହିଡ଼, ରେଳରାସ୍ତା ପାଖ, ସମୁଦ୍ରକୂଳ ଭଳି ଅନାବଶ୍ୟକ ଭାବରେ ପଡ଼ି ରହିଥିବା ଖାଲି ସ୍ଥାନରେ ଯଦି ବୃକ୍ଷ ରୋପଣ କରାଯାଇପାରନ୍ତା ତାହାହେଲେ କବିବର ରାଧାନାଥ ରାୟ, ପ୍ରକୃତି କବି ଗଙ୍ଗାଧର ମେହେର, ଉତ୍କଳମଣି ଗୋପବନ୍ଧୁ ଦାଶ, ଗୋଦାବରୀଶ ମିଶ୍ର ଓ ନନ୍ଦକିଶୋର ବଳ ପ୍ରମୁଖ କବିଗଣ ଓଡ଼ିଶାର ପ୍ରକୃତିରେ ବିମୁଗ୍ଧ ହୋଇ ନିଜ ନିଜର କାବ୍ୟ କବିତାରେ ଯାହା ରୂପାୟିତ କରିଥିଲେ, ଆଧୁନିକ ଓଡ଼ିଶାରେ ମଧ୍ୟ ତା'ର ପୂର୍ବ ଗୌରବ ଫେରିପାଆନ୍ତା ।

ତେଣୁ ସୌନ୍ଦର୍ଯ୍ୟମୟୀ ଧରାଭୂମିର ପୂର୍ବ ଗୌରବକୁ ଫେରି ପାଇବାକୁ ହେଲେ ଅରଣ୍ୟ ସଂପଦର ରକ୍ଷଣାବେକ୍ଷଣ ନିତାନ୍ତ ଆବଶ୍ୟକ। ଏଥିପାଇଁ ସରକାର ତଥା ଜନସାଧାରଣଙ୍କ ସହଯୋଗ ଓ ପ୍ରଚେଷ୍ଟା ଏକାନ୍ତ କାମ୍ୟ । ରାଜ୍ୟବାସୀ ତଥା ଦେଶବାସୀ ସକ୍ରିୟ ସହଯୋଗ ପ୍ରଦାନ କରି ସରକାରଙ୍କ ଜଙ୍ଗଲ ସୁରକ୍ଷା ଲୋକ ହିତକର ବୃହତ୍ତର କାର୍ଯ୍ୟକ୍ରମକୁ ସଫଳ କରାଇବା ଉଚିତ । ଗଛକଟା ପାଇଁ ପ୍ରଚଳିତ କଡ଼ାକଡ଼ି ନିୟମଗୁଡ଼ିକୁ ସମ୍ମାନ ଦେଇ ଦେଶବାସୀ ସହଯୋଗର ହାତ ବଢ଼ାଇବା ଉଚିତ । ଯେତିକି ମାତ୍ରାରେ ଜଙ୍ଗଲ ଧ୍ୱଂସ କରାଯାଇଛି, ସେହି ମାତ୍ରାରେ ପ୍ରତ୍ୟେକ ନାଗରିକ ବୃକ୍ଷରୋପଣ କରିବା ଉଚିତ । ଅସାଧୁ ବ୍ୟବସାୟୀ, କାଠ ମାଫିଆ ତଥା ମୂଲ୍ୟବାନ ଜଙ୍ଗଲ ନଷ୍ଟ କରୁଥିବା ଗୋଷ୍ଠୀ ବିଶେଷଙ୍କୁ ଜଙ୍ଗଲ ଧ୍ୱଂସରୁ ନିବୃତ୍ତ ରହିବା ପାଇଁ ସଚେତନ କରାଇବା ଉଚିତ ।

ପ୍ରତ୍ୟେକ ବ୍ୟକ୍ତି ଜଙ୍ଗଲରୁ ଉପକାରିତା ବିଷୟରେ ହୃଦୟଙ୍ଗମ କରି ଜଙ୍ଗଲ ସୁରକ୍ଷା ନିମନ୍ତେ କିଛି କିଛି କାର୍ଯ୍ୟକ୍ରମ

ହାତକୁ ନେବା ଉଚିତ । ଜଣେ ଛାତ୍ର ବିଦ୍ୟାଳୟରେ, ମହାବିଦ୍ୟାଳୟରେ, ଜଣେ ସରକାରୀ କର୍ମଚାରୀ କାର୍ଯ୍ୟାଳୟରେ, ଜଣେ ଲୋକ ପ୍ରତିନିଧି ନିଜ ଅଞ୍ଚଳରେ, ଜଣେ ସଚେତନ ନାଗରିକ ନିଜ ଘରେ, ସାମାଜିକ କ୍ଷେତ୍ରରେ ତଥା ନିଜ ନିଜ ଗ୍ରାମରେ ବୃକ୍ଷ ରୋପଣ ପାଇଁ ସଚେତନ କରାଇବା ଉଚିତ । ବୃକ୍ଷକୁ ଗୋଟିଏ ପ୍ରାଣୀ ଭାବି ତାହାର ଯତ୍ନ ନେବା ଉଚିତ । ପ୍ରତ୍ୟେକ ନାଗରିକ ଯେତିକି ବୃକ୍ଷ ଦରକାର କରୁଛନ୍ତି, ସେହି ପରିମାଣଠାରୁ ଅଧିକା ବୃକ୍ଷ ରୋପଣ କରିବା ଉଚିତ । ତେବେ ଆମର ଜନସଂଖ୍ୟା ବୃଦ୍ଧି ସାଙ୍ଗକୁ ଲୋକର ଚାହିଦା ମୁତାବକ ଅରଣ୍ୟ ମଧ୍ୟ ସୃଷ୍ଟି ହୋଇପାରିବ । ନିଜ ନିଜର ଚାହିଦା ପାଇଁ ଦେଶର ବୁଦ୍ଧିଜୀବୀମାନେ ସଂରକ୍ଷିତ ରଖିବା ଜଙ୍ଗଲରୁ ଗଛ ନ କାଟି ଆବଶ୍ୟକ ନଥିବା ଭୂମିରେ ଜଙ୍ଗଲ ସୃଷ୍ଟି କରି ତହିଁର ଗଛକୁ ନିଜ ବ୍ୟବହାରରେ ଲଗାଇବା ଉଚିତ । ସଂରକ୍ଷିତ ମୂଲ୍ୟବାନ ସଂପଦକୁ ଅନାବଶ୍ୟକ କାର୍ଯ୍ୟରେ ନ ଲଗାଇବା ଉଚିତ । ତେବେ ଜୀବନର ରକ୍ଷାକାରୀ ସଂରକ୍ଷିତ ବୃକ୍ଷ ଯୁଗ ଯୁଗ ଧରି ପ୍ରାଣୀର ସେବାରେ ଆସିପାରିବ । ପ୍ରାକୃତିକ ସଂପଦର ଏକ ଅକ୍ଷୟ ଭଣ୍ଡାର ବନ୍ୟ ସଂପଦର ବିକାଶ ଓ ସୁରକ୍ଷା ଦିଗରେ ଧ୍ୟାନ ଦେଇ ଆମେ ସମସ୍ତେ ମିଳିତ ଉଦ୍ୟମ କରିବା ଉଚିତ । ମଣିଷର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ରରେ ଜଙ୍ଗଲଜାତ ଦ୍ରବ୍ୟ ହିଁ ଦରକାର । ତେଣୁ ଏହି ଜୀବନ ରକ୍ଷା ସର୍ବହିତକାରୀ ଅରଣ୍ୟର ସୁରକ୍ଷା ପାଇଁ ଭାରତର ଜନସାଧାରଣ ତଥା ପ୍ରତ୍ୟେକ ନାଗରିକଙ୍କ ସହଯୋଗ ଓ ପ୍ରଚେଷ୍ଟା ଏକାନ୍ତ କାମ୍ୟ । ପ୍ରତ୍ୟେକ ନାଗରିକ, ଜଙ୍ଗଲ ସୁରକ୍ଷା, ଆମର ଦୀକ୍ଷା, ବୃକ୍ଷ ହିଁ ଆମର ବନ୍ଧୁ, ସାମାଜିକ ବନୀକରଣ ହିଁ ସମାଜର ସୁରକ୍ଷା କବଚ ସ୍ଲୋଗାନ ପାଳନ କରିବା ଉଚିତ । ଯାହା ଫଳରେ ଦେଶର ଅର୍ଥନୈତିକ ଅଭିବୃଦ୍ଧି ତଥା ଗୋଷ୍ଠୀ ଉନ୍ନୟନ ସଂପର୍କରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ବିଚାର ଧାରା ଫଳବତୀ ହୋଇପାରିବା ସହ ଧ୍ୱଂସମୁଖୀ ମାନବ ସଭ୍ୟତା ଯୁଗ ଯୁଗ ଧରି ତିଷ୍ଠି ରହି ପାରିବ ।

''ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ,
ଉତ୍କଳ ଭୂମିକୁ ସବୁଜ ରଖିବା ଆମେ ସମସ୍ତେ ମିଶି ।''

ନେହରୁ ଯୁବ କେନ୍ଦ୍ର, ନବରଙ୍ଗପୁର
ଗାଦବା ସାହି, ନବରଙ୍ଗପୁର

# ସ୍ୱର୍ଣ୍ଣପ୍ରସୂ ଉତ୍କଳ

ସୁଚିତ୍ରା ବେହେରା

ଉତ୍କଳ ମାଟିରୁ ମୁଠାଏ ସ୍ୱର୍ଣରେ
ପ୍ରାଣ ପୁଲକିତ ତା'ର ମଧୁର ବାସରେ
ଦେଖି ଲୋଚନ ହଜିଯାଏ ପୂରେ
ସବୁଜିମାମୟ ପ୍ରାକୃତିକ ସୁଷମାରେ ।

ଉତ୍କଳର ବୀର ତ୍ୟାଗୀ ପୁରୁଷ
ଅଭୁଲା ଅକ୍ଷୟ ତା'ର ଅତୀତ ଯଶ
ବିପ୍ଳବ ବଳେ କରି ଅନ୍ୟାୟ ଶେଷ
ଉତ୍କଳୀୟ ପ୍ରାଣେ ଭରିଛି ସାହସ ।

ଧର୍ମ ପରାୟଣା ଯେତେ ନାରୀ ଉତ୍କଳରେ
ଓଷାବ୍ରତେ ପୁଣ୍ୟ ଲଭେ ଜନ୍ମଜନ୍ମାନ୍ତରେ
ପତି ପ୍ରତି ପ୍ରୀତି ପବିତ୍ର ମାନସ ପଟରେ
ସେବା ଭକ୍ତିଭାବ ତା'ର ନିତ୍ୟ ନିରନ୍ତରେ ।

ଉତ୍କଳୀୟ କଳା-ସଂସ୍କୃତି ବିଭବରେ
ମନ ବିମୋହିତ ସବୁ ଦେଶ ବିଦେଶରେ
ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ
ଭରିଯାଏ ଆତ୍ମା କଳାଠାକୁର ପ୍ରୀତିରେ ।

କବି କବିତ୍ୱର ଲେଖନୀ ଧାରେ
ଉତ୍କଳ ଗାଥାର ବର୍ଣ୍ଣନା ଭରେ
ମହନୀୟ କୀର୍ତ୍ତି- ଐତିହ୍ୟ ରାଜିରେ
ବିମଣ୍ଡିତ ନଗ୍ର ଉତ୍କଳ ଖଣ୍ଡରେ ।

ଉତ୍କଳୀୟ ଭାଷା ମଧୁଠୁଁ ମଧୁର
ଶାନ୍ତି-ମୈତ୍ରୀ-ଐକ୍ୟ କରେ ଏକାକାର
ଅମୂଲ୍ୟ ସମ୍ପଦ ସବୁ ଯେତେ ଭରପୂର
ନୁହେଁ କେହି ସମ ସ୍ୱର୍ଣ୍ଣପ୍ରସୂ ଉତ୍କଳର ।

ବ୍ରହ୍ମେଶ୍ୱର ପାଟଣା
ପ୍ଲଟ୍ ନଂ- ୧୩୬/୮୫୦, ଭୁବନେଶ୍ୱର-୧୮

# ଘଣ୍ଟ ପର୍ବ

ଡ଼କ୍ଟର ପ୍ରମୋଦିନୀ ହୋତା

ଛଅ ଶହ ବର୍ଷ ପୂର୍ବେ ନାରାୟଣ ପାଟଣାରେ ରାଜ ପରିବାର ବାସ କରୁଥିଲେ । ଅନେକ ବର୍ଷ ପରେ ରାଣୀଙ୍କ ଔରସରୁ ଗୋଟିଏ ଲାଙ୍ଗୁଡ଼ ଥିବା ପୁତ୍ର ଜାତ ହେଲା । ବଡ଼ ହେବା ପରେ ସେହି ପୁତ୍ର ଆଡ୍ମା ପର୍ବତ ଆଡ଼କୁ ଚାଲିଗଲା । ରାଜାଙ୍କର ୧୦୮ ଜଣ ରାଣୀ ଥିଲେ ଓ ସେମାନଙ୍କ ଔରସରୁ ପୁତ୍ର ସନ୍ତାନ ଜନ୍ମ ନେଲେ । ରାଜାଙ୍କର ମୃତ୍ୟୁ ପରେ ପ୍ରଥମେ ନାରାୟଣ ପାଟଣାରୁ ନନ୍ଦପୁର ଆସି ରାଜ୍ୟ ଶାସନ କଲେ । ପରବର୍ତ୍ତୀ ସମୟରେ ସେ ଜୟପୁର ସମସ୍ଥାନ୍ (ରାଜ୍ୟ)କୁ ଚାଲିଆସି ରାଜତ୍ୱ କଲେ । ରାଜାଙ୍କ ଇଷ୍ଟ ଦେବୀ ଥିଲେ ଗଡ଼ଚଣ୍ଡି । ସେ ହେଉଛନ୍ତି ରାଜାଙ୍କ ନାରାୟଣ ପାଟଣାର ଗଡ଼ ରକ୍ଷାକର୍ତ୍ତ୍ରୀ ଏବଂ ଆରାଧ ଦେବୀ । ଗଡ଼ଚଣ୍ଡିଙ୍କର ଦୁଇ ଭଉଣୀ । ବଡ଼ ଭଉଣୀଙ୍କ ଝିଅ ହେଲେ ଚଇତ୍ରାଇ ଏବଂ ବୁଢ଼ୀ ଠାକୁରାଣୀ ଚୈତ୍ରାଇ । ଦେବୀଙ୍କ ଭଉଣୀମାନେ ହେଲେ ଅଗ୍ନି କୁମାରୀ, ଦୁଇ ଜଣ ସାରିଆ ପାଲମା । ବୁଢ଼ୀ ଠାକୁରାଣୀଙ୍କ ଆଠ ଜଣ ଭଉଣୀ । ଚୈତ୍ରାଇ ହେଉଛନ୍ତି ରକ୍ଷାକର୍ତ୍ତ୍ରୀ । ତେଣୁ ସେ ବାଉଁଶ ବୁଦା ମୂଳରେ ଖଣ୍ଡା ରୂପରେ ପୂଜା ପାଇଥାନ୍ତି । 'ଘଣ୍ଟ ପର୍ବ' ହିନ୍ଦୁ ନବ ବର୍ଷର ଦ୍ୱିତୀୟ ସପ୍ତାହର ସୋମବାର ଦିନରେ ଆରମ୍ଭ ହୁଏ । ବନ୍ଧୁଗାଁର ନିଲା ବାଡ଼ିର ଏହି ପର୍ବ ହେଉଛି ପ୍ରଧାନ ପର୍ବ । ପୂଜାରୀ ପୂର୍ବରୁ ଗାଁର ସମସ୍ତ ବ୍ୟକ୍ତିକୁ ଜଣାଇ ଦିଅନ୍ତି ଯେ ବୁଢ଼ୀ ଠାକୁରାଣୀ ଆଠ ଜଣ ଭଉଣୀଙ୍କ ସହିତ ପ୍ରଥମେ ଗୁଡ଼ି ବା ଅସ୍ଥାୟୀ ମନ୍ଦିରକୁ ଆସିବେ । ପରେ ଚୈତ୍ରାଇ ଠାକୁରାଣୀ ଆସିବେ । ପାଲକୋଣ୍ଡା ସାହି ରାସ୍ତାର ଅପର ପାର୍ଶ୍ୱରେ ଅସ୍ଥାୟୀ ମନ୍ଦିର ତିଆରି କରାଯାଏ । ଆଡ୍ମା ପର୍ବତ ତଳେ ବୁଢ଼ୀ ଠାକୁରାଣୀଙ୍କର ସ୍ଥାୟୀ ମନ୍ଦିର ରହିଥାଏ । ପ୍ରଥମେ ଅସ୍ଥାୟୀ ମନ୍ଦିରକୁ ବୁଢ଼ୀ ଠାକୁରାଣୀଙ୍କ ସହ ଆଠ ଜଣ ଭଉଣୀଙ୍କୁ ବାଉଁଶ ଚାଙ୍ଗୁଡ଼ିରେ ସିନ୍ଦୂର, ଫୁଲ, କଳା ଚୂଡ଼ି, କଳା ମାଳି, ଦର୍ପଣ, କଦଳୀ, ଧୂପ ଦୀପ, ଝାଞ୍ଜି, ଢ଼ୋଲ, ଢ଼ାମ୍ପ ବାଦ୍ୟ ମହୁରୀ ବଜାଇ ବାଜା ବାଜଣା ସହିତ ଆମନ୍ତ୍ରଣ କରାଯାଏ । ଠାକୁରାଣୀ ଆମନ୍ତ୍ରଣ ପାଇ ଅସ୍ଥାୟୀ ମନ୍ଦିରକୁ ପ୍ରବେଶ କରନ୍ତି । ସେହିଦିନ ମନ୍ଦିରରେ ଅନ୍ନ ଭୋଗ ହୋଇଥାଏ ।

ପିତ୍ତଳ ମାଠିଆରେ ଘୋଡ଼ଣୀ ସହ ଲାଗିଥାଏ ପିତ୍ତଳ ଦୀପ । ସେଥିରେ ସଳିତା ଥାଏ ଏବଂ ତେଲ ଢାଳି ଦୀପ ଜଳା ଯାଏ । ଆଗରେ ପିତ୍ତଳ ଫୁଲ ଚାଙ୍ଗୁଡ଼ି ଧରି ଜଣେ ଚାଲି ଥାଏ । ତା' ପଛକୁ ୯ ଜଣ ଚାଲିଥାନ୍ତି ପିତ୍ତଳ ମାଠିଆ ମୁଣ୍ଡରେ ଧରି । ଆଗରେ ବାଜା ବାଜଣା ବାଜୁଥାଏ । ପଛରେ ଦଶ ଜଣ ଘଣ୍ଟଧାରୀ ମୁଣ୍ଡରେ ପିତ୍ତଳ ଚାଙ୍ଗୁଡ଼ି ଏବଂ ପିତ୍ତଳ ମାଠିଆ ସହ ଦୀପ ଧରି ଚାଲିଥାନ୍ତି । କେଉଁଠି କେଉଁଠି ଦୁଇଟି କଳସୀକୁ ହଳଦୀ ବୋଳି ଠାକୁରାଣୀଙ୍କ ଆଖି ଓ ଜିଭ ଲଗାଯାଏ ଏବଂ କଳସୀ ଉପରେ ରୁପା ମୁକୁଟ ବନ୍ଧାଯାଏ । ସେଦିନ କଳସ ଧାରଣା କରିବା ବ୍ୟକ୍ତି ନୂଆ ଲୁଗା ପିନ୍ଧିଥାନ୍ତି । କିନ୍ତୁ ନାରାୟଣ ପାଟଣାରେ ଏହି ପର୍ବଟି ଜାକଜମକରେ ହୁଏ । ବୁଧବାର, ଗୁରୁବାର, ଶୁକ୍ରବାର ଦିନ ଠାକୁରାଣୀ ନାରାୟଣ ପାଟଣାର ସମସ୍ତ ସାହି ପରିକ୍ରମା କରନ୍ତି । ଶନିବାର ଦିନ ଠାକୁରାଣୀ ଗାଁର ତିନି ଜଣ ମୁଖିଆ କୁମୁଟି ଘର, ରେଞ୍ଜର, ଥାନାର ବଡ଼ ବାବୁ, ତହସିଲଦାର, ବିଡ଼ିଓ ଘରକୁ ଯାଇ ଆଦେଶ ଦେଇଥାନ୍ତି । ମୋର ବଡ଼ ଭଉଣୀ ଚୈତ୍ରାଇ ଠାକୁରାଣୀକୁ ଆମନ୍ତ୍ରଣ କରିବ ଏବଂ ସସମ୍ମାନରେ ଆଣିବ ଏବଂ ସ୍ୱାଗତ କରିବ । ରବିବାର ଦିନ ଅପରାହ୍ନ ଚାରିଟା ସମୟରେ ତହସିଲଦାରଙ୍କ ଘର ସାମନାରେ ଗୋବର ଲିପାପୋଛା କରି ତା' ଉପରେ କଣ୍ଟା ଦୋଳି ତିଆରି ହୋଇଥାଏ । ପ୍ରଥମେ କଣ୍ଟା ଦୋଳି ଆଗରେ କୁକୁଡ଼ା ସହିତ ନଡ଼ିଆ, କଦଳୀ, ଧୂପଦୀପ ନେଇ ପୂଜା କରାଯାଏ । ୧୦ ଜଣ ଘଣ୍ଟଧାରୀ କଣ୍ଟା ଦୋଳିରେ ଝୁଲିଥାନ୍ତି । ରାତି ଆଠଟାରେ ଗାଁ ବନ୍ଧା କାର୍ଯ୍ୟରେ ଗାଁର ସାହି, ଗଳିରେ ରହିଥିବା ଚିରୁଗୁଣୀ ଡ଼ାହାଣୀ, ଗୁଣି ଗାରିଡି, ପିଶାଶୁଣୀ ପ୍ରଭୃତି ଆସୁରିକ ଶକ୍ତିକୁ ଆୟତ କରି ଏକାଠି ବନ୍ଧା ଯାଇ ଗାଁ ବାହାରେ ସେଗୁଡ଼ିକୁ ଏକତ୍ରିତ ଛାଡ଼ି ଦେବା । ପୂଜାରୀଙ୍କ ଘରର ଜଣେ ବ୍ୟକ୍ତି ଉପବାସ ରହି ଏହି ଗାଁ ବାନ୍ଧିବା କାର୍ଯ୍ୟ କରିଥାଏ । ଗାଁ ବାନ୍ଧିବା ବ୍ୟକ୍ତି ଦୁଇଟି ଛୋଟ ମାଠିଆ ଧରିଥାଏ । ଗୋଟିଏ

ହାତରେ ଧରିଥିବା ମାଠିଆରେ କ୍ଷୀର ଥାଏ । ଅନ୍ୟ ମାଠିଆରେ ହଳଦୀ ପାଣି ମିଶ୍ରିତ ପାଣିଥାଏ । ତିନି ଜଣ ବ୍ୟକ୍ତି ଅସ୍ଥାୟୀ ମନ୍ଦିରକୁ ଯାଇଥାନ୍ତି । ମାଠିଆ ଧରିଥିବା ବ୍ୟକ୍ତି ଜଣକ ମଝିରେ ରହେ ଏବଂ ଦୁଇ ଜଣ ତା'ର ପାଖରେ ରହନ୍ତି । ତିନି ଜଣ ମିଶି ଆସୁରୀୟ ଶକ୍ତିର ଦର୍ଶନ ପାଇଁ ମନ୍ଦିର ପାଖରେ ପୂଜା କରିଥାନ୍ତି । ଏହି ସମୟରେ ନାରାୟଣ ପାଟଣାର ବିଜୁଳି କଟାଯାଏ । ସବୁ ଆଡ଼େ ଶୂନ୍‌ଶାନ ହୁଏ ଏବଂ ଅନ୍ଧାର ହୋଇଯାଏ । ପୂଜା ସ୍ଥଳୀକୁ ଧଳା ଚଦର କନା ଦ୍ୱାରା ଚାରି ଦିଗ ଯୋଡ଼ାଇ ରଖାଯାଏ । ସାଥୀରେ ଆଣିଥିବା ଦୁଇ ମାଠିଆ ପାଣି ଓ କ୍ଷୀର, ସିନ୍ଦୂର, ନଡ଼ିଆ, କଦଳୀ, ଧୂପଦୀପ, ହଳଦୀ ଖଣ୍ଡ ଏବଂ ଅନ୍ୟାନ୍ୟ ସାମଗ୍ରୀ ପୂଜା କରାଯାଏ । ଗାଁ ବାନ୍ଧିବା ଲୋକ ଚମଡ଼ା ନିର୍ମିତ ପଇତା ପିନ୍ଧିଥାନ୍ତି । ସେ ଦୁଇ ହାତରେ ବାମ ପଟରୁ ଧରିଥିବା ମାଠିଆକୁ ଡ଼ାହାଣ ପଟ ଏବଂ ଡ଼ାହାଣ ପଟ ଧରିଥିବା ମାଠିଆକୁ ବାମ ପଟରେ ଧରନ୍ତି । ସାଥୀରେ ଆସିଥିବା ଦୁଇ ଜଣ ବ୍ୟକ୍ତି କାଖ ତଳେ ବେତ ଧରିଥାନ୍ତି । ଗୋଟିଏ ହାତରେ ଚାଙ୍ଗୁଡ଼ିରେ ଫୁଲ, ହଳଦୀ ମିଶା ଚାଉଳ ଧରିଥାନ୍ତି ଏବଂ ଅନ୍ୟ ହାତରେ ଗାଁର ସାହି ସାରା ହଳଦୀ ମିଶା ଚାଉଳକୁ ବିଞ୍ଚି ବିଞ୍ଚି ଚାଲିଥାନ୍ତି । ପଛରେ ଦୁଇ ହାତରେ ଦୁଇଟି ମାଠିଆ ଧରି ଗାଁ ବନ୍ଧା ଲୋକ ଚାଲିଥାଏ । ତା' ପଛରେ ପୂଜାରୀ ଘରର ଦଶ ଜଣ ଲୋକ ଯାଇଥାନ୍ତି । ସେମାନଙ୍କର ବିଶ୍ୱାସ ଯେ ଆସୁରିକ ଶକ୍ତି ରାଗି ଯାଇ ଗାଁ ବାନ୍ଧିବା ଲୋକକୁ ଟାଣି ନେଇ ଯାଇପାରେ । ତେଣୁ ଲୋକକୁ ରକ୍ଷା କରିବା ପାଇଁ ଦଶ ଜଣ ଲୋକ ଦରକାର । ଗାଁ ମୁଣ୍ଡରେ ଦୁଇ ଘଣ୍ଟା ପରେ ଆସୁରୀୟ ଶକ୍ତି ଦମନ ହୁଏ । ଅସ୍ଥାୟୀ ବାଉଁଶ ଚାଙ୍ଗୁଡ଼ିରେ ଫରୁଆ, ହଳଦୀ, କୁଙ୍କୁମ, ଦର୍ପଣ, କଳା ମାଳି, କଳା କାଚ ରଖାଯାଇଥାଏ । ସମସ୍ତ ପୂଜା ସାମଗ୍ରୀ ଧରି କୁକୁଡ଼ାକୁ ଧରି ଚୈତାଇ ଠାକୁରାଣୀଙ୍କୁ ଆମନ୍ତ୍ରଣ କରିବା ପାଇଁ ବାଉଁଶ ବୁଦା ମୂଳକୁ ସାଥୀରେ ଦିହୁଡ଼ି, ବାଜା ବାଜଣା କରି ଦୁଇ ଜଣ ବ୍ୟକ୍ତି ସାଥିରେ ଯାଇଥାନ୍ତି । ଚୈତ୍ରାଇ ଠାକୁରାଣୀଙ୍କ ପୂଜାସ୍ଥଳୀକୁ ଯିବା ସମୟରେ ଦୁଇଟି ସ୍ଥାନରେ ପୂଜା କରାଯାଏ । ପ୍ରଥମ ସ୍ଥାନରେ ପୂଜା କରିବା ପରେ ଦ୍ୱିତୀୟ ସ୍ଥାନରେ କୁକୁଡ଼ାକୁ ଚାଉଳ ଖାଇବାକୁ ଦିଆଯାଏ । ଯଦି ଚାଉଳ କୁକୁଡ଼ା ଖାଇ ଦିଏ, ତେବେ ଦେବୀ ପ୍ରସନ୍ନ ହୋଇ ବାଉଁଶ ବୁଦାରୁ ଫୁଲ ଚାଙ୍ଗୁଡ଼ିକୁ ଆସିଲେ ବୋଲି ଧରାଯାଏ । ଫୁଲ ଚାଙ୍ଗୁଡ଼ିକୁ ଧରି ପ୍ରଥମ ପୂଜା ସ୍ଥଳୀକୁ କୁକୁଡ଼ା ସହିତ ପୂଜାରୀ ଫେରିଆସେ । ସେତେବେଳେ ପ୍ରାୟ ରାତ୍ର ଦୁଇଟା ବାଜି ଥାଏ । ଫୁଲ ଚାଙ୍ଗୁଡ଼ିକୁ ଧରି ପୂଜାରୀ ଅସ୍ଥାୟୀ ମନ୍ଦିରକୁ ଆସନ୍ତି । ମନ୍ଦିର ଭିତରକୁ ପୂଜାରୀ ବ୍ୟତୀତ ଅନ୍ୟ କାହାକୁ ଛାଡ଼ି ଦିଆଯାଏ ନାହିଁ । ଅସ୍ଥାୟୀ ମନ୍ଦିରରେ ଚୈତ୍ରାଇ ମା', ଅଗ୍ନିକୁମାରୀ, ଦୁଇ ଭଉଣୀ ସାରିଆ ପାଲମା ସହିତ ବୁଢ଼ୀ ଠାକୁରାଣୀ ଏବଂ ତାଙ୍କର ଆଠ ଭଉଣୀ, ଫୁଲ ଚାଙ୍ଗୁଡ଼ି ଦେବୀ ସମସ୍ତେ ରାତିରେ ଏକାଠି ରୁହନ୍ତି । ପାଲୋକୋଣ୍ଡା ସାହିର ଅସ୍ଥାୟୀ ମନ୍ଦିରରେ ରାତ୍ରି ଦୁଇଟାରେ ପାହାଡ଼ା ପଡ଼େ । ମହୁରୀ, ଢ଼ୋଲ, ଢ଼ାମ୍ପ, ଦିହୁଡ଼ି ସହିତ ବାଣ ଫୁଟାଯାଏ । ଲୋକମାନେ ମା'ଙ୍କୁ ନିମନ୍ତ୍ରଣ କରନ୍ତି । ପୂର୍ବେ ରାଜାଙ୍କ ସମୟରେ ରାଜ ପରଂପରା ଅନୁଯାୟୀ ଦିହୁଡ଼ି, ବୋଦୁ, ରୁପା ତୁରୀ, ରୁପା ଛତା ଏବଂ ତୋପ ଫୁଟା ଯାଉଥିଲା । ରାସ୍ତାରେ ଆଗରେ ରାଜ ପୁରୋହିତ ଶ୍ଳୋକ ବୋଲି ଚାଲୁଥିଲେ । ଆଗରେ ରାଜ ପୁରୋହିତ ଶ୍ଳୋକ ବୋଲି ଚାଲିଥାନ୍ତି । ମନ୍ଦିର ବାହାରେ ହଳଦି ପାଣି ପକାଯାଏ, ପାହାଡ଼ା ପଡ଼େ । ପୁରୁଷ ଘଣ୍ଟଧାରୀମାନଙ୍କୁ ବିବାହିତା ନାରୀ ରୂପରେ ସଜ୍ଜା ଯାଇଥାଏ ଏବଂ ଫୁଲରେ ସଜ୍ଜିତ କରାଯାଏ, ପାରା ପୂଜା କରାଯାଏ । ତା' ପରେ ଅସ୍ଥାୟୀ ମନ୍ଦିରରୁ ଚଉଦ ଜଣ ଘଣ୍ଟଧାରୀ ଫୁଲ ଚାଙ୍ଗୁଡ଼ି ଦେବୀ ସହିତ ବାହାରି ଅସ୍ଥାୟୀ ମନ୍ଦିରରୁ ତହସିଲଦାର ଘରକୁ ଯାଇଥାନ୍ତି । ସେଠାରେ ଗୁଡ଼ ପଣା ପିଇଥାନ୍ତି । ସମସ୍ତ ଠାକୁରାଣୀ ପୂର୍ବେ ରାଜ ଉଆସରେ ପଣା ପାଣି ପିଉଥିଲେ । ତା' ପରେ ସାନ କୁମୁଟି, ଥାନା ବାବୁ, ଆର୍ ଆଇ, ଜମିଦାର ଘରକୁ ଯାଇ ସମସ୍ତ ଠାକୁରାଣୀ ପୂଜା ପାଇଥାନ୍ତି । ବଡ଼ କୁମୁଟି ଘର ଆଗରେ କଣ୍ଟା ଦୋଳି ତିଆରି ହୋଇ ଥାଏ । ସେଥିରେ ଚୈତ୍ରାଇ ଠାକୁରାଣୀ, ତିନି ଭଉଣୀଙ୍କ ସାଥୀରେ ଦୋଳି ଖେଳନ୍ତି । ତହସିଲ ଅଫିସ ଆଗରେ ସୋମବାର ଦିନ ଅସ୍ଥାୟୀ ଛାମୁଣ୍ଡିଆ ତିଆରି ହୋଇଥାଏ । ସେଠାରେ ଭୋଗ ହୁଏ । ତା' ପରେ ଅସ୍ଥାୟୀ ମନ୍ଦିରକୁ ଫେରନ୍ତି । ମଙ୍ଗଳବାର ଦିନ ଠାକୁରାଣୀମାନେ ପାଲକୋଣ୍ଡା ସାହିରେ ପରିକ୍ରମା କରିଥାନ୍ତି । ଗାଁର ମୁଖିଆକୁ ଡ଼ାକି କହିଥାନ୍ତି ବୁଧବାର ଦିନ ଆମେ ଭଉଣୀମାନେ ମା' ଘରୁ ଶାଶୁ ଘରକୁ ଯିବୁ । ଏହି ପର୍ବ ଚାଲିଥିବା ସମୟରେ କାହା ଘରେ ତାଲା ବନ୍ଦ ହୁଏ ନାହିଁ କିମ୍ବା ଚୋରି ହୁଏ ନାହିଁ । ଲୋକଙ୍କ ବିଶ୍ୱାସ ଠାକୁରାଣୀ ଲୋକମାନଙ୍କୁ ସାହା ଭରସା ଅଛନ୍ତି । ବୁଧବାର ଦିନ ଠାକୁରାଣୀ ଢ଼ହ ଢ଼ହ ନିଆଁରେ ଚାଲିଥାନ୍ତି ।

ମାନସିକଧାରୀ ବ୍ୟକ୍ତିମାନେ ମା'ଙ୍କ ନାମ ଧରି ନିଆଁରେ ଚାଲିଥାନ୍ତି । ଏହି ସମୟରେ ପୂଜା କରାଯାଏ । ମା' ଘରୁ ଶାଶୁ ଘରକୁ ବୁଢ଼ୀ ଠାକୁରାଣୀ ଆଠ ଜଣ ଭଉଣୀଙ୍କ ସାଥୀରେ ଯିବା ସମୟରେ ମହିଳାମାନେ ସାଥୀରେ ଯାଇ ସ୍ଥାୟୀ ମନ୍ଦିରରେ ଛାଡ଼ି ଆସନ୍ତି । କିନ୍ତୁ ଚୈତ୍ରାଇ ଠାକୁରାଣୀ ନିଜ ପୀଠକୁ ଯିବା ସମୟରେ ମହିଳାମାନଙ୍କୁ ସାଥୀରେ ଯିବା ପାଇଁ ବାରଣ ରହିଛି । ଏପରି କି ବାଉଁଶ ବୁଦା ତଳେ ରହିଥିବା ଖଣ୍ଡାକୁ ପୂଜା କରିବା ପାଇଁ ମଧ୍ୟ ମହିଳାମାନଙ୍କୁ ବାରଣ କରା ଯାଇଥାଏ । ଚୈତ୍ରାଇ ଠାକୁରାଣୀକୁ କେବଳ ପୁରୁଷ ପୂଜାରୀ ପୂଜା କରିଥାନ୍ତି । ଚୈତ୍ରାଇ ଠାକୁରାଣୀଙ୍କ ଦୟାରେ ସମସ୍ତ ବନ୍ୟଜନ୍ତୁ ରୋଗରୁ ମୁକ୍ତି ପାଇଥାନ୍ତି ବୋଲି ସମସ୍ତଙ୍କର ବିଶ୍ୱାସ ରହିଛି ।

ପାଇଲ ସାହି, ଜୟପୁର, କୋରାପୁଟ

# ମା’ ଅନ୍ଧାରୀ–ବନଦୁର୍ଗା ପୂଜା: ବନ ସଂରକ୍ଷଣର ଏକ ଅଭିନବ ପ୍ରୟାସ

ଧ୍ରୁବରାଜ ନାୟକ

ଝାରସୁଗୁଡ଼ା ଜିଲ୍ଲାର ଲଇକେରା ଓ କିର୍ମିରା ବ୍ଲକ୍‌ରେ ଅବସ୍ଥିତ ଅନ୍ଧାରୀ ଜଙ୍ଗଲ । ଅନ୍ଧାରୀ ପର୍ବତକୁ ଲାଗି ରହିଛନ୍ତି ସାତୋଟି ପାହାଡ଼ (ଡୁଙ୍ଗରୀ) । ପାହାଡ଼ଗୁଡ଼ିକୁ ଘେରି ରହିଛନ୍ତି ୧୫ଟି ଛୋଟ ବଡ଼ ଗାଁ । ପ୍ରାୟ ୨୫ ବର୍ଗ କି.ମି. ପରିମିତ ଘଞ୍ଚ ଅନ୍ଧାରୀ ଜଙ୍ଗଲ ୧୯୮୦ ଦଶକ ବେଳକୁ ଶ୍ରୀହୀନ ଉଜୁଡ଼ା ଜଙ୍ଗଲରେ ପରିଣତ ହୋଇଯାଇଥିଲା । ମୋର ବଡ଼ ପୁଅ ସୁବ୍ରତ କୁମାର ଇଂଜିନିୟରିଂ ପାସ୍ କଲା ପରେ ଚାକିରି ନ କରି ଗାଁରେ ରହିଲା । ସମାଜ ସେବାରେ ଗୋଟିଏ ଅଭିନବ ପନ୍ଥା ଅନୁସରଣ କଲା । ଉଜୁଡ଼ା ଅନ୍ଧାରୀ ଜଙ୍ଗଲର ସଂରକ୍ଷଣ ତା’ର ବ୍ରତ ହେଲା । ପନ୍ଦରଟି ଗାଁରେ ବନ ସୁରକ୍ଷା ସମିତି ଗଠନ କରାଇଲା । ସବୁ ବନ ସୁରକ୍ଷା ସମିତି (ଭି.ଏସ୍.ଏସ୍.) ମାନଙ୍କୁ ନେଇ ମା’ ଅନ୍ଧାରୀ ବନ ସୁରକ୍ଷା ସମିତି ମହାସଂଘ ଗଠିତ ହେଲା । ଉଦ୍ଦେଶ୍ୟ ହେଲା ଅଞ୍ଚଳର ସମସ୍ତ ଗ୍ରାମବାସୀମାନଙ୍କ ସହଯୋଗରେ ସମଗ୍ର ଅନ୍ଧାରୀ ଜଙ୍ଗଲର ସଂରକ୍ଷଣ ଓ ମା’ ଅନ୍ଧାରୀଙ୍କ ଉପରେ ଜନମାନସରେ ପ୍ରଗାଢ଼ ଆସ୍ଥା । ଅନ୍ଧାରୀ ଜଙ୍ଗଲର ଅଧିଷ୍ଠାତ୍ରୀ ଦେବୀ ମା’ ଅନ୍ଧାରୀ । ପର୍ବତ ଶିଖରରେ ତାଙ୍କର ପୀଠ । ଆବହମାନ କାଳରୁ ଲୋକେ ସେଠାରେ ପୂଜାର୍ଚ୍ଚନା କରନ୍ତି । ମାନସିକ ପୂର୍ଣ୍ଣ ହେଲେ ନଡ଼ିଆ ଭାଙ୍ଗନ୍ତି । ପଶ୍ଚିମ ଓଡ଼ିଶାର ପ୍ରତ୍ୟେକ ଗାଁରେ ଥାଏ ଗୋଟାଏ ‘ଦେମୂଲ’ ବା Sacred groove (ପବିତ୍ର ତୋଟା) । ଏଠାରେ ଗ୍ରାମଦେବୀଙ୍କ ସାଙ୍ଗରେ ମା’ ଅନ୍ଧାରୀ ମଧ୍ୟ ପୂଜା ପାଆନ୍ତି । ସୁବ୍ରତ ଲୋକଙ୍କୁ ବୁଝାଇଲେ ମା’ ଅନ୍ଧାରୀ ଆମ ଜଙ୍ଗଲର ଅଧିଷ୍ଠାତ୍ରୀ ଦେବୀ । ଆମେ ତାଙ୍କୁ ନିଜ ଗାଁ ଦେମୂଲରେ ମଧ୍ୟ ପୂଜା କରୁଛୁଁ । ମା’ଙ୍କର ପ୍ରକୃତ ପୂଜା ହେବ ଅନ୍ଧାରୀ ଜଙ୍ଗଲକୁ ସଂରକ୍ଷଣ କରିବା । ତେଣୁ ଜନମାନସରେ ବନ ସୁରକ୍ଷା ସଚେତନତା ସୃଷ୍ଟି କରିବା ପାଇଁ ମା’ ଅନ୍ଧାରୀଙ୍କୁ ବନଦୁର୍ଗା ଆଖ୍ୟା ଦେଇ ୧୯୯୪ରେ ଆରମ୍ଭ କଲେ ମା’ ଅନ୍ଧାରୀ–ବନଦୁର୍ଗା ପୂଜା ଯାତ୍ରା । ଅଞ୍ଚଳର ଭୂତାତ୍ତ୍ୱିକ ସର୍ବେକ୍ଷଣ କରିବା ପାଇଁ ୧୯୩୭ରେ ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଅନ୍ଧାରୀ ପର୍ବତ ଶିଖରରେ ଏକ ବେଦୀ ନିର୍ମାଣ କରିଥିଲେ । ପୁନଃନିର୍ମାଣ ପରେ ସେଇ ବେଦୀଟି ଏବେ ମା’ ଅନ୍ଧାରୀ ବନଦୁର୍ଗାଙ୍କ ଆସ୍ଥାନ ।



କାର୍ତ୍ତିକ ଶୁକ୍ଳପକ୍ଷ ଅଷ୍ଟମୀ ଦିନ ପର୍ବତ ଶିଖରରେ ପୂଜା ହୁଏ । ଅଷ୍ଟଭୁଜା ମା’ ଅନ୍ଧାରୀ–ବନଦୁର୍ଗାଙ୍କ ବିଗ୍ରହ ସ୍ଥାପନ ହେଲା ପରେ ସକାଳୁ ଶ୍ରଦ୍ଧାଳୁମାନଙ୍କ ଭିଡ଼ ଜମିଯାଏ । ଦିନସାରା ପ୍ରାୟ ୫୦ ହଜାର ଭକ୍ତ ଦର୍ଶନ କରନ୍ତି । ସନ୍ଧ୍ୟାରେ ବିଧିମତେ ମା’ଙ୍କ

ପୂଜା ହୁଏ । ଚଣ୍ଡୀପାଠ କରାହୁଏ । ରାତିସାରା ଭଜନ ଓ ଭାଗବତ ଗାନ ଶ୍ରଦ୍ଧାଳୁମାନଙ୍କୁ ବୈକୁଣ୍ଠ ଭୁବନର ଅନୁଭବ କରାଏ । ତା'ପରଦିନ (ଅଁଳା ନବମୀ) ବିଗ୍ରହଙ୍କୁ ପର୍ବତ ଶିଖରରୁ ଆଣି ପାକେଲଖୋଲ–କୁଅଁରମାଲ ଗାଁ ହାଟଦାଣ୍ଡରେ ଥିବା ପୂଜା ମଣ୍ଡପରେ ସ୍ଥାପନ କରାଯାଏ । ମେଳା ହୁଏ, ଯାତ୍ରା ହୁଏ । ମନୋରଂଜନ କାର୍ଯ୍ୟକ୍ରମ ମାଧ୍ୟମରେ ବନ ସୁରକ୍ଷାର ବାର୍ତ୍ତା ଦିଆହୁଏ । ସୁବ୍ରତଙ୍କ ଅକ୍ଲାନ୍ତ ପରିଶ୍ରମ ଓ ଗ୍ରାମବାସୀମାନଙ୍କ ଅଦମ୍ୟ ଉତ୍ସାହ ଫଳବତୀ ହୁଏ । ଅନ୍ଧାରୀ ଜଙ୍ଗଲର ଅଭିବୃଦ୍ଧି ଉପଗ୍ରହ ଚିତ୍ର ମାଧ୍ୟମରେ ଦୃଶ୍ୟମାନ ହୁଏ । ଦୁର୍ଭାଗ୍ୟବଶତଃ ୨୦୦୮ ଜାନୁଆରୀ ୯ ତାରିଖ ଦିନ ସଡକ ଦୁର୍ଘଟଣାରେ ସୁବ୍ରତଙ୍କ ଦେହାନ୍ତ ହେଲା । ଅନ୍ଧାରୀ ସଂରକ୍ଷଣ ଅଭିଯାନ ବାଧାପ୍ରାପ୍ତ ହେଲା । ପୁଅର ମହତ୍ କାମକୁ ଆଗେଇ ନେବା ପାଇଁ ୨୦୦୯ରୁ ମୁଁ ଅନ୍ଧାରୀ ସଂରକ୍ଷଣ ଅଭିଯାନର ନେତୃତ୍ୱ ନେଇଛି ।

ମା' ଅନ୍ଧାରୀ–ବନଦୁର୍ଗା ପୂଜାର ଆଉ ଗୋଟାଏ ବିଶେଷତ୍ୱ ଅଛି । ଏହି ପୂଜାରେ ପଶୁବଳି ବନ୍ଦ କରାହୋଇଛି । ପ୍ରତିକାତ୍ମକ ଭାବରେ କେବଳ କଖାରୁ କିମ୍ବା ପାଣି କଖାରୁଟିଏ ବଳି ଦିଆଯାଏ ।

ଦେବଦେବୀଙ୍କୁ ପୂଜାର୍ଚ୍ଚନା କଲାପରେ ସେମାନଙ୍କୁ ପରିକ୍ରମା କରିବାର ବିଧି ଅଛି । ତେଣୁ ପୂଜା ଅବସରରେ ଗୋଟିଏ ବିଶାଳ ସାଇକେଲ ଶୋଭାଯାତ୍ରା ଆୟୋଜିତ ହୁଏ । ପ୍ରାୟ ୧୫୦ସ୍ୱେଚ୍ଛାସେବୀ ସମଗ୍ର ଅନ୍ଧାରୀ ଜଙ୍ଗଲକୁ (ପ୍ରାୟ ୨୦କି.ମି.) ପରିକ୍ରମା କରି ବନ ସୁରକ୍ଷାର ବାର୍ତ୍ତା ଦିଅନ୍ତି । ୨୦୧୨ ମସିହା ପୂଜା ଅବସରରେ ସ୍ମରଣିକା ଅନ୍ଧାରୀ ପ୍ରକାଶ କରାଯାଉଛି । ଛାତ୍ରଛାତ୍ରୀଙ୍କୁ ଉତ୍ସାହିତ କରିବା ପାଇଁ ସେମାନଙ୍କ ଲେଖାଗୁଡ଼ିକୁ ପ୍ରାଥମିକତା ଦିଆଯାଏ । ଏହାଦ୍ୱାରା ସେମାନଙ୍କ ମନରେ ପରିବେଶ, ବନସୁରକ୍ଷା ଓ ବନ୍ୟଜନ୍ତୁ ସଂରକ୍ଷଣ ଭାବନା ଜାଗ୍ରତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ସାରସ୍ୱତ ପ୍ରତିଭା ମଧ୍ୟ ବିକଶିତ ହୁଏ । ଏଥିରେ ଅନୁପ୍ରାଣିତ କରିବା ଓ ସେମାନଙ୍କ ପାଇଁ ବିଶେଷ କର୍ମଶାଳା ମଧ୍ୟ ଆୟୋଜନ କରାଯାଏ। ସାହିତ୍ୟ ସଭା ହୁଏ ।

ଆମ ସଂସ୍କୃତିରେ ବାର ମାସରେ ତେରଯାତ୍ରା, କେତେ ପର୍ବପର୍ବାଣି । କିନ୍ତୁ ମା ଅନ୍ଧାରୀ– ବନଦୁର୍ଗା ପୂଜା ଗୋଟିଏ ଅଭିନବ ପର୍ବ । ଜନ ମାନସରେ ବନ ସୁରକ୍ଷା ସଚେତନତା ସୃଷ୍ଟି କରିବା ଏହାର ଉଦ୍ଦେଶ୍ୟ । ଏହା ଏକ ବିଂଶତମ ବର୍ଷରେ ପଦାର୍ପଣ କରିଛି। ଏହି ବାର୍ତ୍ତା ସୁଦୂରପ୍ରସାରୀ ହେଲେ ସୁବ୍ରତଙ୍କ ପାଇଁ ପ୍ରକୃତ ଶ୍ରଦ୍ଧାଞ୍ଜଳି ହେବ। ବନସୁରକ୍ଷା ବ୍ରତ ମୋର। ପଶୁପକ୍ଷୀ ମୋ ସହଚର । ମୋର ଏହି ବନ ସୁରକ୍ଷା ବ୍ରତ ସମସ୍ତଙ୍କ ଜୀବନରେ ମନ୍ତ୍ର ହେଉ । ଏହାହିଁ କାମନା ।

ପ୍ରାକ୍ତନ କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ
ସମ୍ବଲପୁର

## ଗ୍ରାମ୍ୟ ଗୃହ ନିର୍ମାଣ ଯୋଜନାରେ ୟୁଏନ୍‌ଡିପି ସହଯୋଗ କରିବ

ରାଜ୍ୟ ସରକାର ୨୦୧୯ ମସିହା ସୁଦ୍ଧା ରାଜ୍ୟର ପ୍ରାୟ ୩୦ ଲକ୍ଷ ହିତାଧିକାରୀଙ୍କୁ ପକ୍କାଘର ଯୋଗାଇ ଦେବା ପାଇଁ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏହି କାର୍ଯ୍ୟରେ ୟୁଏନ୍‌ଡିପି ଆବଶ୍ୟକ ସହଯୋଗ ଓ ସହାୟତା ଯୋଗାଇ ଦେବାକୁ ଆଗ୍ରହ ପ୍ରକାଶ କରିଛି । ଅକ୍ଟୋବର ୧୦ ତାରିଖରେ ପଞ୍ଚାୟତିରାଜ ମନ୍ତ୍ରୀ ଡକ୍ଟର ଅରୁଣ କୁମାର ସାହୁଙ୍କୁ ୟୁଏନ୍‌ଡିପିର କଣ୍ଟ୍ରି ହେଡ୍ ଜାକୋ ସିଲିଅର୍କ, ରାଜ୍ୟ ମୁଖ୍ୟ ଅମ୍ବିକା ପ୍ରସାଦ ନନ୍ଦ, ଜି. ପଦ୍ମନାଭନ୍, ଆଭା ମିଶ୍ର ପ୍ରମୁଖ ସାକ୍ଷାତ କରି ସରକାରଙ୍କ ଏହି ମହତ୍ତ୍ୱାକାଂକ୍ଷୀ କାର୍ଯ୍ୟକ୍ରମରେ ୟୁଏନ୍‌ଡିପିର ଭାଗୀଦାରିତା ସମ୍ପର୍କରେ ଆଲୋଚନା କରିଥିଲେ । ୟୁଏନ୍‌ଡିପି ଏହି ଯୋଜନାର ସଫଳ ରୂପାୟନ ନିମନ୍ତେ ବୈଷୟିକ ଓ ପରିଚାଳନାଗତ ସହାୟତା ସହ ସମ୍ବଳରେ ମଧ୍ୟ ସହଯୋଗ କରିବ । ଇନ୍ଦିରା ଆବାସ ଯୋଜନା ସହ ରାଜ୍ୟ ସରକାରଙ୍କ ବିଜୁ ପକ୍କାଘର ଯୋଜନାରେ ହିତାଧିକାରୀଙ୍କୁ ପକ୍କାଘର ଦିଆଯିବ । ଧାର୍ଯ୍ୟ ସମୟସୀମା ମଧ୍ୟରେ ଯେଭଳି ହିତାଧିକାରୀ ଘର ପାଇବେ, ତା'ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି । ବାତ୍ୟା ପ୍ରତିରୋଧୀ ନିର୍ମାଣ ପାଇଁ ଆବଶ୍ୟକ ଜ୍ଞାନ କୌଶଳ ପ୍ରୟୋଗ କରାଯିବ । ଏ ସମ୍ପର୍କରେ ଏକ ଭିଜନ ଡକ୍ୟୁମେଣ୍ଟ ୟୁଏନ୍‌ଡିପି ପ୍ରସ୍ତୁତ କରିବ ବୋଲି ନିଷ୍ପତ୍ତି ହୋଇଛି । ପଞ୍ଚାୟତିରାଜ ମନ୍ତ୍ରୀ ଡକ୍ଟର ଅରୁଣ କୁମାର ସାହୁ ୟୁଏନ୍‌ଡିପିର ଆଗ୍ରହକୁ ସ୍ୱାଗତ କରିବା ସହ ଯୋଜନାର ସଫଳ କାର୍ଯ୍ୟକାରିତାରେ ସକ୍ରିୟ ସହଯୋଗ କାମନା କରିଛନ୍ତି ।

# ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ପଞ୍ଚୁକ ବେଶ

ନଗେନ୍ଦ୍ର ନାଥ ପଟ୍ଟନାୟକ

ସର୍ବମଙ୍ଗଳମୟ ଓ ସର୍ବହିତୈଷୀ ଦାରୁବ୍ରହ୍ମ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ, ଲୀଳା ଖେଳା, ଯାନି ଯାତ୍ରା, ବେଶ ଓ ପର୍ବପର୍ବାଣି ଲୌକିକ ଦୃଷ୍ଟିରୁ ବିଭିନ୍ନ ଧର୍ମ ଗ୍ରନ୍ଥରେ ନାନା ଭାବରେ ବର୍ଣ୍ଣନା କରାଯାଇଛି । ପ୍ରକୃତରେ ଦେଖିବାକୁ ଗଲେ, ତାଙ୍କର ଏସବୁ ଲୀଳା ଖେଳାର ଚମତ୍କାରିତା ଓ ଅଲୌକିକତା ଏବଂ ବେଶଭୂଷାର ମାଧୁର୍ଯ୍ୟତା ହେଉଛି ବର୍ଣ୍ଣନାତୀତ, କଳ୍ପନାତୀତ ଆଉ ସ୍ୱରୂପ ହେଉଛି ଅଚିନ୍ତ୍ୟମୟ, ଅନିର୍ବଚନୀୟ ଓ ରହସ୍ୟାବୃତ । ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ବେଶ ତ ଅଶେଷ । ହେଲେ କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହି ପାଞ୍ଚଦିନରେ ଅନୁଷ୍ଠିତ ହେଉଥିବା କେବଳ ଶ୍ରୀଜୀଉଙ୍କ ଠିଆକିଆ, ବାଙ୍କଚୂଡା, ଆଡକିଆ ବା ତ୍ରିବିକ୍ରମ, ଡାଳିକିଆ ବା ଲକ୍ଷ୍ମୀ ନୃସିଂହ ଓ ରାଜରାଜା ବେଶରେ ହିଁ ସେମାନଙ୍କ ଅଲୌକିକ ମହିମା ତଥା ଅନିର୍ବଚନୀୟ ଭାବ ପ୍ରକଟିତ ହୋଇଥାଏ ।

**ଲକ୍ଷ୍ମୀ ନାରାୟଣ ବା ଠିଆକିଆ ବେଶ :** ଶ୍ରୀଜଗନ୍ନାଥଙ୍କ ଏହି ବେଶ ଅନୁଷ୍ଠିତ ହୋଇଥାଏ ଶୁକ୍ଳ ଏକାଦଶୀ ତିଥିରେ । ଏହି ପାବନ ତିଥି ବଡ ଏକାଦଶୀ ନାମରେ ବି ବିଦିତ । ଲକ୍ଷ୍ମୀ ନାରାୟଣ ବେଶ ରୂପେ ମଧ୍ୟ ଏହି ବେଶ ଅଭିହିତ । ଏହି ବେଶ ସମ୍ପର୍କରେ ଆମେ ଯଦି ରାମାନୁଜଙ୍କ ଦର୍ଶନ ତତ୍ତ୍ୱକୁ ବିଚାରକୁ ନେବା ତେବେ ତାହା ଅଧିକ ପ୍ରାସଙ୍ଗିକ ମନେ ହେବ । ତାଙ୍କ ମତାନୁସାରେ ବ୍ରହ୍ମ ହେଉଛି ସଗୁଣ, ସାକାର ଏବଂ ସେ ହିଁ ହେଉଛନ୍ତି ସ୍ୱୟଂ ନାରାୟଣ । ଆଉ ତାଙ୍କର ପରମ ଶକ୍ତି ହେଉଛନ୍ତି ମାତା ଲକ୍ଷ୍ମୀ । ଏହି ଦୃଷ୍ଟିକୋଣକୁ ଆଧାର କରି ରାମାନୁଜ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମ ଭାବେ ବିବେଚନା କରିଥିଲେ ଏବଂ ଲକ୍ଷ୍ମୀ ନାରାୟଣ ବେଶ ପ୍ରବର୍ତ୍ତନ କରିଥିଲେ ବୋଲି ଅନୁମିତ । ଏଥିପାଇଁ ରାମାନୁଜ ପନ୍ଥୀମାନେ ଜଗନ୍ନାଥଙ୍କୁ ପ୍ରଣତି ଜଣାଇ ଗାଇଛନ୍ତି–

''ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ ।
ସୁଭଦ୍ରା ପ୍ରାଣନାଥାୟ ଜଗନ୍ନାଥାୟତେ ନମଃ ।''

ଏଣୁ ନାରାୟଣ ରୂପେ ଜଗନ୍ନାଥ ଓ ସୁଭଦ୍ରାଙ୍କୁ ଲକ୍ଷ୍ମୀ ରୂପରେ ପରିକଳ୍ପନା କରାଯାଇ ଏହି ବେଶ ଅନୁଷ୍ଠିତ ହୋଇଥାଏ । ଏହି ବେଶକୁ ଠିଆକିଆ ବେଶର ନାମକରଣ ଦିଆଯିବା ତାତ୍ପର୍ଯ୍ୟ ହେଲା ଶ୍ରୀଜୀଉଙ୍କର ମସ୍ତକରେ ସୁବର୍ଣ୍ଣ କିଆ ଠିଆ ଭାବରେ ଲାଗି ହେଉଥାଏ । ଯେହେତୁ ଶାରଦୀୟ ଦୁର୍ଗୋତ୍ସବ କାଳରେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କୁ ରାଧା ଦାମୋଦର ବେଶରେ ଆଭୁଷିତ କରାଯାଇ ରୀତି ନୀତି ଅନୁସାରେ ଉପାସନା କରାଯାଇଥାଏ । ସେଥିପାଇଁ ପଞ୍ଚକର ପାଞ୍ଚ ଦିବସରେ ଲକ୍ଷ୍ମୀ ନାରାୟଣ ବେଶକୁ ଅଧିକ ପ୍ରାଧାନ୍ୟ ପ୍ରଦାନ କରାଯାଇଥାଏ । ବିଶେଷ କରି, ରାମାନୁଜାଚାର୍ଯ୍ୟଙ୍କ ମଠ ପକ୍ଷରୁ ଏହି ଲକ୍ଷ୍ମୀ ନାରାୟଣ ବେଶକୁ ପ୍ରାଥମିକତା ପ୍ରଦାନ କରାଯିବା ଲକ୍ଷ୍ୟ କରାଯାଇଥାଏ । କାରଣ ଏହି ଶୁକ୍ଳ ଏକାଦଶୀ ତିଥିରେ ରାମାନୁଜାଚାର୍ଯ୍ୟ ଲକ୍ଷ୍ମୀନାରାୟଣ ବେଶକୁ ସଂଦର୍ଶନ କରି ଆତ୍ମ ବିଭୋର ହୋଇ ଉଠିଥିଲେ । ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପି ଅନୁସାରେ ଲକ୍ଷ୍ମୀ ନାରାୟଣ ବେଶରେ ଶ୍ରୀଭୁଜ-୪, ଶ୍ରୀପୟର-୪, ଆଡକାନି-୪, ତଡଗି-୨, ଆୟୁଧ (ଶଙ୍ଖ, ଚକ୍ର-ଜଗନ୍ନାଥ, ହଳ, ମୂଷଳ-ବଳଭଦ୍ର), କାନ-୬, ଚନ୍ଦ୍ରିକା-୨, ଓଡ଼ିଆଣି-୩, କିଆ-୫୪ ଆଦି ସୁନା ଅଳଙ୍କାର ଲାଗି ହୋଇଥାଏ । ପୁରୁଷୋତ୍ତମ କ୍ଷେତ୍ରରେ ଏହି ପବିତ୍ର ଅବସରରେ ପରମ ପୁରୁଷ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ବଡ ଠାକୁର ବଳଭଦ୍ରଙ୍କ କପାଳରେ ଶୋଭା ପାଇଥାଏ ବହୁମୂଲ୍ୟ ପଥର ଖୋଦିତ ଚନ୍ଦ୍ରମା ଦ୍ୱୟ, ଯାହାକୁ ଦର୍ଶନ କଲେ ଭକ୍ତ, ଶ୍ରଦ୍ଧାଳୁ ଓ ଦର୍ଶନାର୍ଥୀଙ୍କ ଚର୍ମ ନେତ୍ର ଝଲସି ଉଠେ । ସୁବର୍ଣ୍ଣ ପାତିଆ ଆକୃତିରେ କିଆ ଫୁଲର ପାଖୁଡା ଭଳି ପ୍ରସ୍ତୁତ କରାଯାଇ ଶ୍ରୀଜୀଉଙ୍କର ମସ୍ତକରେ ଅର୍ଦ୍ଧବୃତ୍ତାକାର ଆକାରରେ ଲଗାଯାଏ । ଶ୍ରୀଜଗନ୍ନାଥଙ୍କ ବାମ

ହସ୍ତରେ ଶଙ୍ଖ ଓ ଡାହାଣ ହସ୍ତରେ ଚକ୍ର ଏବଂ ବଳଭଦ୍ର ହଳ ଓ ମୂଷଳ ଧାରଣ କରିଥାନ୍ତି । ଭୋଗମଣ୍ଡପ ଭୋଗ (ଭଅଣ୍ଡ) ସରିବା ପରେ ଏହି ବେଶ ଅଳଙ୍କାର ଆଦି ଲାଗି ହୋଇ ମଧ୍ୟାହ୍ନ ଧୂପ ଅନୁଷ୍ଠିତ ହୋଇଥାଏ । ଏହି ବେଶର ଆଉ ଏକ ବିଶେଷତ୍ୱ ହେଉଛି, ରାଧା ଦାମୋଦର ବେଶରେ ମହାପ୍ରଭୁଙ୍କ ହସ୍ତରେ ନଳୀଭୁଜ ଲାଗି କରାଯାଉଥିବାବେଳେ ଲକ୍ଷ୍ମୀ ନାରାୟଣ ବେଶରେ ମହାପ୍ରଭୁ ଆୟୁଧ ଲାଗି ହୋଇଥାନ୍ତି । ଶ୍ରୀଜୀଉ ତ୍ରୟଙ୍କ ଶ୍ରୀମସ୍ତକରେ ଠିଆକିଆଗୁଡ଼ିକ ଧରି ରଖିବା ଲାଗି ଏକ ବଳା ମୁଖମଣ୍ଡଳରେ ଲାଗିଥାଏ । ପୁଷ୍ପାଳକ ସେବକମାନେ ଏହି ବେଶ କାର୍ଯ୍ୟ ଅତି କାଷ୍ଠା ତଥା ନିଷ୍ଠାର ସହିତ ସମ୍ପାଦନ କରିଥାନ୍ତି । ଏତଦ୍‌ବାଦ, ଭ୍ରାତୃଦ୍ୱୟଙ୍କ ବିଗ୍ରହରେ ଖଞ୍ଜା ହୋଇଥାଏ ସ୍ୱର୍ଣ୍ଣ ନିର୍ମିତ ହସ୍ତ, ପଦ, ଶଙ୍ଖ ଚକ୍ର, ହଳ ମୂଷଳ । ଏହି ଅନୁପମ, ଅପରୂପ ବେଶକୁ ସଂଦର୍ଶନ କଲେ ମନେ ହୁଏ ଯେମିତି ମହାପ୍ରଭୁ ଶଙ୍ଖ ଚକ୍ର ଓ ବଡ ଠାକୁର ହଳ ମୂଷଳ ଶ୍ରୀହସ୍ତରେ ଧାରଣ କରି ଭକ୍ତ ଶ୍ରଦ୍ଧାଳୁମାନଙ୍କ ଦର୍ଶନ ଦେବାଲାଗି ରତ୍ନ ସିଂହାସନରେ ଦଣ୍ଡାୟମାନ ହୋଇ ରହିଛନ୍ତି । ଖାଲି ସେତିକି ନୁହେଁ, କର୍ଣ୍ଣରେ କୁଣ୍ଡଳ, ବକ୍ଷ ଦେଶରେ ପଦ୍ମ ମାଳିରେ ବିଭୂଷିତ ପ୍ରଭୁଙ୍କ ଅପରୂପ ଶୋଭା ଏଭଳି ଭାବରେ ଏମାର ମଠ, ବଡମଠ ଓ ଶ୍ରୀରାମ ଦାସ ମଠ ସମ୍ପ୍ରଦାୟ ଆଦି ବିଭିନ୍ନ ମଠ ମନ୍ଦିରର ଭକ୍ତମାନଙ୍କ ମନ ମୋହିନିଏ ଯେ ସେମାନଙ୍କ ମୁଖରୁ ସ୍ୱତଃ ଝରି ପଡିଥାଏ ଶ୍ରୀମନ ନାରାୟଣ ସ୍ତୋତ୍ର । ସତେ ଯେମିତି ମନେ ହୁଏ ଏହି ସ୍ତୋତ୍ର ଶ୍ରୀମନ୍ଦିରକୁ ପରିପୂର୍ଣ୍ଣ କରି ଗଗନକୁ ଊର୍ଦ୍ଧ୍ୱଗାମୀ ହୋଇ ନିତ୍ୟ ବୈକୁଣ୍ଠରେ ପରମ ତୃପ୍ତି ପ୍ରଦାନ କରିବା ସହିତ ଅନନ୍ତ ଶ୍ରୁତିକୁ ଗତିଶୀଳ ହୋଇ ଶ୍ରୋତାଙ୍କ ମନରେ ସୃଷ୍ଟି କରୁଛି ବାଗ୍ ଦେବୀ ସରସ୍ୱତୀଙ୍କ ବୀଣା ଝଙ୍କାରର ସେହି ସାତ୍ତ୍ୱିକ ଭାବନା, ଆଉ କର୍ଣ୍ଣ ଗହ୍ୱରରେ ସୃଷ୍ଟି କରୁଛି ବୀଣା ଝଙ୍କାରର ଅଫୁରନ୍ତ ମୂର୍ଚ୍ଛନା ।

**ବାମନ ବା ବାଙ୍କଚୂଡା ବେଶ :** ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ଏହି ବେଶ ଅନୁଷ୍ଠିତ ହୁଏ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ତିଥିରେ । କଟକ ମଞ୍ଚେଶ୍ୱରସ୍ଥିତ ଧବଳେଶ୍ୱର ବଡ ଓଷା ଉପଲକ୍ଷେ ମହାପ୍ରଭୁଙ୍କ ଏହି ଦିନ ଯୋଗୀ ବେଶରେ ସୁସଜ୍ଜିତ ହୁଅନ୍ତି । ଶ୍ରୀଜୀଉଙ୍କୁ ସୁଶୋଭିତ କରାଯାଇଥାଏ ବାଙ୍କଚୂଡା ବେଶରେ । ଠାକୁର ଦ୍ୱୟଙ୍କ ଶ୍ରୀମସ୍ତକକୁ ଚୂଡା ବେଶରେ ସୁନ୍ଦର କମନୀୟ ପରିପାଟୀରେ ଭୂଷିତ କରାଯାଇଥାଏ । ମହାପ୍ରଭୁଙ୍କ ଏହି ଚୂଡା ଦକ୍ଷିଣ ଦିଗକୁ ସମ୍ୟକ ଢଳି ଥିବାର ନେତ୍ରଗୋଚର ହୋଇଥାଏ । ଶ୍ରୀଜୀଉ ଦ୍ୱୟଙ୍କ ଏହି ଚୂଡା ପ୍ରସ୍ତୁତ କରିବା ଲାଗି ବେତରେ କନା ଆବୃତ କରାଯାଇ ଠାକୁରଙ୍କ ମସ୍ତକରେ ଲଗାଯାଇଥାଏ । ସୁବର୍ଣ୍ଣ କାନ ଓ କୁଣ୍ଡଳ ବି ପିନ୍ଧା ଯାଇଥାଏ । ଏହା କେଶତୁଲ୍ୟ ପରିଦୃଶ୍ୟମାନ ହେବା କାରଣରୁ ତା' ଉପରେ ସୁନାର କିରୀଟ ଖଞ୍ଜାଯାଇ ଚୂଡାର ସୌନ୍ଦର୍ଯ୍ୟକୁ ବର୍ଦ୍ଧନ କରାଯାଇଥାଏ । ଏତଦ୍‌ଭିନ୍ନ, ଘାଗଡା, ପଦ୍ମଫୁଲ, ଅଗସ୍ତି ଓ କଣ୍ଠି–ଏମିତି ଚାରି କିସମର କଣ୍ଠି ମାଳି ଠାକୁରଙ୍କ ଶ୍ରୀକଣ୍ଠରେ ପିନ୍ଧାଯାଇ ଆଭୂଷିତ କରାଯାଇଥାଏ । ବେଶ କେବଳ ଏତିକିରେ ସରି ନଥାଏ, ସେବକମାନଙ୍କ ଦ୍ୱାରା ଚିରାଚରିତ ପ୍ରଥାକୁ ଅନୁସୃତ କରାଯାଇ ଦାରୁଦେବତା ଦ୍ୱୟଙ୍କୁ ସ୍ୱର୍ଣ୍ଣ ନିର୍ମିତ ଶ୍ରୀହସ୍ତପାଦ ଓ ଆୟୁଧ ସ୍ୱରୂପ ଶଙ୍ଖ, ଚକ୍ର, ହଳ, ମୂଷଳ ଧାରଣ କରାଇ ଦିଆଯାଇଥାଏ । ଆହୁରି ସ୍ୱର୍ଣ୍ଣ ନିର୍ମିତ କର୍ଣ୍ଣ କୁଣ୍ଡଳକୁ ବି ଝୁଲାଇ ଦିଆଯାଇଥାଏ ।

ଠାକୁରଙ୍କ ମହାସ୍ନାନ ଉଠାରୁ ଏହି ବେଶ ଆରମ୍ଭ ହୋଇ ବାଲଧୂପ ପର୍ଯ୍ୟନ୍ତ ଚାଲୁ ରହିଥାଏ । ସେଦିନ ଅବକାଶ ନୀତି ସରିବା ପରେ ପାଳିଆ ମେକାପ, ଖୁଣ୍ଟିଆ, ଚାଙ୍ଗଡା ମେକାପ ଏବଂ ପାଖାପାଖି ୫ଜଣ ପୁଷ୍ପାଳକ ଶ୍ରୀବିଗ୍ରହଙ୍କୁ ବାଙ୍କଚୂଡା ବେଶରେ ସୁଶୋଭିତ କରିଥାନ୍ତି । ଭୋଗ ମଣ୍ଡପ କାର୍ଯ୍ୟ ସମାପିତ ହେବା ପରେ ଏହି ବେଶ ସଂଦର୍ଶନ ନିମନ୍ତେ ସାହାଣ ମେଲା ହୋଇଥାଏ । କୃଷ୍ଣଙ୍କ ଏହି ବାଙ୍କ ଚୂଡା ବେଶ ଗୋପୀମାନଙ୍କୁ ମୋହିତ କରିଥିବା କଥା ବନମାଳୀ ଦାସ ତାଙ୍କ ପଦ୍ୟାବଳୀରେ ଲେଖିଛନ୍ତି । ସମ୍ଭବତଃ, ଏହି ବେଶକୁ ବୈଷ୍ଣବ ପନ୍ଥୀମାନେ ଆରମ୍ଭ କରିଥିଲେ । ତେବେ ଶ୍ରୀଚୈତନ୍ୟ ଦେବଙ୍କ ଆଗମନ କାଳରେ ଏହି ବେଶ ଶ୍ରୀମନ୍ଦିରରେ ଆରମ୍ଭ ହୋଇଥିବା ଅନୁମାନ କରାଯାଇଥାଏ ।

**ତ୍ରିବିକ୍ରମ ବା ଆଡକିଆ ବେଶ :** ଶ୍ରୀଜୀଉଙ୍କୁ ଏହି ବେଶ ଯଥାବିଧି ରୀତିରେ ଆଚରିତ ହୋଇଥାଏ ମହାକାର୍ତ୍ତିକ ତ୍ରୟୋଦଶ ତିଥିରେ । ଆଡକିଆ ଓ ଠିଆକିଆ ବେଶ ଭିତରେ ଫରକ ଏତିକି ଯେ, ଆଡକିଆ ବେଶରେ ସୁନାକିଆ ପ୍ରଲମ୍ବିତ ଭାବରେ ଖୋସା ହୋଇଥାଏ । ଅପର ପକ୍ଷରେ ଆଡକିଆ ବେଶରେ ତାହା ଲମ୍ବ ଭାବରେ ଖୋସା ହୋଇଥାଏ । ସୁନାକିଆଗୁଡିକ ତିଆରି ହୋଇଥାଏ ଶ୍ରୀଜୀଉ ଦ୍ୱୟଙ୍କ ଶ୍ରୀମସ୍ତକରେ ଲଗାଯାଇଥିବା ସୋଲ, କନା, ବେତ, ଜମ୍ବୁରାରେ । ପୁଣି ସେଗୁଡିକ ଠାକୁରଙ୍କ ଚୂଳରେ କଇଁଥ ଅଠାରେ ଖୋସାଯାଏ । ଚୂଳର ଶେଷରେ ଲଗାଯାଏ ସୁବର୍ଣ୍ଣ ଚନ୍ଦ୍ରିକା । ସୁଭଦ୍ରା ମାତା ବି ସୁଶୋଭିତ ହୁଅନ୍ତି ଗୋଟିଏ ସୁବର୍ଣ୍ଣ ଚନ୍ଦ୍ରିକାରେ । ତେବେ ତାଙ୍କ ମସ୍ତକରେ ଚୂଳ ଲାଗି ପରିବର୍ତ୍ତେ ସୁନା କିରୀଟ ଲଗାଯାଏ । ଘାଘଡା, ବରକୋଳି, ପଦ୍ମ, ଗିନି,

ପଦକ ମାଳି ଆଦି ଠାକୁରଙ୍କ ଶ୍ରୀକଣ୍ଠରେ ପିନ୍ଧାଯାଇଥାଏ । ଏହାଛଡା, ଶ୍ରୀପୟର, ଶ୍ରୀହସ୍ତ ଓ ଅନ୍ୟାନ୍ୟ ଅଳଙ୍କାର ବି ମହାପ୍ରଭୁଙ୍କଠାରେ ଲାଗି ହୋଇଥାଏ । ଶ୍ରୀବିଗ୍ରହ ଦ୍ୱୟଙ୍କୁ ଲୁଗା କଛାମାରି ପିନ୍ଧାଇ ଦିଆଯାଏ । ଏହି ପାବନ ଦିବସର ପ୍ରତ୍ୟୁଷରୁ ଠାକୁରମାନଙ୍କ ଅବକାଶ ନୀତି ସମାପନ ଉତାରେ ଏହି ବେଶ ପୁଷ୍ପାଳକ ସେବକମାନଙ୍କ ଦ୍ୱାରା ସମ୍ପନ୍ନ କରାଯାଇଥାଏ । ସ୍ୱୟଂ ଭଗବାନଙ୍କ ଅବତାର ବାମନଙ୍କର ସେଇ ସର୍ବମୟ ସ୍ୱରୂପକୁ ସ୍ମରଣ କରାଯାଇ କାର୍ତ୍ତିକ ମାସର ତ୍ରୟୋଦଶ ତିଥିରେ ମହାପ୍ରଭୁଙ୍କର ତ୍ରିବିକ୍ରମ ବେଶ କରାଯାଇଥାଏ । ଉତ୍କଳୀୟ ପଞ୍ଚସଖା ପଲ୍ଲୀମାନେ ଏହି ବେଶକୁ ସଂଦର୍ଶନ କରି ପରମ ଆତ୍ମତୃପ୍ତି ଲାଭ କରିଥାନ୍ତି । ବାମନଙ୍କୁ ପଞ୍ଚୁକରେ ଦଶବେଶରୁ କଂଟିଲୋ ନୀଳମାଧବ ଜୀଉଙ୍କୁ ସକାଳେ ନଟବର ବେଶ ଓ ସନ୍ଧ୍ୟାରେ କାଞ୍ଚି କାବେରୀ ବେଶ ଏହିଦିନ ହିଁ ଅନୁଷ୍ଠିତ ହୋଇଥାଏ ।

**ନୃସିଂହ ବା ଡାଳକିଆ ବେଶ :** ଶ୍ରୀଜୀଉଙ୍କ ଏହି ବେଶ ଅନୁଷ୍ଠିତ ହୋଇଥାଏ କାର୍ତ୍ତିକ ଚତୁର୍ଦ୍ଦଶୀ ତିଥିରେ । ଲକ୍ଷ୍ମୀ ନୃସିଂହ ତଥା ବୈକୁଣ୍ଠ ବେଶ ରୂପେ ମଧ୍ୟ ଏହା ଅଭିହିତ । ଶ୍ରୀଜୀଉମାନଙ୍କ ଅବକାଶ ନୀତି ଅନ୍ତେ ଅନୁଷ୍ଠିତ ହୁଏ ଏହି ଲକ୍ଷ୍ମୀ ନୃସିଂହ ବେଶ । ସୁନାକିଆ ଡାଳି ଭଳି ଠିଆ ହୋଇଥିବା ଯୋଗୁଁ ଏହା ଡାଳିବେଶ ନାମରେ ଖ୍ୟାତ । ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ବଡଠାକୁର ବଳଭଦ୍ରଙ୍କ ଶ୍ରୀମସ୍ତକର ଶିଖର ଭାଗରେ ଜରି, ବେତ, କନାର ଡାଳି ଦ୍ୱୟ ଚୂଳ ସଂଲଗ୍ନ ହୋଇଥାଏ । ସୋଲ ଜରିରେ ନିର୍ମିତ ଥୋକେ ଫୁଲ ଧାଡି ଧାଡି କରି ଲଗାଯାଇଥାଏ ଏହି ଡାଳି ଓ ଚୂଳରେ । ତନ୍ମଧ୍ୟରେ ଖୋସା ହୋଇଥାଏ ସୁବର୍ଣ୍ଣ କିଆ । ଶ୍ରୀମୁଖରେ ଗୋଟିଏ ଗୋଟିଏ ବଳା ଲଗାଯାଇ ସମ୍ପୂର୍ଣ୍ଣ ବେଶକୁ ଧରି ରଖାଯାଇଥାଏ । ଡାଳିକିଆ ବେଶରେ ଲଗାଯାଇଥାଏ ମାଳି ଆଉ ପଦକ ମାଳି । ସେହିପରି ଠାକୁରଙ୍କଠାରେ ଲାଗି ହୋଇଥାଏ ଶ୍ରୀଭୁଜ ଆଉ ଶ୍ରୀପୟର । ଆୟୁଧ ରୂପେ ମହାପ୍ରଭୁଙ୍କ ଶ୍ରୀହସ୍ତରେ ଶଙ୍ଖ ଓ ଚକ୍ର ଆଉ ବଡ ଠାକୁରଙ୍କ ଶ୍ରୀହସ୍ତରେ ହଳ ଓ ମୂଷଳ ଶୋଭା ପାଇଥାଏ । ଦେବୀ ସୁଭଦ୍ରା ବି ଆଭୂଷିତା ହୁଅନ୍ତି ଅନେକ ମୂଲ୍ୟବାନ ସୁନା ଅଳଙ୍କାର ଓ ଆଭୂଷଣରେ । ଶିରରେ ଦେବୀଙ୍କର ଲାଗେ ସୁବର୍ଣ୍ଣ କୀରିଟ । ଲକ୍ଷ୍ମୀନୃସିଂହଙ୍କ ଉପାସକ ଶ୍ରୀଶଙ୍କରାଚାର୍ଯ୍ୟ ଲକ୍ଷ୍ମୀନୃସିଂହଙ୍କର ସ୍ତୁତିଗାନ କରିଥିବାରୁ ଏହି ବେଶ ଶଙ୍କରାଚାର୍ଯ୍ୟଙ୍କ ସମୟରୁ ଅବା ପରବର୍ତ୍ତୀ ଶଙ୍କରପନ୍ଥୀ ଶ୍ରୀଧର ସ୍ୱାମୀଙ୍କ ଅମଳରୁ ଆରମ୍ଭ ହୋଇଥିବା ଅନୁମିତ । ତେବେ ଏ କଥା ସ୍ୱୀକାର୍ଯ୍ୟ ଯେ, ମହାପ୍ରଭୁଙ୍କର ମୂଳ ସ୍ୱରୂପ ହେଉଛି ନୃସିଂହ । ସେଥିପାଇଁ କାର୍ତ୍ତିକ ମାସରେ ପଞ୍ଚୁକ ମଧ୍ୟରେ ତାଙ୍କୁ ନୃସିଂହ ବେଶ କରାଯାଇଥାଏ । ଏ ବେଶକୁ ସଂଦର୍ଶନ କଲେ ମର୍ତ୍ତ୍ୟବାସୀ ବୈକୁଣ୍ଠବାସୀ ହୋଇଥାନ୍ତି ବୋଲି ଭକ୍ତ ଶ୍ରଦ୍ଧାଳୁ ଓ ଦର୍ଶନାର୍ଥୀଙ୍କ ଭିତରେ ରହିଛି ଅଖଣ୍ଡ ବିଶ୍ୱାସ । ଏହି ବୈକୁଣ୍ଠ ଚତୁର୍ଦ୍ଦଶୀ ଅବସରରେ କୁଆଡେ କଣ୍ଟିଲୋ ନୀଳମାଧମ ଜୀଉଙ୍କୁ ଗରୁଡ ଗୋବିନ୍ଦ ବେଶ ଓ ସନ୍ଧ୍ୟାରେ ନୃସିଂହ ବିଦାରଣ ବେଶରେ ସୁସଜ୍ଜିତ କରାଯାଇଥାଏ ।

**ରାଜ ରାଜେଶ୍ୱର ବା ସୁନାବେଶ :** କାର୍ତ୍ତିକ ମାସ ଅନ୍ତିମ ପଞ୍ଚୁକ ଦିବସରେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କୁ ସୁଶୋଭିତ କରାଯାଇଥାଏ ରାଜରାଜେଶ୍ୱର ବେଶରେ । ଠାକୁରଙ୍କର ଏହି ବେଶ ରାଜବେଶ ଭାବେ ସୁବିଦିତ । ଅବକାଶ ନୀତି ସମାପନ ପରେ ଏ ବେଶ ଅନୁଷ୍ଠିତ ହୋଇଥାଏ । ଦାରୁତ୍ରୟ ନାନା ପ୍ରକାର ରତ୍ନ ତଥା ପୁଷ୍ପ ଅଳଙ୍କାର ଓ ମୂଲ୍ୟବାନ ଆଭୂଷଣରେ ସୁଶୋଭିତ ହୋଇ ରାଜରାଜେଶ୍ୱର ବେଶ ଧାରଣ କରିଥାନ୍ତି । ଏହି ବେଶ କରାଇଥାନ୍ତି ଶ୍ରୀମନ୍ଦିରର ପୁଷ୍ପାଳକ ସେବକମାନେ । ଶ୍ରୀମନ୍ଦିରର ସ୍ୱତ୍ତ୍ୱଲିପି ଅନୁସାରେ ଏ ବେଶରେ ଶ୍ରୀଭୁଜ-୪, କୀରିଟ-୩ ମୂର୍ତ୍ତି, ଶ୍ରୀପୟର-୪ ମୂର୍ତ୍ତି, କର୍ଣ୍ଣ-୬ ମୂର୍ତ୍ତି, ଚନ୍ଦ୍ର ସୂର୍ଯ୍ୟ-୬ ମୂର୍ତ୍ତି, ହଳ-ମୂଷଳ-୨ ମୂର୍ତ୍ତି, ଚନ୍ଦ୍ରିକା-୨, ଘାଗଡା-୧, କଦମ୍ବ ମାଳି-୪ ମୂର୍ତ୍ତି, ହରିଡା କଦମ୍ବ ମାଳି (୧-୩୮ କଦମ୍ବ, ୩୮-ହରିଡା) ଶ୍ରୀଜଗନ୍ନାଥ, ତାବିଜ ମାଳି-୧ ମୂର୍ତ୍ତି, ସେବତୀ ମାଳି-୩ ମୂର୍ତ୍ତି, କୁଣ୍ଡଳ-୪, ଚିତା (ତିଳକ)-୨, ରୂପାଶଙ୍ଖ-୧ ମୂର୍ତ୍ତି, ଶ୍ରୀମୁଖ ପଦ୍ମ-୪ ମୂର୍ତ୍ତି, ବାହାଡା ମାଳି-୨ ମୂର୍ତ୍ତି, ବାଘନଖୀ ମାଳି- ୧ମୂର୍ତ୍ତି, ଓଡ଼ିଆଣୀ- ୩ ମୂର୍ତ୍ତି, ଶଙ୍ଖଚକ୍ର- ୧ମୂର୍ତ୍ତି, ତ୍ରିଶାଖା- ୨ମୂର୍ତ୍ତି, ଅଳକା- ୩ମୂର୍ତ୍ତି, ତଡଗି- ୨ମୂର୍ତ୍ତି ଆଦି ମୂଲ୍ୟବାନ ରତ୍ନ ସ୍ୱର୍ଣ୍ଣ ଅଳଙ୍କାରମାନ ଲଗାଯାଇଥାଏ । ସକାଳ ଧୂପ ଓ ଭୋଗମଣ୍ଡପ ସମର୍ପଣ ଉତାରେ ସାହାଣ ମେଲା ଦର୍ଶନ ହୋଇଥାଏ । ଏହି ବେଶଟି ସୂନା ବେଶ ରୂପେ ଅଭିହିତ । କାରଣ ଏ ବେଶରେ ମୂଲ୍ୟବାନ ସ୍ୱର୍ଣ୍ଣ ରତ୍ନ ଅଳଙ୍କାରମାନ ତିନି ଠାକୁରଙ୍କଠାରେ ଲାଗି କରାଯାଇଥାଏ । ଯେହେତୁ ମହାପ୍ରଭୁ ଶ୍ରୀଜଗନ୍ନାଥ ଦ୍ୱାରକା କୃଷ୍ଣଙ୍କର ଐଶ୍ୱର୍ଯ୍ୟ ଭାବକୁ ପରିପ୍ରକାଶ କରିଥିଲେ, ସେଥିଲାଗି କାର୍ତ୍ତିକ ମାସରେ ସେ ରାଜରାଜେଶ୍ୱର ବେଶ ଧାରଣ କରି ଏହି ଐଶ୍ୱର୍ଯ୍ୟ ଭାବକୁ ପ୍ରକଟିତ କରିଥାନ୍ତି । ମହାପ୍ରଭୁ ଶ୍ରୀଜଗନ୍ନାଥ ଯେ ଭକ୍ତବତ୍ସଳ- ଏ କଥା ଭକ୍ତମାନଙ୍କୁ ଠାକୁରଙ୍କର ଏହି ମାନବୀୟ ବେଶ ସୂଚାଇ ଥାଏ ଅମାନବୀୟ ଢଙ୍ଗରେ । ଅର୍ଥାତ୍ ଦୂରରୁ ଡାକିଲେ ଅବା ଶୁଦ୍ଧ ଅନ୍ତର୍ମନରେ ସାତ୍ତ୍ୱିକ ଚିନ୍ତନରେ, ତନ୍ମୟ ଚିତ୍ତରେ ଚିନ୍ତନ କଲେ ସେ ଭକ୍ତମାନଙ୍କୁ ଦର୍ଶନ ଦେଇ ଉଦ୍ଧାର କରିଥାନ୍ତି ଆଉ ଭକ୍ତର ଦୁଃଖ ଦୂର କରିଥାନ୍ତି । ମନୁଷ୍ୟ ମନରୁ ହୀନମନ୍ୟତା, ସଂକୀର୍ଣ୍ଣତା, କଳୁଷ କାଳିମାକୁ

ବିଦୂରିତ କରିବା ଉଦ୍ଦେଶ୍ୟରେ ସେ ଯେ ଜାତି ବର୍ଣ୍ଣ ଲିଙ୍ଗ ନିର୍ବିଶେଷରେ ରତ୍ନ ସିଂହାସନରେ ବିରାଜମାନ ହୋଇ ସକଳ ଜନସାଧାରଣଙ୍କୁ ଦର୍ଶନ ଦେଇଥାନ୍ତି– ଏ କଥା ସାହାଣ ମେଲା ଦର୍ଶନ ହିଁ ଦର୍ଶାଇଥାଏ । ମୋଟ ଉପରେ କହିବାକୁ ଗଲେ ଏହି ରାଜରାଜେଶ୍ୱରୀ ବେଶରେ ଶ୍ରୀବିଗ୍ରହମାନେ ମୂଲ୍ୟବାନ ରତ୍ନାଳଙ୍କାରରେ ସୁଶୋଭିତ ହୋଇ ଭକ୍ତଶ୍ରଦ୍ଧାଳୁ ତଥା ଦର୍ଶନାଭିଳାଷିମାନଙ୍କୁ ଦର୍ଶନ ଦେଇଥାନ୍ତି ।

ଏହି ପାବନ ଅବସରରେ ଶରଣକୂଳସ୍ଥ ବିଖ୍ୟାତ ଶୈବପୀଠ ଲଡୁବାବାଙ୍କ ପାର୍ଶ୍ୱ ଦେବତା ଭାବେ ପୂଜିତ ହେଉଥିବା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସନ୍ଧ୍ୟାରେ ଅନୁଷ୍ଠିତ ହୋଇଥାଏ ଏହି ରାଜବେଶ । ଶ୍ରୀଜଗନ୍ନାଥ ପାଟ ବସ୍ତ୍ର ଓ ସ୍ୱର୍ଣ୍ଣ ଅଳଙ୍କାର ପରିଧାନ କରି ରାଜାଭିଷେକ ପରିପାଟୀରେ ଭୂଷିତ ହୋଇ ଅଯୋଧ୍ୟାରେ ଶ୍ରୀରାମଙ୍କୁ ଦର୍ଶନ ଦେଇଥିଲେ ବୋଲି କିମ୍ବଦନ୍ତୀରୁ ସମ୍ୟକ ସୂଚନା ମିଳିଥାଏ । କଣ୍ଟିଲୋ ନୀଳମାଧବଙ୍କ ମନ୍ଦିରରେ ସନ୍ଧ୍ୟାରୁ ରାତି ଯାଏ ଚାଲୁ ରହେ । ପ୍ରତ୍ୟୁଷରୁ ତାଙ୍କୁ ଲକ୍ଷ୍ମୀ ନାରାୟଣ ବେଶରେ ସୁସଜ୍ଜିତ ହୋଇ କାଳେ ଅଯୋଧାରେ ପ୍ରଭୁ ଶ୍ରୀରାମଙ୍କୁ ଦର୍ଶନ ଦେବାକୁ ପଡିଥିଲା ବୋଲି ପୌରାଣିକ କିମ୍ବଦନ୍ତୀରୁ ଜଣାଯାଏ । ଏହି କିମ୍ବଦନ୍ତୀରୁ ଉପଲବ୍ଧ ତଥ୍ୟାନୁସାରେ ତଥା ପରମ୍ପରାର ଆଧାରରେ ବଡି ସକାଳୁ ତାଙ୍କୁ ଲକ୍ଷ୍ମୀ ନାରାୟଣ ବେଶରେ ସୁସଜ୍ଜିତ କରାଯାଇଥାଏ । ତତ୍ପରେ ଅନୁଷ୍ଠିତ ହୋଇଥାଏ ତାଙ୍କର ଗଜ ଉଦ୍ଧାରଣ ବେଶ । ନୀଳ ମାଧବଙ୍କ ଦକ୍ଷିଣ ପାର୍ଶ୍ୱସ୍ଥିତ ଶ୍ରୀରାଧା ମାଧବ ଜୀଉଙ୍କ ନିମନ୍ତେ ରାଇ ରାଜାର ଆକର୍ଷଣୀୟ ବେଶ କରାଯାଇ ଭକ୍ତମାନଙ୍କ ଅନ୍ତର୍ମନରେ ଭକ୍ତିପୂତ ଭାବ ଉଦ୍ରେକ କରାଯାଇଥାଏ । ସେଇ ବେଶକୁ ସଂଦର୍ଶନ କଲେ ଦର୍ଶନାର୍ଥୀଙ୍କ ଚର୍ମ ନେତ୍ର ଶୁଦ୍ଧପୂତ ଆଉ ଚଞ୍ଚଳ, ବିଚଳିତ ମନକୁ ଚକିତ କରିବାର ବ୍ୟବସ୍ଥା କରାଯାଇଥାଏ ।

**ନାଗାର୍ଜୁନ ବେଶ :** ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନାଗାର୍ଜୁନ ବେଶ ଅନୁଷ୍ଠିତ ହୁଏ ପରମ ଭକ୍ତ ପବନ ସୁତ ହନୁମାନଙ୍କର ବୀର ବେଶ ଭଳି । ଗୋସ୍ୱାମୀ ତୁଳସୀ ଦାସ ଏହି ହନୁମାନ ପୀଠରେ ସିଦ୍ଧି ଲାଭ କରିବାର ପ୍ରବାଦ ପ୍ରଚଳିତ ଥିବାରୁ ଶ୍ରୀକ୍ଷେତ୍ରରେ ଏହା ମହାବୀର ସିଦ୍ଧ ବୀର ହନୁମାନ ନାମରେ ପ୍ରସିଦ୍ଧି ଲାଭ କରିଛି । କାର୍ତ୍ତିକ ମାସର ପଞ୍ଚୁକ ୬ଦିନ ପଡିଲେ ଅର୍ଥାତ୍ ମଳ ତିଥିରେ ଅନୁଷ୍ଠିତ ହୁଏ ଏ ବେଶ । ଏହି ନାଗାର୍ଜୁନ ବେଶ ପ୍ରତିବର୍ଷ କାର୍ତ୍ତିକ କୃଷ୍ଣ ପଞ୍ଚମୀ ତିଥିରେ ଆଚରିତ ହୋଇଥାଏ । ଶ୍ରୀକ୍ଷେତ୍ର ପୁରୀସାହି ଯାତର ନାଗା ସହିତ ଏହି ବେଶ ଓତଃପ୍ରୋତ ଭାବେ ଜଡିତ । ଏହି ବେଶରେ ମହାପ୍ରଭୁଙ୍କ ଅଣ୍ଟାରେ ଭିଡା ହୁଏ ଏକ ନାଗା । ଧନୁ, ଶରପୂର୍ଣ୍ଣ ତୂଣୀର, ସୋଲରେ ନିର୍ମିତ କଟାରୀ, ଛୁରୀ ଢାଲ (ଅଣ୍ଟାରେ) ଓ ମୁଣ୍ଡରେ ହାଣ୍ଡିଆ ଏବଂ ବାଘନଖ ଓ ଏରା ପକ୍ଷୀର ପର ତାଙ୍କର ସର୍ବାଙ୍ଗରେ ସୁସଜ୍ଜିତ କରାଯାଇଥାଏ । ମହାପ୍ରଭୁ ଓ ବଡଠାକୁର ବଳଭଦ୍ର ନାଗାର୍ଜୁନ ବେଶରେ ଶ୍ରୀହସ୍ତ ଓ ଶ୍ରୀପୟର ଲାଗି ହୁଅନ୍ତି । ଉଭୟଙ୍କ ହସ୍ତ ଧାରଣ କରିଥାଏ ଓଜମାଳ । ମହାପ୍ରଭୁଙ୍କ ବାମ ହସ୍ତ ରୂପା ଶଙ୍ଖ ଆଉ ଡାହାଣ ହସ୍ତ ଚକ୍ର ଧାରଣ କରିଥିବା ବେଳେ ବଡଠାକୁର ବଳଭଦ୍ର ବାମ ହସ୍ତରେ ଶୋଭା ପାଉଥାଏ ମୂଷଳ ଓ ଦକ୍ଷିଣ ହସ୍ତରେ ହଳ । ଘାଗଡା, ପଦ, ହରିଡାକଣ୍ଠି, ବାଘନଖି ଆଦି ନାନାଦି ମାଳି ମହାପ୍ରଭୁ ଏ ବେଶରେ ବିମଣ୍ଡିତ ହୋଇଥାନ୍ତି । ମହାପ୍ରଭୁଙ୍କ ବାହୁ ମୂଳରେ କଳିଙ୍ଗ, କଟିରେ କଟି ଢାଲ, କମରପଟିରେ ଛୁରୀ, କଟାରୀ, ସିଙ୍ଗଡା ଓ ଜଙ୍ଗରେ ଘଣ୍ଟି ଶୋଭା ପାଇଥାଏ । ସେହିଭଳି ଦେବୀ ସୁଭଦ୍ରାଙ୍କ ଶିରରେ ସୁନାର ମୁକୁଟ ଓ ଚନ୍ଦ୍ରିକା କର୍ଣ୍ଣାଳଙ୍କାର ତଡଗି ଆଉ ଗଳାରେ ହାର ଶୋଭା ପାଇଥାଏ । ନାଗାର୍ଜୁନ ହେଉଛି ଭଗବାନ ବିଷ୍ଣୁଙ୍କର ଏକ ସ୍ୱରୂପର ବେଶ । ପୁନଶ୍ଚ, ଶ୍ରୀମନ୍ଦିରରେ ଶୈବ ଓ ବିଷ୍ଣୁଙ୍କର ଅନନ୍ୟ ସମନ୍ୱୟ ଥିବା ଦୃଷ୍ଟିଗୋଚର ହୋଇଥାଏ । ସେଥିପାଇଁ ଏହି ବେଶ ସେହି ସମ୍ମିଶ୍ରଣର ଫଳ ସ୍ୱରୂପ ବୋଲି ବିବେଚିତ ହୋଇଥାଏ । ଏହା ମଧ୍ୟ ଶ୍ରୀସିଦ୍ଧ ମହାଦେବଙ୍କ ନାଗବେଶ ବା ବେଲେଶ୍ୱର ଚୂଡ ବେଶ ଭାବେ ବିଦିତ । ଏହି ବେଶ ଦର୍ଶନ କରିବା ଲାଗି ସ୍ନାନ ଅନ୍ତେ ଭକ୍ତମାନେ ମନ୍ଦିରରେ ଭିଡ ଜମାଇଥାନ୍ତି । ତେବେ ବୀରପଣକୁ ଓଡ଼ିଆ ପାଇକମାନଙ୍କ ମଧ୍ୟରେ ଜାଗ୍ରତ କରାଇବା ଏହି ବେଶର ଏକ ପ୍ରମୁଖ ଉଦ୍ଦେଶ୍ୟ ବୋଲି ସର୍ବସମ୍ମତି ଭାବେ ସ୍ୱୀକାର କରାଯାଇଥାଏ ।

ନିଃସ୍ୱ, ନିଧନୀଙ୍କଠାରୁ ଆରମ୍ଭ କରି ଧନୀ କୁବେରମାନଙ୍କ ପର୍ଯ୍ୟନ୍ତ ଏ ଦୈବୀ ସୁଯୋଗକୁ ହାତଛଡା ନଦେଇ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଏସବୁ ବେଶ ସଂଦର୍ଶନର ସୌଭାଗ୍ୟ ଅର୍ଜନ କରନ୍ତୁ । ଅବଶ୍ୟ ଏକଥା ସତ ସେଇ କାଳିଆ ଠାକୁର ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଡୋରି ନଲାଗିଲେ ଆମେ ଅଲୌକିକ ବେଶ ସବୁକୁ ଦର୍ଶନ କରିପାରିବା ନାହିଁ, ତେବେ କୌଣସି ଦର୍ଶନାର୍ଥୀ ଯେ ଏହି ସଂଦର୍ଶନରୁ ବଞ୍ଚିତ ହୋଇ ହତୋତ୍ସାହିତ ନଥିହନ୍ତି, ଅଥବା ନୈରାଶ୍ୟର ଗ୍ଲାନିରେ ଦଗ୍ଧୀଭୂତ ନହୁଅନ୍ତୁ, ଖେଦ ବା ଅବଶୋଷ ମନରେ ସ୍ୱଗୃହକୁ ନବାହୁଡନ୍ତୁ ଆଉ ଜୀବନ ଧନ୍ୟ ହେଲା ବୋଲି ଅନନ୍ୟ ଅନୁଭବ କରି ଏହି ସୁଯୋଗ ପୁଣି କେବେ ଆସିବ ମନାସି ଗୃହ ଅଭିମୁଖେ ପ୍ରତ୍ୟାବର୍ତ୍ତନ କରନ୍ତୁ–ଏହା ହେଉଛି ଏ ବେଶ ସବୁ ଦର୍ଶନର ତାତ୍ପର୍ଯ୍ୟ ।

---

ଜିଲ୍ଲା କୋଷାଗାର ଅଧିକାରୀ, ପୁରୀ

# ଓଡ଼ିଶାର ଅଧିଦେବ ଓ ତା'ର ଭାଷାର ପ୍ରାଚୀନତା

ଜାନକୀ ବଲ୍ଲଭ ପଟ୍ଟନାୟକ

ସମସ୍ତେ ନିଜ ନିଜ ମାତୃଭୂମିକୁ ଭଲ ପାଆନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଆମ ମାତୃଭୂମି ଓଡ଼ିଶାର ସ୍ୱତନ୍ତ୍ରତା ଅଛି । ଏହା ସର୍ବକାରଣର କାରଣ ସର୍ବେଶ୍ୱର ଭଗବାନ୍ ଶ୍ରୀଜଗନ୍ନାଥଙ୍କ ଦେଶ । ଉତ୍କଳୀୟମାନଙ୍କ ମୂଳ ପରିଚୟ ହେଲା ସେମାନେ ଜଗନ୍ନାଥଙ୍କ ସେବକ, ଦାସ । ଆମରି ଆରାଧ ଦେବ ହେଲେ ଜଗତର ନାଥ ଶ୍ରୀଜଗନ୍ନାଥ । କେଉଁ କେଉଁଠାରେ ଶ୍ରୀକୃଷ୍ଣଙ୍କ ଲୀଳା କ୍ଷେତ୍ରକୁ ଦ୍ୱାରକା, ବ୍ରଜ ନାମରେ ନାମିତ କରାଯାଇ ସେଠି ସେ ଦ୍ୱାରକାଧୀଶ, ବ୍ରଜବିହାରୀ ଇତ୍ୟାଦି ନାମରେ ନାମିତ ହୋଇଛନ୍ତି । ମାତ୍ର ଓଡ଼ିଆ ତାଙ୍କୁ ଜଗନ୍ନାଥ ଜଗଦୀଶ୍ୱର ଭାବେ ନାମ ଦେଇ ଏ ଜାତିର ଉଦାରତାକୁ ବିଶ୍ୱରେ ପ୍ରତିପାଦନ କରିଛି । ଏ ଜାତି ଉଦାର, ସଂକୀର୍ଣ୍ଣମନା ନୁହେଁ, ମଶାଣିଟା ଏଠି ସ୍ୱର୍ଗଦ୍ୱାର, ଦାଣ୍ଡ ବଡ଼ଦାଣ୍ଡ, ପ୍ରସାଦ ମହାପ୍ରସାଦ, ଦେଉଳ ବଡ଼ ଦେଉଳ, ଠାକୁର ବଡ଼ ଠାକୁର, ବାନା ପତିତପାବନ ବାନା, ଚକ୍ର ଏଠି ନୀଳଚକ୍ର । ଜଗନ୍ନାଥ ନାମ ଶାସ୍ତ୍ରୀୟ ଏହା ମନଗଢ଼ା ନୁହେଁ । ଶ୍ରୀକୃଷ୍ଣ ଯେ ଜଗନ୍ନାଥ ଏହାର ବିଶଦ୍ ବର୍ଣ୍ଣନା କରିବା ଅନାବଶ୍ୟକ । କାରଣ ପ୍ରାୟ ସମସ୍ତ ଶାସ୍ତ୍ର ଯଥା ଗୀତା, ଭାଗବତ, ବିଷ୍ଣୁ, ସ୍କନ୍ଦ, ବାମନ, ବ୍ରହ୍ମପୁରାଣ, କପିଳ ଓ ବାମଦେବ ସଂହିତା, ନୀଳାଦ୍ରି ମହୋଦୟାଦି ସମସ୍ତ ଗ୍ରନ୍ଥରେ ଏହାର ସ୍ପଷ୍ଟ ପ୍ରମାଣ ରହିଛି । କିନ୍ତୁ ଶ୍ରୀକୃଷ୍ଣ ଯଦିଓ ମଥୁରାରେ ଜନ୍ମ ହେଲେ ସେଠି ନ ରହି ଗୋକୁଳ ଗଲେ, ଅଳ୍ପ ଦିନରେ ପୁଣି ମଥୁରା ଏବଂ ସେଠାରେ ନ ରହି ଦ୍ୱାରକା ଗଲେ ସେଠାରେ ସେ ସ୍ୱଧାମ ଗମନ କଲେ କିନ୍ତୁ ତା'ପରେ ସେ ନିତ୍ୟ ଗୋଲକ ବୈକୁଣ୍ଠ ଉତ୍କଳର ପୁରୀଧାମରେ ମହାଭାବରେ ବିଭାବତ ବିଗ୍ରହ, ଅର୍ଚ୍ଚା, ଦାରୁବ୍ରହ୍ମ ରୂପେ ନୀଳକନ୍ଦରରେ ଅଛନ୍ତି । ତାଙ୍କ ନାମାନୁସାରେ ସ୍ଥାନର ନାମ ପୁରୁଷୋତ୍ତମ । ନିଜ ନାମରେ ନାମିତ ସ୍ଥାନ, ଧାମ ଆଉ ଅନ୍ୟ କେଉଁଠି ନାହିଁ ପୁରୁଷୋତ୍ତମ ବ୍ୟତୀତ ।

ସ୍କନ୍ଦ ପୁରାଣର ଉତ୍କଳଖଣ୍ଡରେ ଅଛି :

ମନୋସ୍ୱାୟଂ ଭୁବସ୍ୟାଂଶେ ଦ୍ୱିତୀୟେ ତୁ ଚତୁର୍ଯୁଗେ<br>
କୃତସ୍ୟ ପ୍ରଥମେ ହେତ୍ରୁ ଦୃଶ୍ୟତେ କ୍ରତ ସଂସ୍ଥିତି ।<br>
ଜ୍ୟେଷ୍ଠା ମହଂ ରାବତୀର୍ଣ୍ଣ ସ୍ତତ୍ ପୁଣ୍ୟଂ ଜନ୍ମବାସର

ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ସ୍ୱାୟଂଭୁବ ମନୁଙ୍କ ଦ୍ୱିତୀୟ ଚତୁର୍ଯୁଗର ପ୍ରଥମ ସତ୍ୟଯୁଗରେ ପ୍ରଥମ ଜ୍ୟେଷ୍ଠ ପୂର୍ଣ୍ଣିମାରେ କେତେକ ପଣ୍ଡିତ ଏହାକୁ ଗଣନା କରି କହିଛନ୍ତି ଯେ ଶହେ ଛଅଷଠି କୋଟି ବାଷଠି ଲକ୍ଷ ଅଣତିରିଶି ହଜାର ଏକ ଶହ ବର୍ଷ ପୂର୍ବେ ସ୍ନାନ ପୂର୍ଣ୍ଣିମାଟି ଶ୍ରୀଜଗନ୍ନାଥଙ୍କ ଜନ୍ମ ଦିନ । ଏଥିରୁ ଶ୍ରୀଜଗନ୍ନାଥଙ୍କ ପ୍ରାଚୀନତା ସହଜରେ ଜଣାପଡ଼େ । ସାଧାରଣତଃ ମନୁଷ୍ୟ ମନରେ ପ୍ରଶ୍ନ ଉଠିବ ଯେ ଶ୍ରୀକୃଷ୍ଣ ତ ଦ୍ୱାପରରେ ଆଜିକୁ ୫ ହଜାର ବର୍ଷ ପୂର୍ବେ ପ୍ରକଟ ହୋଇ ଥିଲେ ସେ କିପରି ଜଗନ୍ନାଥ ହେଲେ । ଏହାର ଶାସ୍ତ୍ରୀୟ ଉତ୍ତର ହେଲା ଶ୍ରୀକୃଷ୍ଣ ନିତ୍ୟ ଗୋଲକରେ ସର୍ବଦା ଅଧିଷ୍ଠିତ । ଦ୍ୱାପରରେ ମାୟା ମନୁଷ୍ୟ ରୂପେ ଆସିଲେ ମଧ ତା ପୂର୍ବରୁ ଯେ ସେ ନ ଥିଲେ ଏପରି ନୁହେଁ ଭଗବାନ୍ ସନାତନ ପୁରୁଷ । ସତ୍‌ଚିତ୍ ଆନନ୍ଦ । ନିତ୍ୟ ଧାମରୁ ବିଭିନ୍ନ ସମୟରେ ସେ ଭୌମକୁ ଅବତରଣ କରନ୍ତି । ସେତେବେଳେ ତାଙ୍କୁ ଅବତାର କୁହାଯାଏ । କିନ୍ତୁ ନିତ୍ୟଧାମରେ ସ୍ଥିତ ଶ୍ରୀକୃଷ୍ଣ ଜଗନ୍ନାଥ ଅବତାରୀ, ତାଙ୍କଠୁ ସମସ୍ତ ଅବତାର ଆସନ୍ତି ଭୌମକୁ ।

ସ୍କନ୍ଦ ପୁରାଣର ଉପରୋକ୍ତ ଶ୍ଳୋକାନୁସାରେ ଉତ୍କଳ ପ୍ରଦେଶର ଶ୍ରୀପୁରୁଷୋତ୍ତମରେ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଯଦି ଏତେ ପ୍ରାଚୀନ, ତେବେ ଉତ୍କଳ ପ୍ରଦେଶ ଓ ତା'ର ଭାଷା କାହିଁକି ପ୍ରାଚୀନ ହେବ ନାହିଁ ? ଏବେ ଆମ ଭାଷା, ଭାରତ ସରକାରଙ୍କ ଦ୍ୱାରା ଶାସ୍ତ୍ରୀୟ ମାନ୍ୟତା ପାଇଲା ୬ଷ୍ଠ ସ୍ଥାନରେ । ହେଲେ ମଧ ଏହା ଆମର କେବଳ ଦାବି ନ ଥିଲା ଏହା ଥିଲା ଆମର ଅଧିକାର ।

ସ୍କନ୍ଦ ପୁରାଣ କଥା ଯଦି ଆମକୁ ଠିକ୍ ଲାଗୁନି ତେବେ ଭରତ ମୁନିଙ୍କ ନାଟ୍ୟଶାସ୍ତ୍ର, ଯାହାକି ତ୍ରେତା ଯୁଗରେ ରଚିତ ହୋଇଥିଲା ସେଇଥିରୁ ଜଣାଯାଏ, ଅର୍ଥାତ୍–

ପୂର୍ବଂ କୃତଯୁଗେ ବିପ୍ରା ବୃତ୍ତେ ସ୍ୱାୟମ୍ଭୁବେନ୍ତରେ
ତ୍ରେତାଯୁଗେ ସଂପ୍ରବୃତ୍ତେ ମନୋ ବୈବସ୍ୱତସ୍ୟ ଚ ।

ଏହି 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ହୋଇଥିବା ଉଡ୍ର ବିଭାଷା ଯେ ବର୍ତ୍ତମାନର ଓଡ଼ିଆ ଭାଷା, ଏହା ସ୍ପଷ୍ଟ ଜଣାପଡ଼େ । ନାଟ୍ୟଶାସ୍ତ୍ର ବର୍ଣ୍ଣିତ ଉଡ୍ରମାଗଧି ଆବନ୍ତୀ ଦାକ୍ଷିଣାତ୍ୟ ଚ ପାଞ୍ଚଳୀ ଚୋଡ୍ରମାଗଧି, ଇତ୍ୟେବାବନ୍ତୀପାଞ୍ଚଳ ଦାକ୍ଷିଣାତ୍ୟ ଚୋଡ୍ରୋ ମାଗଧୈଃ ତେଷୁ ପ୍ରଯୁଜ୍ୟତେ ହ୍ୟେଷା ପ୍ରବୃତ୍ତି ଶ୍ଚୋଡ୍ରମାଗଧି ଇତ୍ୟାଦି ବାକ୍ୟରୁ ଉଡ୍ର ଓ ମଗଧ ସମେତ କେତେଗୁଡ଼ିଏ ପ୍ରଦେଶରେ ଉଡ୍ରମାଗଧି ପ୍ରଚଳନ ଥିଲେ ମଧ୍ୟ ବିଶେଷ କରି କଳିଙ୍ଗ ଓ ଉତ୍କଳରେ ଉଡ୍ରଭାଷା ନିଶ୍ଚୟ ଥିଲା ଏହା ପ୍ରମାଣିତ ହୁଏ । ଓଡ଼ିଶା ସେତେବେଳେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ତା'ର ବିଭିନ୍ନ ଅଞ୍ଚଳ ଉଡ୍ର, କଳିଙ୍ଗ, ଉତ୍କଳ, ତୋଷଳ, କୋଷଳ ଆଦି ନାମରେ ପରିଚିତ ହୋଇ ସେହି ସେହି ଅଞ୍ଚଳରେ ଉଡ୍ରଭାଷାର ପ୍ରଚଳନ ଥିବାରୁ ଏଠାକାର ଅଧିବାସୀମାନଙ୍କୁ ଓଡ଼ିଆ ଏବଂ ପ୍ରଦେଶର ନାମ ଓଡ଼ିଶା ହେଲା, ପୂର୍ବନାମ ଥିଲା ଉତ୍କଳ । ଶ୍ରୀବ୍ୟାସଦେବ କୃତ ମୂଳ ଭାଗବତରେ ଏବଂ ଶ୍ରୀଜଗନ୍ନାଥ ଦାସ କୃତ ଓଡ଼ିଆ ଭାଗବତ ୯/ ୧ରେ ସୁଦ୍ୟୁମ୍ନଙ୍କ ପୁତ୍ର ଉତ୍କଳଙ୍କ ନାମାନୁସାରେ ଅସ୍ମଦୀୟ ପ୍ରଦେଶ ଉତ୍କଳ ନାମରେ ପରିଚିତ ଏହା ଉଲ୍ଲେଖ ଅଛି । ଉତ୍କଳ ବ୍ରହ୍ମାଙ୍କର ସପ୍ତମ ଅଧସ୍ତନ ଥିଲେ । ଶାସ୍ତ୍ରରେ ଅଛି ଭାରତବର୍ଷର ଦକ୍ଷିଣ ପ୍ରଦେଶରେ ଉତ୍କଳ ଦେଶ ଆଦି ସତ୍ୟ ଯୁଗରୁ ଆରମ୍ଭ ହୋଇ ଏ ଯାବତ୍ ପ୍ରତିଷ୍ଠିତ ହୋଇଛି । ଏଣୁ ଏହାର ଭାଷା ମଧ୍ୟ ଦେଶ ପ୍ରତିଷ୍ଠା କାଳରୁ ଅଛି ନିଶ୍ଚୟ, ଅତଏବ ଓଡ଼ିଆ ଭାଷା ଅତ୍ୟନ୍ତ ପ୍ରାଚୀନ । ଓଡ଼ିଶାରୁ ହିଁ ଅଥର୍ବ ବେଦର ସୃଷ୍ଟି ବୋଲି ଜଣାପଡ଼େ । ଉତ୍କଳ ରାଜାଙ୍କ ପୁଣ୍ୟ ପ୍ରଭାବରେ ଜଗଦୀଶ୍ୱର ଶ୍ରୀକୃଷ୍ଣ ଦ୍ୱାରକାରେ ରାଧା ଭାବରେ ବିଭାଜିତ ହୋଇ ଯେଉଁ ମହାଭାବ ରୂପ ଧାରଣ କରିଥିଲେ ସେ ହିଁ ଶ୍ରୀରାଧାକୃଷ୍ଣ ମିଳିତ ବିଗ୍ରହ ଶ୍ରୀଜଗନ୍ନାଥ ରୂପେ ପୁରୁଷୋତ୍ତମ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରି ଉତ୍କଳର ଆରାଧ୍ୟ ଦେବ ଭାବେ ଅର୍ଚ୍ଚିତ ହେଉଛନ୍ତି ଯାହାଙ୍କ ସ୍ୱରୂପ ହେଲା ତଂ ବନ୍ଦେ ମହାନଂଦ ନଂଦନ ତନୁଂ ରାଧାଧବଂ ମାଧବଂ ଏବଂ କଳିଯୁଗରେ ସେ ହିଁ ସ୍ୱୀୟ ବିଷ୍ଣୁ ସହସ୍ରନାମର ସନ୍ୟାସ କୃଚ୍ଛମୋ ଶାନ୍ତ ନିଷ୍ଠା ଶାନ୍ତି ପରାୟଣ ବାକ୍ୟକୁ ସତ୍ୟରେ ପରିଣତ କରିବା ପାଇଁ ଶ୍ରୀ ରାଧାଭାବ ଦ୍ୟୁତି ସୁବଳିତ କୃଷ୍ଣ ଅର୍ଥାତ୍ ଗୌରାଙ୍ଗ ରୂପେ ଶ୍ରୀଜଗନ୍ନାଥଙ୍କୁ କିପରି ଭକ୍ତି କରିବାକୁ ହେବ ତାହା ଶିକ୍ଷା ଦେଇଛନ୍ତି । ବାଲ୍ମୀକୀ ରାମାୟଣ ଉତ୍ତରାକାଣ୍ଡ ୧୦୮ ସର୍ଗରେ ଭଗବାନ ଶ୍ରୀରାମ ଆରାଧ୍ୟ ଜଗନ୍ନାଥ ଇକ୍ଷ୍ୱାକୁ କୁଳ ଦୈବତଂ ନିଜର ଏହି ଶ୍ରୀଜଗନ୍ନାଥ ସ୍ୱରୂପ କଥା କହିଛନ୍ତି । ଏଣୁ ଆମ ଭାଷା, ସଂସ୍କୃତି ଓ ଆମ ରାଜ୍ୟ ଯେ କେତେ ପ୍ରାଚୀନ ତାହା ଏସବୁରୁ ଜଣାପଡ଼େ । ମହାଭାରତ ଯୁଦ୍ଧ ପ୍ରାୟତଃ ଖ୍ରୀଷ୍ଟପୂର୍ବ ୩୦୦୦ ବର୍ଷ ପୂର୍ବେ ହୋଇଥିଲା । ଶ୍ରୀକୃଷ୍ଣଙ୍କ ଭୌମଲୀଳା ସଂଗୋପନ ଖ୍ରୀଷ୍ଟପୂର୍ବ ୩୦୧୨ ବୋଲି କୁହାଯାଉଛି । ମହାଭାରତ ଯୁଦ୍ଧରେ କଳିଙ୍ଗ ସେନା ଅଂଶ ଗ୍ରହଣ କରିଥିଲେ । ସେମାନେ ସାହସୀ ଥିଲେ । ଏଣୁ କଳିଙ୍ଗା ସାହସିକା ବୋଲି ମଧ୍ୟ କୁହାଯାଇଛି । ମହାଭାରତ ଯୁଦ୍ଧ ପୂର୍ବରୁ ଉଡ୍ର ଜାତି ସଭ୍ୟ ଥିଲେ । ସମୁଦ୍ରରେ ନୌଯାତ୍ରା କରି ଦୂରଦୂରାନ୍ତରେ ବାଣିଜ୍ୟ କରି ଓଡ଼ିଶାକୁ ସମୃଦ୍ଧ କରିଥିଲେ ଏବଂ ସେହି ସେହି ସ୍ଥାନରେ ଶ୍ରୀଜଗନ୍ନାଥ ସଂସ୍କୃତି ଓ ଚେତନାର ପରିପ୍ରସାର କରିଥିଲେ । ବର୍ତ୍ତମାନ ବଙ୍ଗଳାର ମେଦିନୀପୁରର ତମ୍ଲୁକର ନାମ ଥିଲା ତାମ୍ରଲିପ୍ତ ଓଡ଼ିଶାର ଏକ ଖ୍ୟାତନାମା ବନ୍ଦର ଥିଲା । ଏପରିକି ଶ୍ରୀଚୈତନ୍ୟ ଦେବ ଓଡ଼ିଶାକୁ ଆସିବା ବେଳେ ତାମ୍ରଲିପ୍ତ ଓଡ଼ିଶାରେ ଥିଲା । ସେଠାରେ ସେ ମଧୁସୂଦନ ବିଷ୍ଣୁ (ଜିଷ୍ଣୁ ହରି)ଙ୍କୁ ଦର୍ଶନ କରିଥିଲେ । ତାମ୍ରଲିପ୍ତ ରାଜା ଯୁଧିଷ୍ଠିରଙ୍କ ଯଜ୍ଞର ଅଶ୍ୱକୁ ବାନ୍ଧି ରଖିଥିବାରୁ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ସେଠାକୁ ଯାଇଥିଲେ । ତାଙ୍କର ମୂର୍ତ୍ତି ଜିଷ୍ଣୁ ହରି ଏବେ ତମଲୁକ୍‌ରେ ଅଛନ୍ତି । ଗଜପତି ପ୍ରତାପରୁଦ୍ରଙ୍କ ବିଶ୍ୱସ୍ତ ରାୟ ଶ୍ରୀରାମାନନ୍ଦ ପଟ୍ଟନାୟକ ଗୋଦାବରୀ ପ୍ରଦେଶ ଏବଂ ତାଙ୍କ ଭାଇ ଗୋପୀନାଥ ପଟ୍ଟନାୟକ ମେଦିନୀପୁରର ପ୍ରଶାସକ ଥିଲେ ଶ୍ରୀଚୈତନ୍ୟ ଦେବଙ୍କ ସମୟରେ । ଏଣୁ ଗଙ୍ଗାରୁ ଗୋଦାବରୀ ଥିଲା ଆମ ଓଡ଼ିଶା । ପରେ ବିଦେଶୀମାନଙ୍କ ଚକ୍ରାନ୍ତରେ ଏସବୁ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଗଲା । ଓଡ଼ିଶାର ତାମ୍ରଲିପ୍ତ ବନ୍ଦର ଦେଇ ବହୁ ଜୈନ ତୀର୍ଥଙ୍କର ବୌଦ୍ଧ ଭିକ୍ଷୁ ଚୀନ୍ ପରିବ୍ରାଜକ ଫାହିୟାନ୍ , ହୁଏନଂସା ଓଡ଼ିଶା ଆସିଥିବାର ଇତିହାସରୁ ଜଣାଯାଏ । ଅଶୋକଙ୍କ କନ୍ୟା ଓ ପୁତ୍ର ଏହିଠାରୁ ସିଂହଳ ଯାଇଥିଲେ । ସନ୍ୟାସ ଗ୍ରହଣ କରି ଶ୍ରୀଚୈତନ୍ୟ ଏହିଠାରେ ପହଞ୍ଚି ପ୍ରଥମେ ଭିକ୍ଷା କରିଥିଲେ ।

ମହାଭାରତ ଅନୁସାରେ ଭାରତକୁ ଦୀର୍ଘତମା ଋଷି ଓ ରାଣୀ ସୁଦେଷ୍ଣାଙ୍କ ଗର୍ଭରୁ ଜାତ ୩ ପୁତ୍ର ଅଙ୍ଗ, ବଙ୍ଗ, କଳିଙ୍ଗଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ବର୍ତ୍ତମାନ ଏହା ଆସାମ, ବଙ୍ଗଳା ଓଡ଼ିଶା ନାମରେ ଖ୍ୟାତ । ବଙ୍ଗଳା ଅପେକ୍ଷା ଓଡ଼ିଶାର ଗ୍ରନ୍ଥାବଳୀ ବହୁ ପ୍ରାଚୀନ । ଓଡ଼ିଶାର ମଧ୍ୟ ଭାଗ ଥିଲା ଖୋର୍ଦ୍ଧା । ଏଠାର

ଗଜପତି ଥିଲେ ଲକ୍ଷେ ରାଜାଙ୍କର ମଉଡ଼ମଣି । ଏବେ ମଧ୍ୟ ଶୁଦ୍ଧ ଓଡ଼ିଆ ଭାଷା କେବଳ ଖୋର୍ଦ୍ଧାରେ ହିଁ ଦେଖାଯାଏ । ଯେଉଁମାନେ ଆମଠାରୁ ଶିକ୍ଷିତ ବୋଲି ନିଜକୁ ମନେ କରନ୍ତି ଏବଂ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି କହୁଥିଲେ, ସେମାନଙ୍କ ଭାଷା ଏ ପର୍ଯ୍ୟନ୍ତ ଶାସ୍ତ୍ରୀୟ ମାନ୍ୟତା ପାଇ ନାହିଁ । ଇତିହାସ କହେ ଉଡ୍ରଭାଷା ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀର । ଆମ ଗଜପତିଙ୍କୁ ଗୌଡ଼େଶ୍ୱର କୁହାଯାଏ । ଗୌଡ଼ କହିଲେ କେବଳ ବଙ୍ଗଳାକୁ ବୁଝାଏ ନାହିଁ । ପାଞ୍ଚଟି ଦେଶକୁ ଗୌଡ଼ ଦେଶ କୁହାଯାଇଛି– ସାରସ୍ୱତ, କାନ୍ୟକୁବ୍‌ଜ, ମଧ୍ୟ ଗୌଡ଼, ମୈଥିଳ ଏବଂ ଉତ୍କଳ ।

ସାର ସ୍ୱତଃ କାନ୍ୟ କୁବ୍‌ଜା ଉତ୍କଳା ମୈଥିଳାଶ୍ଚଯେ ।
ଗୌଡ଼ାଶ୍ଚ ପଞ୍ଚଧା ଶ୍ଚୈବ ପଞ୍ଚ ଗୌଡ଼ାଃ ପ୍ରକୀର୍ତ୍ତିତା ।

ପାଣ୍ଡବମାନେ ବୈତରଣୀ ତଟ ଯାଜପୁରର ବିରଜାଙ୍କୁ ଦର୍ଶନ କରିବା କଥା ମହାଭରତରେ ଅଛି । (ବନପର୍ବ ୧୪ ଅ ୪ –୫) ସେତେବେଳେ ସମୁଦ୍ରତଟ (ପୁରୀ)ଠାରେ ଏକ ପୁରୁଷ ମଣ୍ଡପ ବା ବେଦୀ ଥିଲା ଏବଂ ପୁରୁଷୋତ୍ତମଙ୍କ ଉପାସନା ହେଉଥିଲା । ତାହା ହିଁ ପରେ ପୁରୁଷୋତ୍ତମ ଏବଂ ପୁରୀ ହେଲା । ଏଠାରେ ଉଡ୍ରମାନେ ସମୁଦ୍ର ତୀରରେ ମହାଦାରୁ (ଦାରୁବ୍ରହ୍ମ)ଙ୍କ ଉପାସନା କରୁଥିଲେ । ସେହି ଦାରୁବ୍ରହ୍ମ ହିଁ ଶ୍ରୀଜଗନ୍ନାଥ । ତାଙ୍କ ଧାମ ହେଲା– ପୁରୁଷୋତ୍ତମ ବା ପୁରୀ । କିନ୍ତୁ ଗୌତମ ବୁଦ୍ଧଙ୍କ ଦନ୍ତ ସେଠି ଥିବାରୁ ଦନ୍ତପୁରୀରୁ ପୁରୀ ହୋଇନାହିଁ । ଶ୍ରୀଜଗନ୍ନାଥ ଗୌତମଙ୍କ ବହୁ ପୂର୍ବରୁ ପୁରୀରେ ପ୍ରକଟିତ । ଗୌତମ ବିଷ୍ଣୁଙ୍କ ନବମ ଅବତାର ନୁହଁନ୍ତି । ନବମ ଅବତାର ବୁଦ୍ଧ କୀକଟ (ଗୟା)ରେ ଅଞ୍ଜନା ଓ ହେମସଦନଙ୍କ ପୁତ୍ର ରୂପେ ଜନ୍ମ ହୋଇଥିଲେ । ଭାଗବତ ୧ମ ସ୍କନ୍ଦ, ୩ୟ ଅଧ୍ୟାୟ ଓ ୨୪ ଶ୍ଳୋକରେ ବୁଦ୍ଧନାମ୍ନାଞ୍ଜନ ସୁତ କୀକଟେଷୁ ଭବିଷ୍ୟତି ଏହା ସ୍ପଷ୍ଟ ଅଛି । ଅବତାର ଅଞ୍ଜନା ସୁତ ବୁଦ୍ଧଙ୍କ ତପସ୍ୟାସ୍ଥଳ ବୋଧିଦ୍ରୁମ ତଳେ ଗୌତମ ତପସ୍ୟା କରି ବୁଦ୍ଧତ୍ୱ ପ୍ରାପ୍ତ ହୋଇ ନାସ୍ତିକ ଶୂନ୍ୟବାଦ ପ୍ରଚାର କରିଥିଲେ ଓ ସେ ଥିଲେ ବେଦ ନିନ୍ଦୁକ । ଅବତାର ବୁଦ୍ଧ କିନ୍ତୁ ଆସ୍ତିକ ।

ଗୌତମ ବୁଦ୍ଧ ଉଡ୍ର ଲିପିସହ ୬୪ଟି ଲିପି ଶିକ୍ଷା କରିଥିବାର ଜଣାଯାଏ । ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ବିବିଧ ଅଦ୍‌ଭୁତ ଭାଷାବିତ୍ ଥିବା କଥା ଭକ୍ତି ରସାମୃତ ସିନ୍ଧୁ ଗ୍ରନ୍ଥରେ ଉଲ୍ଲେଖ ଅଛି । ସେ ଗୁରୁ ସନ୍ଦିପନୀଙ୍କଠାରୁ ଓଡ଼ିଆ ସମେତ ବହୁ ପ୍ରକାର ଭାଷା ଶିକ୍ଷା କରିଥିବା କଥା ସାରଳା ଦାସ ଓଡ଼ିଆ ମହାଭାରତରେ ଉଲ୍ଲେଖ କରିଛନ୍ତି ।

ଓଡ଼ିଆ ତେଲେଙ୍ଗା ଆଉ ନାଗରୀ ଦକ୍ଷିଣୀ
କନାଉଜ ଦ୍ରାବିଡ଼ ଯେ ଆଦିଭାଷା ଘେନି
ଏହିପରି ଲେଖିଲେ ଯେ ଭାଷା ଚଉଷଠି
ନବ ଦିନେ ଲେଖିଲେ ଯେ ତାଳପତ୍ର ଚିଠି ॥

ସେହି ଶ୍ରୀକୃଷ୍ଣଙ୍କୁ ଭଗବଦ୍ ଗୀତାରେ କୁହାଯାଇଛି ଅନନ୍ତ ଦେବେଶ ଜଗନ୍ନିବାସ ଓ ଦେବଦେବ ଜଗତ୍‌ପତେ ଏବଂ ଭାଗବତର ବହୁ ସ୍ଥାନରେ ଶ୍ରୀକୃଷ୍ଣ ହିଁ ଶ୍ରୀଜଗନ୍ନାଥ ଏହା ପ୍ରତିପାଦିତ ହୋଇଛି । ସେ ହିଁ ଓଡ଼ିଶାର ଅଧିଦେବ, ତାଙ୍କ ଭାଷା ହିଁ ଓଡ଼ିଆ ଭାଷା, ଯାହା ଏକ ପୁରାତନ ଭାଷା ।

ବୁଢ଼ୀ ବଗିଚା, ଖୋର୍ଦ୍ଧା



# ପାର୍ବଣ ତିଥିରେ ଦେବୀ ଗୁଣ୍ଡିଚା

**ପ୍ରଫେସର (ଡା.) ଜୟକୃଷ୍ଣ ଦାସ**

ଭାରତବର୍ଷର ଉତ୍କଳ ଭୂଇଁରେ ମହାବିଷ୍ଣୁଙ୍କ ଆୟୁଧ ପତିତ ହେବାରୁ ଚାରି ମହାକ୍ଷେତ୍ର ସୃଷ୍ଟି ହୋଇ ଜନମାନସରେ ପବିତ୍ର କ୍ଷେତ୍ର ରୂପେ ପରିଗଣିତ ହୋଇ ଆସିଛି। ଶଙ୍ଖକୁ ନେଇ ଶଙ୍ଖକ୍ଷେତ୍ର ବା ପ୍ରକାରାନ୍ତରେ ଶ୍ରୀକ୍ଷେତ୍ର/ପୁରୁଷୋତ୍ତମ/ ଜଗନ୍ନାଥ ଧାମ/ନୀଳାଚଳ କ୍ଷେତ୍ର ଯେଉଁଠାରେ ଆଷାଢ଼ ମାସ ଶୁକ୍ଳ ଦ୍ୱିତୀୟା ତିଥିରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ନବଦିନାତ୍ମକ ଶ୍ରୀଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହୋଇଥାଏ। ଶ୍ରୀମନ୍ଦିରରୁ ଦିଅଁମାନେ ବାହାରି ଉତ୍ତରାୟଣ ଯାତ୍ରା କରି ଗୁଣ୍ଡିଚା ମନ୍ଦିରକୁ ଯାଇଥାନ୍ତି ଏବଂ ନବମୀ ଦିନ ଅର୍ଥାତ୍ ଦଶମୀ ତିଥିରେ ଶ୍ରୀମନ୍ଦିରକୁ ବାହୁଡି ଆସିଥାନ୍ତି। ଦ୍ୱିତୀୟ ଆୟୁଧକୁ ନେଇ ଚକ୍ରକ୍ଷେତ୍ର/ ଶୈବ/ହର/କୀର୍ତ୍ତିବାସ କଟକ/ ତ୍ରିଭୁବନେଶ୍ୱର/ଭୁବନେଶ୍ୱର ଲିଙ୍ଗକ୍ଷେତ୍ର, ଯେଉଁଠାରେ ପବିତ୍ର ଶୁକ୍ଳ ଅଷ୍ଟମୀ ତିଥିରେ ମହାଦେବଙ୍କର ପଞ୍ଚଦିନାତ୍ମକ ଅଶୋକାଷ୍ଟମୀ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ। ଏହି ପବିତ୍ର ତିଥିରେ ଦିଅଁମାନେ ରାମଲିଙ୍ଗଙ୍କ ପାଖକୁ ଯାଇ ସେଠାରେ ଅବସ୍ଥାନ କରି ଦ୍ୱାଦଶୀ ତିଥିରେ ବାହୁଡି ଆସିଥାନ୍ତି । ଚତୁର୍ଥରେ ପଦ୍ମକୁ ନେଇ ପଦ୍ମକ୍ଷେତ୍ର ବା ପ୍ରକାରାନ୍ତରେ ସୂର୍ଯ୍ୟ/ ସୌର/ ଅର୍କକ୍ଷେତ୍ର କୋଣାର୍କ, ଯେଉଁଠି ସୂର୍ଯ୍ୟନାରାୟଣଙ୍କର ମାଘ ମାସ ସପ୍ତମୀ ତିଥିରେ ସପ୍ତବିଂଶ ଦିବସବ୍ୟାପୀ ରଥଯାତ୍ରା ହୋଇଥାଏ, ଯାହାକୁ ସୌର ଗୁଣ୍ଡିଚା କୁହାଯାଏ। ପରବର୍ତ୍ତୀ ସମୟରେ ମନ୍ଦିର ଭାଙ୍ଗିଯିବା ସହ ରଥଯାତ୍ରା ମଧ୍ୟ ଆଜି ଅବଲୁପ୍ତ ହୋଇଯାଇଛି। ତୃତୀୟଟି ହେଉଛି ଗଦା ଆୟୁଧକୁ ନେଇ ଗଦାକ୍ଷେତ୍ର ବା ପ୍ରକାରାନ୍ତରେ ନାଭି/ଗୟା/ଯଜ୍ଞ/ଅବିମୁକ୍ତ/ଗୌରୀ/ ପାର୍ବତୀକ୍ଷେତ୍ର, ଯେଉଁଠାରେ ଆଶ୍ୱିନ ମାସ ଶୁକ୍ଳ ପ୍ରତିପଦଠାରୁ ମହାନବମୀ ପର୍ଯ୍ୟନ୍ତ ଶ୍ରୀବିରଜାଙ୍କ ନବଦିନବ୍ୟାପୀ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ। ଏହାକୁ ଦେବୀ ଗୁଣ୍ଡିଚା କୁହାଯାଏ। ଓଡ଼ିଶାର ପୁରାତନ ରାଜଧାନୀ ଯାଜପୁରର ଶ୍ରୀବିରଜାଙ୍କ ରଥଯାତ୍ରାରେ ମହାଦେବୀଙ୍କ ବିଜେ ପ୍ରତିମାଙ୍କୁ ରଥରେ ବସାଇ ମନ୍ଦିର ବେଢ଼ାର ଚତୁଃପାର୍ଶ୍ୱରେ ନବଦିନବ୍ୟାପି ରଥକୁ ପରିଭ୍ରମଣ କରାଯାଇଥାଏ। ଏହି ରଥଯାତ୍ରାର ପୂର୍ବଉତ୍ତାରୁ ମୂଳାଷ୍ଟମୀ ବା ଜିତାଷ୍ଟମୀ ଦିନ ଦେବୀଙ୍କଠାରେ ଷୋଡଶୋପଚାର ପୂଜା କରାଯାଇ ଦେବୀଙ୍କ ସମ୍ମୁଖ ଭାଗରେ ଥିବା ହୋମକୁଣ୍ଡର ଦକ୍ଷିଣରେ ଗଣପତିଙ୍କ ପାଇଁ ଗୋଟିଏ ଓ ନବଦୁର୍ଗାଙ୍କ ଉଦ୍ଦେଶ୍ୟରେ ୯ଟି ଏହିପରି ୧୦ଟି କଳସ ବସାଯାଇ ପୂଜା କରାଯାଏ। ତହିଁ ଉତ୍ତାରୁ ପଞ୍ଚମୀ ତିଥି ଦିନ ଯଜ୍ଞ/ହୋମକୁଣ୍ଡର ଚତୁଃପାର୍ଶ୍ୱରେ ପାଞ୍ଚଟି କଳସ ବସାଯାଇଥାଏ। ପୂର୍ବରେ ଗଣେଶ, ଆଗ୍ନେୟରେ ବ୍ରହ୍ମା, ମହେଶ୍ୱର ନୈଋତରେ, ବିଷ୍ଣୁ ବାୟବ୍ୟରେ ଓ ଐଶାନ୍ୟରେ ଅନନ୍ତ ବାସୁକୀଙ୍କ ନାମରେ ସମୁଦାୟ ପଞ୍ଚକଳସ ସ୍ଥାପନ କରାଯାଇ ପୂଜା କରାଯାଏ। ତତ୍‌ପରବର୍ତ୍ତୀ ମହାଷ୍ଟମୀ ରାତି ସନ୍ଧିପୂଜା ସମୟରେ ଦେବୀଙ୍କ ପୀଠରେ ଚାମୁଣ୍ଡାଙ୍କ ଉଦ୍ଦେଶ୍ୟରେ ଆଉ ଗୋଟିଏ କଳସ ବସାଯାଇଥାଏ। ଏହିପରି ୧୦+୫+୧ ଷୋହଳ କଳସ ସହ ଷୋଡ଼ଶୋପଚାର ପୂଜାର୍ଚ୍ଚନା କରାଯାଏ। ଶୁଭ ସୁନିଆଠାରୁ ନିର୍ମାଣ ଚାଲିଥିବା ମହାଦେବୀଙ୍କର ରଥକୁ ମହାଳୟା ଅମାବାସ୍ୟା ଦିନ ରଥାଧିବାସ କରାଯାଇ ପ୍ରତିପଦ ତିଥିରେ ରଥ ପ୍ରତିଷ୍ଠା ସହ ରଥଚାଳନା କରାଯାଇଥାଏ। ଏହି ଷୋଡଶୋପଚାର ପୂଜା ଜିତାଷ୍ଟମୀଠାରୁ ମହାଳୟା ପର୍ଯ୍ୟନ୍ତ ଉଭୟ ଦେବୀଙ୍କ ପୀଠ ଓ ଘଟମାନଙ୍କ ପାଖରେ ହେବା ସହିତ ପ୍ରତିପଦଠାରୁ ମହାନବମୀ ପର୍ଯ୍ୟନ୍ତ ତିନୋଟି ସ୍ଥାନ ଅର୍ଥାତ୍ ଦେବୀଙ୍କ ପୀଠ, ଘଟ ବା ହୋମକୁଣ୍ଡ ଏବଂ ଦେବୀଙ୍କ ରଥ ଉପରେ ହୁଏ, ଯାହାକି ଅନ୍ୟତ୍ର କୌଣସି ରଥଯାତ୍ରା ବା ଦେବୀ ପୀଠରେ ପରିଲକ୍ଷିତ ହୁଏ ନାହିଁ। କିଛି ସଦ୍‌ଗ୍ରନ୍ଥ ତଥା ଆଧାତ୍ମିକ ପତ୍ରପତ୍ରିକାରେ ବିରଜାଙ୍କ ରଥକୁ ଦେବୀ ସୁଭଦ୍ରାଙ୍କ ରଥସହ ତୁଳନା କରିବାର ଅବତାରଣା

କରାଯାଇଥାଏ । କିନ୍ତୁ ପ୍ରକୃତରେ ଦେବୀ ଗୁଣ୍ଡିଚା ରଥର କେବଳ ଚକସଂଖ୍ୟା, ରଥର ମୁଖ ଓ ଧ୍ୱଜାର ଶକ୍ତିଙ୍କୁ ଛାଡିଲେ ସେମିତି କିଛି ସାମଞ୍ଜସ୍ୟ ନାହିଁ ଉଭୟ କ୍ଷେତ୍ରରେ, ଏହାର ଏକ ସମୀକ୍ଷା ନିମ୍ନରେ ଦିଆଗଲା ।

| ସୁଭଦ୍ରାଙ୍କ ରଥ | ବିରଜାଙ୍କ ରଥ |
|---|---|
| ରଥଯାତ୍ରା– ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିଠାରୁ ଦଶମୀ ପର୍ଯ୍ୟନ୍ତ | ଆଶ୍ୱିନ ଶୁକ୍ଳ ପ୍ରତିପଦଠାରୁ ମହାନବମୀ ପର୍ଯ୍ୟନ୍ତ |
| ରଥର ନାମ– ଦେବଦଳନ/ ଦର୍ପଦଳନ | – ସିଂହଧ୍ୱଜ/ ବିଜୟାରଥ/ ମାୟାରଥ |
| ରଥର ଉଚ୍ଚତା– ୩୧ ହାତ<br>ବେଦୀ ଉପରୁ ୨୧ ହାତ | – ୩୪ ହାତ |
| ରଥରେ ବ୍ୟବହୃତ ସମୁଦାୟ ଦାରୁ = ୭୧୧ | – ୮୮୨ ଖଣ୍ଡ |
| ଚକ ସଂଖ୍ୟା– ୧୨ | – ୧୨ |
| ରଥାବରଣ– କୃଷ୍ଣ ଓ ଲୋହିତ | – ଶ୍ୱେତ + କୃଷ୍ଣ + ଲୋହିତ |
| ସାରଥୀ– ଅର୍ଜୁନ | – ସୃଷ୍ଟିକର୍ତ୍ତା ବ୍ରହ୍ମା |
| ରଥରେ ବ୍ୟବହୃତ ଅଶ୍ୱ ସଂଖ୍ୟା– ୪ ଲୋହିତବର୍ଣ୍ଣ<br>(ରୋଚିକ– ମୋଚିକା– ଜିତା– ଅପରାଜିତା) | – ୫ ଶ୍ୱେତ ବର୍ଣ୍ଣ<br>(ଅସ୍ତି–ଭାନ୍ତି–ପ୍ରିୟ–ନାମ–ରୂପ) |
| ରଥର ମୁଖ– ବ୍ରହ୍ମାବର୍ତ୍ତ | – ବ୍ରହ୍ମାବର୍ତ୍ତ |
| ରଥରେ ବ୍ୟବହୃତ ଦଉଡି– ସ୍ୱର୍ଣ୍ଣଚୂଡ | – ସ୍ୱର୍ଣ୍ଣଚୂଡ ଓ ଶଙ୍ଖଚୂଡ |
| ରଥର ରକ୍ଷକ/ଶକ୍ତି– ଜୟଦୁର୍ଗା | – ବ୍ରହ୍ମଚାରିଣୀ |
| ରଥର ରକ୍ଷିକା– ଉଗ୍ରଚଣ୍ଡା | – ମହାମାୟା ସରସ୍ୱତୀ |
| ନେତର ନାମ– ନାମଦ୍ୱିକା | – ଚୈତନ୍ୟସଭା |
| ରଥ ଶିରରେ– ଭକ୍ତିର୍ସମେଧ | – ଧ୍ୱଜଚକ୍ରର ନାମ– ପରମ ବୈଷ୍ଣବୀ |
| ରଥର ଆୟୁଧ– ପଦ୍ମକହ୍ଲାର | – ଦୁନ୍ଦୁଭି–ଧନୁ–ଜ୍ୟା–ତୀର–ପିତୁ–ଔଷଧୀଷୁ<br>– ପାର୍ଶ୍ୱଦେବୀ– ୮ |
| ପାର୍ଶ୍ୱ ଦେବତା– ୯<br>ବିମଳା– ଚାମୁଣ୍ଡା– ଭଦ୍ରକାଳୀ<br>ହରଚଣ୍ଡିକା– ମଙ୍ଗଳା– ବରାହୀ<br>କାତ୍ୟାୟନୀ– ଜୟଦୁର୍ଗା– କାଳୀ | – ଅନ୍ୟ ଦେବତା–୨୪<br>– (ଦଶଦିଗପାଳ, ନବଗ୍ରହ ଏବଂ ଅନ୍ୟ ଦେବତାମାନେ) |
| ରଥକାର– କାଳନେମୀ | – ଆଦିବାକ୍ |

**ଏତଦ୍‌ଭିନ୍ନ ବିରଜାଙ୍କ**

ରଥର ବିଦ୍ୟା ହେଉଛନ୍ତି ପଞ୍ଚବିଦ୍ୟା

ରଥର ଦ୍ୱାରସ୍ଥ କଳସ–– ଇନ୍ଦ୍ର ଓ ପ୍ରଜାପତି

ଦ୍ୱାରପାଳିକା– –ବ୍ରହ୍ମା– –କୁଶଭଦ୍ରା– ଯମୁନା/ଗଙ୍ଗା ମନ୍ଦାକିନୀ

ଅଷ୍ଟଦିନର ରକ୍ଷିକା = ଲକ୍ଷ୍ମୀ, ସରସ୍ୱତୀ, ଗୌରୀ, ଧରା, ପୁଷ୍ଟି, ତୁଷ୍ଟି, ମେଧା, ପ୍ରଭାଦେବୀ

ଅଷ୍ଟଦିନର ପ୍ରହରୀ = ଆଦିତ୍ୟଙ୍କ ଅଷ୍ଟପୁତ୍ର

ରଥ ଉପରେ ଧାବମାନ ଦେବତା = ୩୬

ରଥପୀଠର ନାମ– ଅପରାଜିତା

ରଥଟି ଷଟ୍‌କୋଣ ବିଶିଷ୍ଟ = ଚତୁର୍ବେଦ–ବ୍ୟାକରଣ–ଶିକ୍ଷା–ନିରୁକ୍ତ–କଳ୍ପ–ଜ୍ୟୋତିଷ

ରଥ ପଟାରେ ଅଛନ୍ତି = ଅଗସ୍ତି ଆଦି ଋଷିଗଣ

ମୁଖ୍ୟରଥ–ପାଞ୍ଚଥାକ ବିଶିଷ୍ଟ। ଗୋଟିଏ ଥାକର କାଠ ସଂଖ୍ୟା ୪୦ । ତେଣୁ ସମୁଦାୟ ୨୦୦ ଖଣ୍ଡ କାଠ ଏଥିରେ ଖଞ୍ଜା ଯାଇଛି। ଏହି ପାଞ୍ଚଥାକ ପଞ୍ଚମନର ପ୍ରତୀକ, ଯାହାକି ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ।

ରଥାରୂଢ଼ା ଦେବଦେବୀଙ୍କ ଦର୍ଶନ ବିଷୟରେ ଶାସ୍ତ୍ରକାରମାନେ ଖୁବ୍ ଉପାଦେୟ ଭାବେ ଉଲ୍ଲିଖିତ କରିଯାଇଛନ୍ତି ମାନବ ସମାଜର ମଙ୍ଗଳ ନିମନ୍ତେ । ହରକ୍ଷେତ୍ରର ଅଶୋକାଷ୍ଟମୀ ତିଥିରେ ରଥାରୁଢ଼ା ଚନ୍ଦ୍ରଶେଖର / ଲିଙ୍ଗରାଜଙ୍କ ଦର୍ଶନ ବିଷୟରେ କୁହାଯାଇଛି—

ଚୈତ୍ରମାସି ଚ ସଂପ୍ରାପ୍ତେ ଯଦା ଶୁକ୍ଳାଷ୍ଟମୀ ଭବେତ୍
ସାସ୍ୟେ ଗିରିଜୟା ସାର୍ଦ୍ଧଂ ରାମ ଲିଙ୍ଗସ୍ୟ ସନ୍ନିଧଂ
ରଥସ୍ଥଂ ତତ୍ର ମାଂ ଦୃଷ୍ଟ୍ୱା ବ୍ରହ୍ମହତ୍ୟାଦି ପାତକୈ
ମୁଚ୍ୟତେ ନାତ୍ର ସନ୍ଦେହ ସ୍ତ୍ୱପି
ଚଣ୍ଡାଳ ଯୋନିଜଃ – ଏକାମ୍ର ଚନ୍ଦ୍ରିକା।

ଚୈତ୍ରମାସ ଶୁକ୍ଳପକ୍ଷ ଶ୍ରୀରାମନବମୀ ପୂର୍ବଦିନ ଅର୍ଥାତ୍ ଅଷ୍ଟମୀ ତିଥିରେ ଗିରିଜା (ପାର୍ବତୀ), କୁମାର କାର୍ତ୍ତିକେୟ ଏବଂ ନନ୍ଦୀଙ୍କ ସହ ଯାଇ ତୁମଙ୍କୁ ଦର୍ଶନ ଦେବି । ସେହି ସମୟରେ ରଥାରୂଢ଼ା ଭାବରେ ଯେ ମୋତେ ଦର୍ଶନ କରିବ ଆଚାଣ୍ଡାଳ ବ୍ରାହ୍ମଣ ଏପରିକି ବ୍ରହ୍ମହତ୍ୟା ପାପରୁ ମଧ ମୁକ୍ତି ପାଇବ, ଏଥିରେ ସନ୍ଦେହ ନାହିଁ।

ସେହିପରି ପୁରୁଷୋତ୍ତମ କ୍ଷେତ୍ରର ଶ୍ରୀଗୁଣ୍ଡିଚା ଯାତ୍ରା ସମୟରେ ଯେତେବେଳେ ଚତୁର୍ଦ୍ଧାମୂର୍ତ୍ତି ରଥାରୂଢ଼ା ହୋଇଥାନ୍ତି ସେତେବେଳେ ସେହି ବାମନରୂପୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ବା ଦୋଳି ଉପରେ ଜଗନ୍ନାଥ ରୂପୀ ଦୋଳଗୋବିନ୍ଦ ଓ ଚାପଖେଳ ସମୟରେ ଜଗନ୍ନାଥ ରୂପୀ ମଧୁସୂଦନଙ୍କୁ ଦର୍ଶନ କଲେ ମାନବ ତା'ର ପୁନର୍ଜନ୍ମରୁ ମୁକ୍ତି ପାଇଥାଏ। ଶାସ୍ତ୍ରରେ ଅଛି–

ଦୋଳାୟାଂ ଦୋଳଗୋବିନ୍ଦଂ ଚାପେନ ମଧୁସୂଦନଂ
ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ।

କିନ୍ତୁ ପାର୍ବଣ ତିଥିରେ ଯାଜପୁରର ଶ୍ରୀବିରଜା ଦେବୀ ଯେତେବେଳେ ରଥାରୂଢ଼ା ହୋଇଥାନ୍ତି ସେସମୟରେ ତାଙ୍କ ଦର୍ଶନ ବିଷୟରେ ଉଲ୍ଲେଖ ଅଛି–

ଯେ ପଶ୍ୟନ୍ତି ରଥାରୁଢ଼ାଂ ଭ୍ରମନ୍ତି ମମ୍ବିକାଂ ପୁନଃ
ତେ ପଞ୍ଚପାତକୈଁ ର୍ମୁକ୍ତା ଯାନ୍ତି
ତସ୍ୟାଃ ସ୍ୱରୂପତାମ୍– – କପିଳ ସଂହିତା

ଅମ୍ବିକାରୂପୀ ଶ୍ରୀବିରଜାଙ୍କୁ ରଥ ଉପରେ ଦର୍ଶନ କଲେ, ଏହି ମର୍ତ୍ତ୍ୟରେ ମାନବ ଜୀବନ ସମୟରେ ବିଭିନ୍ନ କର୍ମ ବା କୁକର୍ମ ଦ୍ୱାରା ଯେଉଁ ପାପ ହୋଇଥାଏ ସେହିସବୁ ପଞ୍ଚସୁନା ମହାପାତକ ବିନଷ୍ଟ ହୋଇ ମୋକ୍ଷ ଲାଭ ସହ ମହାଦେବୀଙ୍କ ସ୍ୱରୂପକୁ ଦର୍ଶନ କରିଥାନ୍ତି ଅର୍ଥାତ୍ ଆତ୍ମା ପରମାତ୍ମା ସହ ମିଳନ ହୋଇଥାଏ।

ବିଭିନ୍ନ ଶାସ୍ତ୍ରମାନଙ୍କୁ ବିଶ୍ଳେଷଣ ଏବଂ ଅନୁଧ୍ୟାନ କଲେ ଆମେ ନିଶ୍ଚିତ ଭାବେ ଏଥିରେ ଉପନୀତ ହେବା ଯେ ଶକ୍ତିଙ୍କ ଦର୍ଶନ ସଂସାରରେ ସବୁଠୁ ଅଧିକ ଫଳପ୍ରଦ। ସାଧାରଣ ଦର୍ଶନ ବିଧିରେ ଉଲ୍ଲେଖ ଅଛି–

ବିରଜେ ବିରଜା ମାତା ବ୍ରହ୍ମଣା ସଂପ୍ରତିଷ୍ଠିତା
ଯସ୍ୟାଃ ସନ୍ଦର୍ଶନାତ୍ ମର୍ତ୍ତେଃ ପୁନାତ୍ୟା ସପ୍ତମଂକୁଳମ୍।

(ବ୍ରହ୍ମପୁରାଣ– ୪୨ ଅଧ୍ୟାୟ)

ଦଶବର୍ଷ ସହସ୍ରାଣି କାଶ୍ୟାଂ ପୂଜୟତେ ହରମ୍।
ଯତ୍‌ଫଳଂ ତଦବାପ୍ନୋତି ବିରଜାଲୋକନେ ନରଃ ॥
କାଶୀବାସେ ଦିନାର୍ଷ୍ଟୌଚ ଦିନୈକଂ ପୁରୁଷୋତ୍ତମେ।
ତତ୍ ଫଳଂ ଲଭତେ ମର୍ତ୍ତ୍ୟେ ବିରଜା ମୁଖ ଦର୍ଶନେ।

ରଥଯାତ୍ରାର ଅନ୍ତିମ ଦିବସ ଅର୍ଥାତ୍ ମହାନବମୀ ତିଥି ନିଶାର୍ଦ୍ଧରେ ଦେବୀଙ୍କୁ ରଥରୁ ଅବରୋହଣ କରାଯାଇ ଏକ ସୁସଜ୍ଜିତ ବିମାନରେ ଅନତି ଦୂରରେ ଥିବା ଲାଖବିନ୍ଧା ପଡ଼ିଆକୁ ନିଆଯାଇ ସେଠାରେ ଚାରିଦିଗକୁ ଅଥାତ୍ ଧର୍ମ–ଅର୍ଥ–କାମ–ମୋକ୍ଷର ପ୍ରତୀକ ଭାବେ ଚାରିଟି ଶର ନିକ୍ଷେପ କରାଯାଇ ଏକମୁହାଁ ଭାବେ ଦେବୀଙ୍କ ବିମାନକୁ ମନ୍ଦିର ଭିତରକୁ ନିଆଯାଇ ଦ୍ୱାର ଅବରୁଦ୍ଧ କରାଯାଏ। ଦେବୀଙ୍କୁ ପ୍ରପାନକ ଅର୍ପଣ ପୂର୍ବକ ମୁଖ୍ୟ ମନ୍ଦିର ବାହାରେ ଅଧର୍ମ, ଅସତ୍ୟ ତଥା ଦାନବର ପ୍ରତୀକ ଭାବେ ମହିଷ ପ୍ରୋକ୍ଷଣ ହୁଏ ଏବଂ ତତ୍‌ପରଦିନ ଦଶହରାରେ ମହାଦେବୀଙ୍କୁ ଅପରାଜିତା ମନ୍ତ୍ରରେ ପୂଜା କରାଯାଏ। ଏହିପରି ଭାବେ ଯାଜପୁରରେ ଶ୍ରୀବିରଜାଙ୍କ ନବଦିନବ୍ୟାପୀ ରଥଯାତ୍ରା ପାଳିତ ହୋଇଥାଏ।

ସର୍ଜରୀ ଓ ରେଡ଼ିଓଲୋଜି ବିଭାଗ
ଓଡ଼ିଶା ଭେଟେରିନାରି କଲେଜ
ଓୟୁଏଟି, ଭୁବନେଶ୍ୱର

# ସ୍ୱାଧୀନତା ସଂଗ୍ରାମର ଅମର ଶହୀଦ ବାଜି ରାଉତ

**ପଣ୍ଡିତ ତ୍ରିଲୋଚନ ମିଶ୍ର**

ଇଂରେଜମାନେ ଭାରତୀୟ ରାଜାରାଜୁଡା, ଜମିଦାରମାନଙ୍କୁ ଆୟୁଧ କରି ରାଜ୍ୟରେ ଅନ୍ଧାରୀ ଶାସନ ଚାଲୁ ରଖିଥିଲେ । ଏହି ରାଜା ରାଜୁଡାମାନେ ଫିରିଙ୍ଗିମାନଙ୍କ ବଶତା ସ୍ୱୀକାର କରି ସେମାନଙ୍କ ପଦଲେହନ ପୂର୍ବକ ନିରୀହ ପ୍ରଜାମାନଙ୍କୁ ସବୁ ଦିଗରୁ ଶୋଷଣ କରୁଥିଲେ । ଇଂରେଜ ବାହୁଛାୟା ତଳେ ନିଜ ନିଜ ଅଞ୍ଚଳର ଅଖଣ୍ଡ କ୍ଷମତାର ଅଧିକାରୀ ହୋଇ ଏହି ଶାସକ ସମୂହ ମନମାନୀ ଶାସନ ଚଳାଇ ଥିଲେ । ଏହା ଅନ୍ଧାରୀ ମୁଲକ ଶାସନଭାବେ ଜଣା । ନାନା ପ୍ରକାର ବେଠି, ବେଗାରୀ, ଭେଟି, କର ପ୍ରଜାମାନଙ୍କୁ କାଙ୍ଗାଳ କରିଦେଇଥିଲା । ଜୀବନ ଭୟରେ କେହି ରାଜାଙ୍କ ବିରୁଦ୍ଧରେ ମୁହଁ ଖୋଲୁ ନଥିଲେ । ଅନ୍ତରର କୋହ ବଢି ବଢି ବେଳେବେଳେ ଅସହ୍ୟ ଯାତନାରୁ ମୁକ୍ତି ପାଇଁ ବିଦ୍ରୋହର ରୂପ ଧାରଣ କରୁଥିଲା । ୧୯୩୬ ଏପ୍ରିଲ ପହିଲା ଦିନ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇବା ପରେ ପ୍ରଜାମାନଙ୍କ ଆତ୍ମବଳର ଉଦ୍ରେକ ଘଟିଲା । ଫଳରେ ରାଜାଙ୍କ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଦୃଢ ସ୍ୱର ପ୍ରକାଶ ପାଇଲା । ୧୯୩୮ ମସିହାରେ ପ୍ରଜାଙ୍କ ସୁରକ୍ଷା ପାଇଁ ପ୍ରଜାମଣ୍ଡଳ ଗଠିତ ହେଲା । ଏହି ପ୍ରଜାମଣ୍ଡଳକୁ ମାର୍ଗ ଦର୍ଶନ ଦେଇଥିଲେ ଢେଙ୍କାନାଳର ସାରଙ୍ଗଧର ଦାସ, ନୀଳଗିରିର କୈଳାଶ ଚନ୍ଦ୍ର ମହାନ୍ତି, ଆଠଗଡର ଡଃ ରାଧାନାଥ ରଥ, ନୟାଗଡର ଶ୍ରୀଧର ଦାସ, ବାଲାଙ୍ଗୀରର କପିଳ ପ୍ରସାଦ ନନ୍ଦ, ତାଳଚେରର ପବିତ୍ର ମୋହନ ପ୍ରଧାନ, ରଣପୁରର ରଘୁନାଥ ମହାନ୍ତି ଓ ଦିବାକର ପରିଡା ପ୍ରମୁଖ । ଡକ୍ଟର ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ମା' ରାମାଦେବୀ, ନବକୃଷ୍ଣ ଚୌଧୁରୀ, ଗଙ୍ଗାଧର ପାଇକରାୟଙ୍କ ଭଳି ଜନନାୟକମାନଙ୍କ ଅବଦାନ ମଧ୍ୟ କମ୍ ନଥିଲା । ସେସମୟରେ ମହାତ୍ମା ଗାନ୍ଧୀଙ୍କ ପରିଚାଳିତ ସ୍ୱାଧୀନତା ସଂଗ୍ରାମ ଓ ସତ୍ୟାଗ୍ରହ ଇଂରେଜମାନଙ୍କ ସହ ସେମାନଙ୍କ ଗୋଲାମ ରାଜା ରାଜୁଡାମାନଙ୍କ ନିଦ ହଜାଇ ଦେଇଥିଲା । ଔଷଧ ରାଗରେ ତାଟିଆ କାମୁଡିଲା ଭଳି ସେମାନେ ପ୍ରଜାମାନଙ୍କ ଉପରେ ରାଗ ଶୁଝାଉଥିଲେ । ଇଂରେଜ ପଲିଟିକାଲ ଏଜେଣ୍ଟ ଏ ଦିଗରେ ରାଜାରାଜୁଡାମାନଙ୍କୁ ସବୁମତେ ସହଯୋଗ କରି ପ୍ରଜା ଆନ୍ଦୋଳନକୁ ଦମନ କରୁଥିଲେ ।



ଆମ ଓଡ଼ିଶାର ଢେଙ୍କାନାଳର ରାଜାଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ୧୯୩୮ ମସିହା ଜୁନ୍ ମାସରେ ଏଠାରେ ପ୍ରଜା ମଣ୍ଡଳ ଗଠନ ହେଲା । ସ୍ୱାଧୀନତା ପ୍ରତ୍ୟେକ ମାନବର ଜନ୍ମଗତ ଅଧିକାର । ଏହି ବାର୍ତ୍ତା ଗାଁକୁ ଗାଁ ବ୍ୟାପିଗଲା । ଗାନ୍ଧୀଙ୍କ ସ୍ୱଦେଶୀ ଚିନ୍ତନ, ସତ୍ୟାଗ୍ରହ, ବିଦେଶୀ ବର୍ଜନ, ଅସହଯୋଗର କଥା ମଧ୍ୟ ପ୍ରଜାଙ୍କ ନିକଟରେ ପହଞ୍ଚିଗଲା । ପ୍ରଜାମଣ୍ଡଳ ଆନ୍ଦୋଳନ ଦମନ ପାଇଁ ରାଜା ରାଜୁଡା ଲାଗି ପଡିଲେ । ଢେଙ୍କାନାଳର ବଡ ଗାଁ ଭୁବନରେ ପ୍ରଜାମଣ୍ଡଳ ସକ୍ରିୟ ଥିବା ଜାଣି ଇଂରେଜ ପୋଲିସ ବାହିନୀ ୧୯୩୮ ମସିହା ଅକ୍ଟୋବର ମାସ ୧୦ ତାରିଖ ମଧ୍ୟରାତ୍ରରେ ଭୁବନ ଥାନାରେ ପହଞ୍ଚି ଦମନ ଲୀଳା ଆରମ୍ଭ କରିଦେଲେ । ହଜାର ହଜାର ପ୍ରଜା ମଣ୍ଡଳ କର୍ମୀ ଏହାର ପ୍ରତିରୋଧ କରି ଗୁଳି ମୁଖରେ ପଡିଲେ । ରଘୁ ନାୟକ

ଓ ଗୁରି ନାୟକ ଦ୍ୱୟ ଶହୀଦ ହୋଇଗଲେ । ଅନେକ ଅକର୍ମଣ୍ୟ ହୋଇଗଲେ । କିଛି ନିରୀହ ପ୍ରଜାଙ୍କୁ ବନ୍ଦୀ କରି ରଖାଗଲା । ୧୧ ତାରିଖ ରାତ୍ରରେ ଏହି ବନ୍ଦୀମାନଙ୍କୁ ନୀଳକଣ୍ଠପୁର ଘାଟ ପାରି କରାଇ ଢେଙ୍କାନାଳ ଗଡକୁ ନେବାର ବ୍ୟବସ୍ଥା ହେଲା । ଖବର ପାଇ ନୀଳକଣ୍ଠପୁର ପ୍ରଜା ମଣ୍ଡଳ ଘାଟରେ ଥିବା ସରକାରୀ ଡଙ୍ଗାକୁ ଯାଇ ଘାଟ ଜଗି ବସିଲେ । ବର୍ଷା ଭିଜା ରାତ୍ରରେ ପାଳି କରି କର୍ମୀମାନେ ଘାଟ ପାଖରେ ବୁଲାବୁଲି କଲେ । ଠିକ୍ ଭୋର ୪ଟା ସମୟରେ ଇଂରେଜ ପୋଲିସ ବାହିନୀ ଘାଟ ପାଖରେ ପହଞ୍ଚି ଡଙ୍ଗା ଆଣିବାକୁ ନିର୍ଦ୍ଦେଶ ଦେଲେ । ମାତ୍ର କେହି ଶୁଣିଲେ ନାହିଁ । ଘାଟରେ ୪ଜଣ ଗ୍ରାମବାସୀଙ୍କ ସହ ଜଣେ ବାଳକ ପ୍ରଜାମଣ୍ଡଳ ପାଇଁ ଉଦ୍ଦିଷ୍ଟ ଡଙ୍ଗାରେ ବସିଥିବା ଦେଖି ତୁରନ୍ତ ଡଙ୍ଗା ଆଣି ଆସିବାକୁ ଡାକ ଛାଡିଲେ । ମାତ୍ର ପ୍ରଜାମଣ୍ଡଳ ବିନା ଆଦେଶରେ ଡଙ୍ଗା ଘାଟ ଛାଡିବ ନାହିଁ ଉତ୍ତର ଏହି ୧୨ ବର୍ଷର ବୀର ବାଳକ ବାଜି ରାଉତ ଠାରୁ ଶୁଣି ଇଂରେଜ ବାହିନୀ ଆଖିବୁଜା ଗୁଳି ଚଳାଇବା ଆରମ୍ଭ କରିଦେଲା । ଘଟଣା ସ୍ଥଳରେ ବାଜି ରାଉତ ସହ ୪ଜଣ ପ୍ରଜାମଣ୍ଡଳ ସମର୍ଥକ ସେଠାରେ ଶହୀଦ ହୋଇଗଲେ । ଢେଙ୍କାନାଳ ରାଜା ଓ ଇଂରେଜ ସରକାରଙ୍କ ଅମାନବୀୟ ଗୁଳିକାଣ୍ଡ ଖବର ରାଜ୍ୟବାସୀଙ୍କୁ ମର୍ମାହତ କଲା । ଶହୀଦମାନଙ୍କ ପାର୍ଥିବ ଶରୀର କଟକ ଅଣାଗଲା । ବାଟରେ ପ୍ରଜାମଣ୍ଡଳ ସମର୍ଥକମାନଙ୍କ ସହ ଅଞ୍ଚଳବାସୀ ଏ ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହୋଇଗଲେ । କଟକରେ ଖବର ପାଇ ବିଶାଳ ଜନସମାଗମ ହୋଇ ଏହି କାର୍ଯ୍ୟର ଘୋର ନିନ୍ଦା କରାଗଲା । ଶହୀଦମାନଙ୍କୁ କାଠଯୋଡି ନଦୀକୂଳ ଖାନନଗର ଶ୍ମଶାନରେ ଶୋକାକୂଳ ପରିବେଶରେ ଶେଷ ସମ୍ମାନ ପ୍ରଦର୍ଶନ କରାଯାଇ ସତ୍କାର କରାଗଲା । ଇଂରେଜମାନଙ୍କ ଏହି ଦମନ ଲୀଳାକୁ ପ୍ରଜାମଣ୍ଡଳ ଦୃଢ ନିନ୍ଦା କରିବା ସହ ଆନ୍ଦୋଳନକୁ ଅଧିକ ବ୍ୟାପକ କରାଇଦେଲା । ଫଳରେ ଠିକ୍ ୨ ମାସ ପରେ ଅର୍ଥାତ୍ ୧୯୩୯ ଜାନୁଆରୀ ୫ ତାରିଖ ଦିନ ରଣପୁର ପ୍ରଜାମଣ୍ଡଳ ବ୍ୟାପକ ଜନ ଆନ୍ଦୋଳନ କରି ଶହୀଦ ବାଜିରାଉତର ହତ୍ୟାକାରୀ ଇଂରେଜ ପଲିଟିକାଲ ଏଜେଣ୍ଟ ବେଜେଲଗେଟ୍ ସାହେବଙ୍କୁ ଠେଙ୍ଗାରେ ପିଟି ପିଟି ମାରି ଦେଲେ । ଏ ସମ୍ବାଦ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଚହଳ ପକାଇଦେଲା । ଦେଶଭକ୍ତ ନିରୀହ ପ୍ରଜାମାନଙ୍କୁ କଠୋର ରାଜଦଣ୍ଡ ମିଳିଲା । ମାତ୍ର ଶହୀଦମାନଙ୍କ ବଳିଦାନ ବିଫଳ ଗଲାନାହିଁ । ଶେଷରେ ଇଂରେଜମାନେ ଏ ଦେଶରୁ ଗଲେ । ଅନ୍ଧାରୀ ଶାସନର ଅନ୍ତ ଘଟିଲା । କିନ୍ତୁ ଅଗଣିତ ଦେଶ ଭକ୍ତମାନଙ୍କ ବଳିଦାନର କଥା ସେମାନଙ୍କର ନୀତି ଆଦର୍ଶ ଦେଶପ୍ରୀତିର ବାର୍ତ୍ତା ଭବିଷ୍ୟତ ପିଢିଙ୍କ ପାଖରେ ପହଞ୍ଚି ପାରିଲା ନାହିଁ । ଶହୀଦମାନଙ୍କୁ କିମ୍ବା ସେମାନଙ୍କ ଦାୟଦମାନଙ୍କୁ ନା ସେମାନଙ୍କ ବଳୀଦାନର ସ୍ମାରକୀ ସ୍ଥଳୀକୁ ଜନମାନସରେ ଉଜ୍ଜୀବିତ ରଖିବା ପାଇଁ କୌଣସି ସୁଚିନ୍ତିତ ବ୍ୟବସ୍ଥା କରାଗଲା ନାହିଁ । ଫଳରେ ଦେଶର ଭବିଷ୍ୟତ ପିଢିଙ୍କ ପାଖରେ ସ୍ୱଦେଶ ପ୍ରୀତିଭାବର ଅଭାବ ଦେଖାଗଲା । ଏହା ଦେଶ ଓ ସମାଜ ପାଇଁ ଅଶୁଭ ବିଚାର କରି କିଛି ବୁଦ୍ଧିଜୀବୀ ନିକଟରେ ଗଢିଛନ୍ତି ଓଡ଼ିଶା ସ୍ୱାଧୀନତା ସଂଗ୍ରାମୀ ଶହୀଦ ସ୍ମୃତି ସଂସଦ । ଏହି ସଂସଦ ଏହି ଅପୂର୍ଣ୍ଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା ପାଇଁ ସଂକଳ୍ପବଦ୍ଧ । ୨୦୧୨ ମସିହା ଅଗଷ୍ଟ ମାସ ୯ ତାରିଖ କ୍ରାନ୍ତି ଦିବସ ପାଳନ ଅବସରରେ ସଂଗଠନ ପାଳନ କରିଛି ଯୁବ କ୍ରାନ୍ତି ଦିବସ ଓ ସମଗ୍ର ରାଜ୍ୟର ପ୍ରମୁଖ ଶହୀଦ ପୀଠ କାକଟପୁର ସଂଲଗ୍ନ ଅସ୍ତରଙ୍ଗ କୁହୁଡି ଲବଣ ସତ୍ୟାଗ୍ରହ ପୀଠକୁ ପରିଚାଳିତ କରିଛି ଶହୀଦ ମଶାଲ ଶୋଭାଯାତ୍ରା । ଏହି ଶହୀଦ ମଶାଲ ଯାତ୍ରାରେ ରାଜ୍ୟର ୩୦୦ରୁ ଊର୍ଦ୍ଧ୍ୱ ସ୍ୱାଧୀନତା ସଂଗ୍ରାମୀ, ଶହୀଦ ଦାୟଦମାନେ ସାମିଲ ହେବା କେବଳ ଆମ ରାଜ୍ୟ ପାଇଁ ନୁହେଁ, ସମଗ୍ର ଦେଶ ପାଇଁ ଏକ ଅଭୂତପୂର୍ବ ଉଦାହରଣ ସୃଷ୍ଟି କରିଛି । ଏହି ଶହୀଦ ମଶାଲ ଯାତ୍ରାର ଗନ୍ତବ୍ୟ ପଥରେ ହଜାର ହଜାର ନରନାରୀ ଏକତ୍ରିତ ହୋଇ ମଙ୍ଗଳ ଧ୍ୱନୀ ସହ ଅତିଥିମାନଙ୍କୁ ଅଭ୍ୟର୍ଥନା ଦେବା ଓ ସେମାନଙ୍କ ସାଥୀରେ ବହୁ ସଂଖ୍ୟାରେ କୁହୁଡି ଲବଣ ସତ୍ୟାଗ୍ରହ ପୀଠକୁ ଯାଇ ଆୟୋଜିତ ସମାବେଶରେ ଯୋଗଦେବା ସମସ୍ତଙ୍କୁ ଚକିତ କରିଛି । ଏପରିକି ସମାବେଶ ପରିସରରେ ଦଳ, ଗୋଷ୍ଠୀ, ଜାତି, ଧର୍ମ ଭୁଲି ଏକାଠି ହେବା ଭାରତୀୟ ଜାତୀୟ ସଂହତିକୁ ପ୍ରତିପାଦିତ କରିଛି । ରାଜ୍ୟର ପ୍ରମୁଖ ଶହୀଦ ପୀଠରୁ ଆଗତ ଶହୀଦ, ସଂଗ୍ରାମୀ ଦାୟଦମାନଙ୍କୁ ସ୍ୱତନ୍ତ୍ର ସମ୍ମାନ ପ୍ରଦାନ ମଧ୍ୟ ରାଜ୍ୟବାସୀଙ୍କ ଆଖି ଖୋଲି ଦେଇଛି । ବିଳମ୍ବରେ ହେଲେ ମଧ୍ୟ ଆମେ ଆମର ଦିଗହରା ସନ୍ତାନମାନଙ୍କୁ ଦେଶ ପ୍ରୀତିରେ ଭିଜାଇ ରଖି ଜଣେ ଜଣେ ଦେଶଭକ୍ତ ନାଗରିକ କରି ଗଢି ପାରିବା ଏ ଭରସା ଆମକୁ ମିଳିଛି । ଏତିକିରେ ଅଟକି ନ ଯାଇ ନବଗଠିତ ସ୍ମୃତି ସଂସଦ ପ୍ରତ୍ୟେକ ଶହୀଦ ପୀଠକୁ ତାର ସ୍ମରଣ ଦିବସରେ ପହଞ୍ଚି ଆଞ୍ଚଳିକ ସଂଗଠନ ସମୂହର ଭରସାର ପାତ୍ର ହୋଇ ପାରିଛି ।

ଆଉ ଅପେକ୍ଷା କାହିଁକି ଏଥର ଆସନ୍ତୁ ଆମେ ସମସ୍ତେ ମିଳିମିଶି ଆମ ପାଇଁ କଷ୍ଟଲବ୍ଧ ସ୍ୱାଧୀନତାକୁ ଆଣି ଦେଇଥିବା ମହାନ ସ୍ୱାଧୀନତା ସଂଗ୍ରାମୀ ଓ ଶହୀଦମାନଙ୍କ ନୀତି, ଆଦର୍ଶ, ତ୍ୟାଗ, ବଳିଦାନ, ଦେଶପ୍ରୀତିର ବାର୍ତ୍ତାକୁ ଆମ ଭବିଷ୍ୟତ ପିଢିଙ୍କ ପାଖରେ ପହଞ୍ଚାଇ ଦେବା । ଏହା ଆମର ଜାତୀୟ କର୍ତ୍ତବ୍ୟ ।

ପ୍ରକୃତି ବନ୍ଧୁ ଭବନ, ପ୍ରାଚୀ ବିହାର
କାକଟପୁର, ପୁରୀ

# ମନ ବିଜ୍ଞାନ ଓ ସ୍ୱପ୍ନ

**ବସନ୍ତ କୁମାର ଦାସ**

ସ୍ୱପ୍ନ ହେଉଛି ଆମ ଜୀବନର ଏକ ଅନିବାର୍ଯ୍ୟ ଅଙ୍ଗ । ଜାଗ୍ରତ ଅବସ୍ଥାରେ ମନୁଷ୍ୟ ନିଜର ବୋଧଶକ୍ତି, ମାନସିକ ଅବସ୍ଥା ଏବଂ ଭାବନା ଅନୁସାରେ ଚିତ୍ର ବିଚିତ୍ର କାମନା କରୁଥିବା ପରି ସୁପ୍ତାବସ୍ଥାରେ ସ୍ୱପ୍ନ ଦେଖିଥାଏ । ଜାଗ୍ରତ ଅବସ୍ଥାରେ ମଧ୍ୟ ଆମେ କଳ୍ପନାର ନାନା ଚିତ୍ର ଆଙ୍କି ସେସବୁକୁ ଦେଖି ଆନନ୍ଦିତ ହୋଇଥାଉ । 'ସ୍ୱପ୍ନ ଦେଖିବା ଓ ଶୁଣିବା କ୍ରିୟାର ଏକ ପ୍ରହେଳିକା ଭଳି ଅନୁଭୂତି ଯାହାକି ଶୋଇବା ସମୟରେ ଘଟିଥାଏ ।' ମଣିଷର ମନ ଏକ ଫଟୋ-ଉଠା କ୍ୟାମେରା ଭଳିଆ । ଯେପରି କ୍ୟାମେରା ଦ୍ୱାରା ଫଟୋ ନେଲାବେଳେ ସମ୍ମୁଖରେ ଯେଉଁସବୁ ଦୃଶ୍ୟପଡେ, ତା'ର ଫଟୋ ଆଙ୍କି ହୋଇଯାଏ, ଠିକ୍ ସେହିପରି ମନରୂପୀ କ୍ୟାମେରାରେ ମଣିଷ ବିଭିନ୍ନ ଇନ୍ଦ୍ରିୟ ଦ୍ୱାରା ଯେତେ ଅନୁଭୂତି ସଂଗ୍ରହ କରେ ସେସବୁର ଛାୟାପାତ ହୋଇଥାଏ । ମଣିଷ ଯେଉଁ କଥା କାନରେ ଶୁଣେ, ଯେଉଁ ଦୃଶ୍ୟ ଆଖିରେ ଦେଖେ, ଯେଉଁ କଥା ପାଟିରେ କହେ କିମ୍ବା କୌଣସି କାମ ଅନ୍ୟ ଇନ୍ଦ୍ରିୟ ବା ଶରୀର ଦ୍ୱାରା କରେ, ତା'ର ଅବିକଳ ଛବି ତାହାର ମନୋରୂପୀ କ୍ୟାମେରାରେ ଆଙ୍କି ହୋଇଯାଏ । ମଣିଷର ପ୍ରତ୍ୟେକ କ୍ରିୟା ବା ବିଚାରର ଛାପ ମନ ଉପରେ ପ୍ରତିଫଳିତ ହୁଏ । ଯେପରି ଫଟୋଗ୍ରାଫର ଅନେକ ପ୍ରକାର ଚିତ୍ରର ଫଳକ ବା ପ୍ଲେଟ୍‌କୁ ଏକ କରେ, ସେପରି ମଣିଷ ମଧ୍ୟ ଯେଉଁସବୁ କାମ କରେ ଠିକ୍ ସେପରି ଚିତ୍ର ମଧ୍ୟ ସଂଗ୍ରହ କରୁଥାଏ । ଏହି ସମସ୍ତ କାମ ମଣିଷର ଅଜ୍ଞାତରେ ସମ୍ପାଦିତ ହୋଇଥାଏ ।

ଯେତେବେଳେ ମଣିଷର ମନ ଜାଗ୍ରତ ବା ସ୍ୱପ୍ନ ଅବସ୍ଥାରେ କାର୍ଯ୍ୟରହିତ ବା ଖାଲି ରହେ, ସେତେବେଳେ ମଣିଷର ମନ ମଧ୍ୟରେ ଥିବା ସଂଗୃହୀତ ଚିତ୍ର ଠିକ୍ ସିନେମାର ପର୍ଦ୍ଦା ଉପରିସ୍ଥ ଚିତ୍ର ପରି ମନୋରୂପୀ ପର୍ଦ୍ଦାରେ ପ୍ରତିବିମ୍ବିତ ହୁଏ । ମଣିଷ ମିଥ୍ୟା ଶୁଣିବା ବା ଦେଖିବାର ଅନୁଭୂତି ଶୋଇବା ସମୟରେ ଅନୁଭବ କରେ, ଯାହାକୁ କି ସ୍ୱପ୍ନ କୁହାଯାଏ । ସ୍ୱପ୍ନକୁ ଇଂରାଜୀରେ Dream, ଜର୍ମାନ୍ ଭାଷାରେ Die Traumdeutung ବୋଲି କୁହାଯାଏ । ସ୍ୱପ୍ନକୁ ମନର ଭ୍ରମ କୁହାଯାଏ ଓ ସ୍ୱୀକାର କରାଯାଏ ଯେ, ଦିନସାରା ଆମେ ଯେଉଁ ବିଚାର କଳ୍ପନା କରୁଥାଉ ତାହା ରାତିରେ ଦୃଶ୍ୟ 'ସ୍ୱପ୍ନ' ରୂପରେ ଉପସ୍ଥିତ ହୋଇଥାଏ । ଏହା ହେଉଛି ସ୍ୱପ୍ନର ମନୋବୈଜ୍ଞାନିକ (Psychological) ବ୍ୟାଖ୍ୟା । କିନ୍ତୁ ସ୍ୱପ୍ନ ଯେ, କେବଳ ବିଶୃଙ୍ଖଳା ମନର ପରିଣତି ତା' ନୁହେଁ । ଅନେକ ସ୍ୱପ୍ନ ନାନା ପ୍ରକାର ରଙ୍ଗୀନ ତଥା ଭବିଷ୍ୟତ କଳ୍ପନାର ଫଳ ହୋଇଥାଏ । ଏପରି ସ୍ୱପ୍ନକୁ ଉଚ୍ଚସ୍ତରୀୟ ବା ଅତିନ୍ଦ୍ରିୟ ସ୍ୱପ୍ନ ବୋଲି ମନୋବୈଜ୍ଞାନିକମାନେ ମତ ପୋଷଣ କରିଥାନ୍ତି । ଭାରତୀୟ ମୁନୀଋଷୀଗଣ ଏହାକୁ ଆଧ୍ୟାତ୍ମିକ ସ୍ୱପ୍ନ ବୋଲି କହିଛନ୍ତି । ବୈଜ୍ଞାନିକମାନଙ୍କ ମତରେ ଶୋଇବାର କ୍ରମରେ ଅନେକ ଜଟିଳ ରାସାୟନିକ ପ୍ରକ୍ରିୟା ହୋଇଥାଏ ଓ ବିଦ୍ୟୁତ୍ ତରଙ୍ଗ ଉଠିଥାଏ । ମସ୍ତିଷ୍କର ମଧ୍ୟଭାଗରୁ ଏକ ସମସ୍ତ କ୍ରିୟା-ପ୍ରକ୍ରିୟାର ନିୟନ୍ତ୍ରଣ କରାଯାଇଥାଏ । ସ୍ୱପ୍ନ ପ୍ରତି ଆମର ମନୋବୃତ୍ତି ନିର୍ଭର କରେ । କାରଣ ବିଭିନ୍ନ ମଣିଷର ଭାବଭଙ୍ଗୀ ଉପରେ ସ୍ୱପ୍ନ ପ୍ରତି ଥିବା ଅନ୍ଧବିଶ୍ୱାସ ଗଢିଉଠେ । ତେଣୁ କିଏ କେତେ ଅନ୍ଧବିଶ୍ୱାସୀ ଓ ବିଭିନ୍ନ ସୂଚନା ପ୍ରତି କିଏ କେତେ ପରିମାଣରେ ଭାବପ୍ରବଣ ହୋଇପଡେ ସେସବୁ ପ୍ରଥମେ ଜାଣିବା ଆବଶ୍ୟକ । ଖରାପ ସ୍ୱପ୍ନରେ ଲୋକେ ବିଚଳିତ ହେବା ବେଳେ, ଭଲ ସ୍ୱପ୍ନରେ ସେମାନଙ୍କର ବିଶ୍ୱାସ ବଢିବା ସଙ୍ଗେ ସଙ୍ଗେ ସେମାନେ ସତେଜ ଦେଖାଯାଆନ୍ତି । ବୈଜ୍ଞାନିକ ସିଗ୍‌ମଣ୍ଡ ଫ୍ରଏଡ୍‌ଙ୍କ ମତ ଅନୁସାରେ ପାଣିରେ ପହଁରିବା, ପବନରେ ଉଡିବା, ପାହାଡରେ ଚଢିବା, ପୀଡିତ ହୋଇ ଦୌଡିବା, ପରୀକ୍ଷାରେ ପାଶ୍ କରିବା ଓ ଛୁଆମାନଙ୍କ

ସହିତ ଖେଳିବା, ଏ ସମସ୍ତ ପ୍ରକାରର ସ୍ୱପ୍ନ ବାସନା ତୃପ୍ତିର ସୂଚନା ଅଟେ । ଏ ବିଷୟରେ ମନୋବୈଜ୍ଞାନିକଗଣ ଭିନ୍ନ ଭିନ୍ନ ମତ ପୋଷଣ କରିଥାଆନ୍ତି । ୟଙ୍ଗଙ୍କ ଅନୁସାରେ ସ୍ୱପ୍ନ ଆମର ମାନସିକ ସ୍ଥିତି ଓ ତାହାର ଆବଶ୍ୟକତାକୁ ଦେଖାଇଥାଏ । ମାନସିକ ରୋଗୀଙ୍କ ସମସ୍ୟାକୁ ବିଶ୍ଳେଷଣ କଲାବେଳେ ଡାକ୍ତରଙ୍କୁ ତାଙ୍କ ସ୍ୱପ୍ନରୁ ଅନେକ ତଥ୍ୟ ମିଳିଥାଏ । କେତେକ ମନୋବୈଜ୍ଞାନିକ ମତ ପୋଷଣ କରନ୍ତି ଯେ ନିଜେ ନିଜ ସ୍ୱପ୍ନକୁ ବିଶ୍ଳେଷଣ କରି ନିଜର ବହୁତ ସମସ୍ୟାର ସମାଧାନ କରି ପାରିବେ । ଶୋଇବା ସମୟରେ ସ୍ୱପ୍ନ ଦେଖି ଉଠିବା ପରେ ଯେଉଁ ସତେଜତାର ଅନୁଭୂତି ଆସେ, ସ୍ୱପ୍ନ ରହିତ ନିଦ୍ରାରେ ସେପରି କ୍ୱଚିତ୍ ଅନୁଭବ କରି ହୋଇଥାଏ । କାରଣ ସ୍ୱପ୍ନ ଦେଖି ଆମେ ଅନେକ ଅଦରକାରୀ ମାନସିକ ଚାପକୁ ଅନାୟାସରେ ମୁକ୍ତି ପାଇଥାଉ । ଜୀବନର କଟୁ ଅନୁଭୂତି, ଅବଶ୍ୟ ପରିସ୍ଥିତି ତଥା ବିକ୍ଷୁବ୍ଧ କରିଦେଉଥିବା ଚିନ୍ତା, ସ୍ୱପ୍ନ ମାଧ୍ୟମରେ ଚେତନ ମନକୁ ପାର କରି ଅଚେତନରେ ବୁଡିଯାଏ ଓ ଆମେ ପୁଣି ସାଧାରଣ ମାନସିକ ଅବସ୍ଥାକୁ ଫେରିଆସୁ । ଫ୍ରଏଡ୍ କହନ୍ତି ସ୍ୱପ୍ନ ମଣିଷର ଶାରୀରିକ ଓ ମାନସିକ ଉତ୍ତେଜନତାର କାରଣ ଅଟେ । ଶାରୀରିକ ଉତ୍ତେଜନାର ଅର୍ଥ ମଣିଷ ଯେପରି ଅବସ୍ଥାରେ ଶୋଇଥାଏ ସେପରି ସ୍ୱପ୍ନ ଦେଖିଥାଏ । ଯଦି ଶୋଷ ଲାଗେ ତେବେ ପାଣିର ସ୍ୱପ୍ନ, ଯଦି ଭୋକ ଲାଗେ ତେବେ ଖାଦ୍ୟର ସ୍ୱପ୍ନ ଦେଖିବାର ଯଥେଷ୍ଟ ସମ୍ଭାବନା ଥାଏ । ମାନସିକ ଉତ୍ତେଜନା ପାଇଁ ଦେଖାଯାଉଥିବା ସ୍ୱପ୍ନର ବିଶ୍ଳେଷଣ କରି ସିଗ୍‌ମଣ୍ଡ ଫ୍ରଏଡ୍ କହିଛନ୍ତି ଯେ, ମଣିଷର ସମସ୍ତ ସ୍ୱପ୍ନର କାରଣ ଦବିଯାଉଥିବା ଇଚ୍ଛା ଅଟେ । ଲାଳସା ବା ବାସନା ସ୍ୱପ୍ନର ଅନ୍ୟ ଏକ କାରଣ ଅଟେ । ବୈଜ୍ଞାନିକ ଅଗଷ୍ଟ କେକୁଲେ ବେଞ୍ଜିନ୍ ଅଣୁର ରାସାୟନିକ ଗଠନର ପୂର୍ବାଭାଷ ସ୍ୱପ୍ନରୁ ହିଁ ପାଇଥିଲେ, ଯାହାକି ଚିରଦିନ ପାଇଁ ବେଞ୍ଜିନ୍ ଅଣୁର ରାସାୟନିକ ଗଠନ ରୂପେ ଲିପିବଦ୍ଧ ହୋଇ ରହିଛି । ପୃଥିବୀର ଅନେକ ବୈଜ୍ଞାନିକ ଏବେ ବି ସ୍ୱପ୍ନ ଉପରେ ନାନା ଗବେଷଣା ଜାରି ରଖିଛନ୍ତି । ସ୍ୱପ୍ନର ବ୍ୟାଖ୍ୟା ପାଇଁ କୌଣସି ସର୍ବମାନ୍ୟ ସିଦ୍ଧାନ୍ତ ସ୍ଥିର କରାଯାଇ ପାରିବ ନାହିଁ । ସ୍ୱପ୍ନର ସଠିକ୍ ଓ ଉପଯୁକ୍ତ ବ୍ୟାଖ୍ୟା ସମ୍ଭବ ହୋଇପାରିଲେ ମଣିଷର ଅନେକ ରହସ୍ୟ ସମ୍ବନ୍ଧରେ ଜାଣିହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ବି/୧୧୩, ସେକ୍ଟର–୧
ନାଲ୍‌କୋ ଟାଉନ୍‌ସିପ୍, ଦାମନଯୋଡି
କୋରାପୁଟ–୭୬୩୦୦୮



## ରିଆମାଳ ଓ ପର୍ଜଙ୍ଗରେ ନୂତନ କୋର୍ଟ

ଦେବଗଡ ଜିଲ୍ଲାର ରିଆମାଳ ଓ ଢେଙ୍କାନାଳ ଜିଲ୍ଲାର ପର୍ଜଙ୍ଗଠାରେ ପ୍ରଥମ ଶ୍ରେଣୀ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ୍ ତଥା କନିଷ୍ଠ ବିଭାଗ ସିଭିଲ୍ ଜଜ୍ କୋର୍ଟ ସ୍ଥାପିତ ହେବ । ଏ ସମ୍ପର୍କିତ ପ୍ରସ୍ତାବକୁ ଆଇନ ମନ୍ତ୍ରୀ ଡକ୍ଟର ଅରୁଣ କୁମାର ସାହୁ ଅନୁମୋଦନ କରିଛନ୍ତି । ଏ ସମ୍ପର୍କିତ ବିଧିବଦ୍ଧ ବିଜ୍ଞପ୍ତି ଖୁବ୍ ଶୀଘ୍ର ପ୍ରକାଶ ପାଇବ ବୋଲି ଆଇନ ବିଭାଗ ସୂତ୍ରରୁ ଜଣାପଡିଛି ।

# ଓଡିଶା ମାଟିରେ ଜୀବନର ଜାତକ

ନିକୁଞ୍ଜ ବିହାରୀ ସାହୁ

ଭୂତାତ୍ତ୍ୱିକ ସମୟରେଖାରେ ଆମ ଗ୍ରହ ପୃଥିବୀରେ ଯେ ଜୀବନ ପ୍ରଥମେ କେବେ ସୃଷ୍ଟି ହେଲା ତାହାର କୌଣସି ନିର୍ଦ୍ଦିଷ୍ଟ ବିବରଣୀ କାହାରି ପାଖରେ ନାହିଁ। ଆଦିମ ପୃଥିବୀର ବାୟୁମଣ୍ଡଳ ଏବେକାର ରୂପରେଖଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା। ସେତେବେଳେ ଆମ ଗ୍ରହର ବାୟୁମଣ୍ଡଳରେ ଅମ୍ଳଜାନ ପରିବର୍ତ୍ତେ ମୁଖ୍ୟତଃ ଅଙ୍ଗାରକାମ୍ଳ ଓ ମିଥେନ୍ ବାଷ୍ପ ଭରା ଥିଲା, ଯେଉଁଥିରେ ଜୀବନ ବଞ୍ଚିବା ସମ୍ଭବପର ନଥିଲା। ଏବେକାର ଏକ ଲୋକପ୍ରିୟ ତତ୍ତ୍ୱ ଅନୁସାରେ, ଆମ ଗ୍ରହର ବାୟୁମଣ୍ଡଳରେ ଅମ୍ଳଜାନର ମାତ୍ରା ୨୪୦ କୋଟି ବର୍ଷ ପର୍ଯ୍ୟନ୍ତ ବେଶୀ କିଛି ବଢ଼ି ନ ଥିଲା। ଏହା ପରଠାରୁ କୌଣସି ଅଜ୍ଞାତ କାରଣ ବଶତଃ ବାୟୁମଣ୍ଡଳରେ ଅମ୍ଳଜାନର ମାତ୍ରା ନିରନ୍ତର ବୃଦ୍ଧି ପାଇବାକୁ ଲାଗିଲା ଏବଂ ଏହି ଶ୍ୱାସୋପଯୋଗୀ ବାଷ୍ପର ଉପସ୍ଥିତିରେ ଜୀବନ ବଞ୍ଚିବା ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହେଲା। ସମୁଦ୍ରର ଜଳରାଶିରେ ଅମ୍ଳଜାନର ଅବଶୋଷଣ ଘଟିବାରୁ ଜୀବ ବିବର୍ତ୍ତନ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇ ଆମ ଗ୍ରହରେ ବହୁକୋଷୀ ଉଚ୍ଚତର ଜୀବଙ୍କ ଅଭ୍ୟୁତ୍‌ଥାନ ହେଲା। ସୁତରାଂ ପୃଥିବୀ ବାୟୁମଣ୍ଡଳରେ ଅମ୍ଳଜାନ ବାଷ୍ପର ଅଭିବୃଦ୍ଧି ବିବର୍ତ୍ତନର ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା। ତେବେ ଆମ ଗ୍ରହରେ ଏହି ବିରାଟ 'ଅମ୍ଳଜାନକରଣ' ଘଟଣାର ପ୍ରକୃତ କାରଣ ଯେ କ'ଣ ତାହା ଏବେ ସୁଦ୍ଧା ରହସ୍ୟାବୃତ୍ତ।

ଏହି ଅମ୍ଳଜାନ ସୃଷ୍ଟିକାରୀ ଆଦିମ ଅଣୁଜୀବମାନେ ଆମ ଗ୍ରହରେ ଆଜିଠୁ ପ୍ରାୟ ୩୨୦ କୋଟି ବର୍ଷ ତଳେ ସୃଷ୍ଟି ହୋଇଥିଲେ ବୋଲି ପୂର୍ବରୁ ଜଣାଥିଲା। ମାତ୍ର ନିକଟରେ ଭାରତୀୟ ବୈଜ୍ଞାନିକ ଆମ ଓଡିଶାର କେନ୍ଦୁଝର ଜିଲ୍ଲାର କିଛି ଆଦିମ ମୃତ୍ତିକା ବିଶ୍ଳେଷଣ କରି ଅମ୍ଳଜାନ ସୃଷ୍ଟିକାରୀ ଏହି ଆଦିମ ଅଣୁଜୀବମାନେ ଆମ ଗ୍ରହରେ ଜଣାଥିବା ପୂର୍ବୋକ୍ତ ସମୟକାଳଠାରୁ ୬୦ କୋଟି ବର୍ଷ ପୂର୍ବେ ସୃଷ୍ଟି ହୋଇଥିଲେ ବୋଲି ଏକ ଚାଞ୍ଚଲ୍ୟକର ସୂଚନା ଦେଇଛନ୍ତି। ଉକ୍ତ ତଥ୍ୟକୁ ବିଶ୍ୱାସ କଲେ ଏହି ଆଦିମ ଅଣୁଜୀବମାନେ ଆମ ଗ୍ରହରେ ଏବେକାର ଜଣାଥିବା ୩୨୦ କୋଟି ବର୍ଷ ପରିବର୍ତ୍ତେ ୨୬୦ କୋଟି ବର୍ଷ ପୂର୍ବେ ସୃଷ୍ଟି ହୋଇଥିବାର ଧରି ନେବାକୁ ପଡିବ। ଏହାଦ୍ୱାରା ପୃଥିବୀରେ ବିବର୍ତ୍ତନ ପ୍ରକ୍ରିୟା ଯଥେଷ୍ଟ ସମୟ ପଛକୁ ଘୁଞ୍ଚିଯିବ ଏବଂ ଏବେକାର ଭୂତାତ୍ତ୍ୱିକ ସମୟରେଖାକୁ ପୁଣି ଥରେ ନୂତନ ରୂପରେ ଉପସ୍ଥାପନା କରିବାକୁ ପଡିବ। ବୈଜ୍ଞାନିକମାନେ ଏହି ବିରାଟ 'ଅମ୍ଳଜାନକରଣ' ଘଟଣା ପଛରେ ଅମ୍ଳଜାନ ସୃଷ୍ଟିକାରୀ କିଛି ଆଦିମ ଅଣୁଜୀବଙ୍କ ଭୂମିକା ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି। ସାଇନୋବ୍ୟାକ୍ଟେରିଆ କିମ୍ବା ନୀଳ–ହରିତ୍ ଶୈବାଳ ଏହିଭଳି କିଛି ଅଣୁଜୀବ ଯେଉଁମାନେ ସୂର୍ଯ୍ୟାଲୋକର ଉପସ୍ଥିତିରେ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପକୁ ଅମ୍ଳଜାନରେ ରୂପାନ୍ତରିତ କରିପାରନ୍ତି। ଏହି ପ୍ରକ୍ରିୟାକୁ ଆମେ ଜାଣିଥିବା 'ଆଲୋକ ସଂଶ୍ଳେଷଣ' କୁହାଯାଏ। ଏହି ଜୀବମାନେ ଆମ ଗ୍ରହରେ ବିବର୍ତ୍ତନର ପ୍ରବାହଧାରାରେ ସୃଷ୍ଟି ହୋଇଥିବା ସମ୍ଭବତଃ କିଛି ପ୍ରଥମ ଅଣୁଜୀବ। ସୁତରାଂ ଏହି ଅଣୁଜୀବମାନଙ୍କ ଉତ୍ପତ୍ତିକାଳ ନିର୍ଭୁଲ ରୂପେ ନିରୂପଣ କରାଯାଇ ପାରିଲେ ଆମ ଗ୍ରହରେ ଜୀବ ବିବର୍ତ୍ତନ ସମ୍ପର୍କୀୟ ଅନେକ ରହସ୍ୟର ପର୍ଦ୍ଦାଫାସ ହେବା ସଙ୍ଗେ ସଙ୍ଗେ ବହୁ ଅସମାହିତ ପ୍ରଶ୍ନର ଉତ୍ତର ମିଳି ପାରିବ।

ଏହି ବୈଜ୍ଞାନିକମାନେ କିଛି ଆଦିମ ଶିଳାଖଣ୍ଡର ଅବକ୍ଷୟରୁ ସୃଷ୍ଟ ମୃତ୍ତିକାକୁ ଅନୁଧ୍ୟାନ କରି ଉପରୋକ୍ତ ମହତ୍ତ୍ୱପୂର୍ଣ୍ଣ ସିଦ୍ଧାନ୍ତରେ ପହଞ୍ଚିଛନ୍ତି। ସେମାନେ ଭୂତାତ୍ତ୍ୱିକ ସମୟରେଖା ନିର୍ଦ୍ଧାରଣ ନିମନ୍ତେ ସାଧାରଣରେ ବ୍ୟବହୃତ ପ୍ରାକୃତିକ ୟୁରୋନିୟମ୍ ଓ ସୀସା ଆଇସୋଟୋପ୍‌ର ନମୁନା ପ୍ରୟୋଗ କରି ଏହି ପୁରାତନ ମୃତ୍ତିକାର ବୟସ ନିରୂପଣ କରିଛନ୍ତି। ଏହି ପୁରାତନ ମୃତ୍ତିକାରେ ସଂରକ୍ଷିତ ରାସାୟନିକ ଅବକ୍ଷୟର ରୂପରେଖରୁ ସେକାଳର ବାୟୁମଣ୍ଡଳରେ

ଅମ୍ଳଜାନର ମାତ୍ରାର ଛାପ ଜଣା ପଡ଼ିବା ସମ୍ଭବପର, ଯେହେତୁ କେବଳ ଅମ୍ଳଜାନର ଉପସ୍ଥିତିରେ ହିଁ ମୃତ୍ତିକାରେ ରାସାୟନିକ ପ୍ରତିକ୍ରିୟା ଓ ପରିବର୍ତ୍ତନ ଘଟି ଅବକ୍ଷୟ ଘଟିଥାଏ । ରାସାୟନିକ ଦୃଷ୍ଟିକୋଣରୁ ଅମ୍ଳଜାନ ଏକ ଅତି ସକ୍ରିୟ ଗ୍ୟାସ, ଯାହା ଆମେ ବ୍ୟବହାର କରୁଥିବା ଲୁହା ଭଳି ସାଧାରଣ ଧାତୁ ସହିତ ପ୍ରତିକ୍ରିୟା କରି କଳଙ୍କି ସୃଷ୍ଟି କରିବା ସଦୃଶ ଶିଳାଖଣ୍ଡ ସହିତ ମଧ୍ୟ ପ୍ରତିକ୍ରିୟା କରି ଅବକ୍ଷୟ ଘଟାଇଥାଏ । ସୁତରାଂ ଆମ ଓଡ଼ିଶା ମାଟିର ଅନୁଧ୍ୟାନ ଦ୍ୱାରା ମିଳିଥିବା ଏହି ସଦ୍ୟତମ ତଥ୍ୟ ଭୂତାତ୍ତ୍ୱିକ ଦୃଷ୍ଟିକୋଣରୁ ବିବର୍ତ୍ତନ ସମ୍ପର୍କୀୟ ଏକ ଯୁଗାନ୍ତକାରୀ ତଥା ଗୁରୁତ୍ୱପୂର୍ଣ୍ଣ ଘଟଣା ନୁହେଁ କି ?

କ୍ୱାର୍ଟସ ନଂ–ଏଲ୍–୧୨/୧୧
ଆର୍ଯ୍ୟ ବିହାର, ପୋଷ୍ଟ– ଶୈଳଶ୍ରୀ ବିହାର
ଭୁବନେଶ୍ୱର–୨୧

## ଖୁବ୍ ଶୀଘ୍ର ଆରମ୍ଭ ହେବ ଓଡ଼ିଶା ଟ୍ରାଭେଲ ମାର୍ଟ

ବିଦେଶୀ ଟୁର୍ ଅପରେଟର ଓ ଟ୍ରାଭେଲ ଏଜେଣ୍ଟଙ୍କ ସହ ଆମ ରାଜ୍ୟର ଟୁର୍ ଅପରେଟରମାନଙ୍କ ମତ ଆଦାନ ପ୍ରଦାନ ହେବ । ପ୍ରଦର୍ଶନୀ ମାଧ୍ୟମରେ ଓଡ଼ିଶାର ଅମୂଲ୍ୟ ପ୍ରାକୃତିକ ପର୍ଯ୍ୟଟନ, ଧର୍ମୀୟ–ସାଂସ୍କୃତିକ ପର୍ଯ୍ୟଟନ, ଆଦିବାସୀ ପର୍ଯ୍ୟଟନ, ଇକୋ–ଟୁରିଜିମ୍ ସମ୍ପର୍କରେ ସେମାନଙ୍କୁ ଅବଗତ କରାଇ ଦିଆଯିବ । ନିଜ ଦେଶକୁ ଫେରି ଓଡ଼ିଶା ପର୍ଯ୍ୟଟନ ସମ୍ପର୍କରେ ସେମାନେ ପ୍ରଚାର କରିବେ । ପର୍ଯ୍ୟଟକଙ୍କୁ ଓଡ଼ିଶା ପଠାଇବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରିବେ । ଏହି ଉଦ୍ଦେଶ୍ୟ ରଖି ଆସନ୍ତା ୨୦୧୫ ବର୍ଷଠାରୁ ଆରମ୍ଭ ହେବାକୁ ଯାଉଛି 'ଓଡ଼ିଶା ଟ୍ରାଭେଲ ମାର୍ଟ' । ଓଡ଼ିଶା ଟ୍ରାଭେଲ ମାର୍ଟର ରୂପରେଖ ଓ ଯୋଜନା କିପରି ହେବ ଏ ସଂକ୍ରାନ୍ତରେ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା ଓ ସଚିବ ଡଃ ଅରବିନ୍ଦ କୁମାର ପାଢୀଙ୍କ ଉପସ୍ଥିତିରେ ଏକ ଉଚ୍ଚସ୍ତରୀୟ ବୈଠକରେ ଆଲୋଚନା ହୋଇଛି । ଫେଡେରେସନ୍ ଅଫ୍ ଇଣ୍ଡିଆନ୍ ଚାମ୍ବର ଅଫ୍ କମର୍ସ ଏଣ୍ଡ ଇଣ୍ଡଷ୍ଟ୍ରିଜ୍ ଦ୍ୱାରା ଆଗତ ପ୍ରସ୍ତାବ ସମ୍ପର୍କରେ ଏକ ନୀତିଗତ ନିଷ୍ପତ୍ତି ପାଇଁ ଅନୁଷ୍ଠିତ ଆଲୋଚନାରେ ହୋଟେଲ ଏଣ୍ଡ ରେଷ୍ଟୁରାଣ୍ଟ ଆସୋସିଏସନ୍ ଅଫ୍ ଓଡ଼ିଶା (HARO), ଟ୍ରାଭେଲ ଏଜେଣ୍ଟ ଆସୋସିଏସନ୍ ଅଫ୍ ଓଡ଼ିଶା (TAAD) ଏବଂ ଓଡ଼ିଶା ଟୁର ଅପରେସନ୍ ଆସୋସିଏସନ୍ (OTOA)ର କର୍ମକର୍ତ୍ତାମାନେ ଷ୍ଟେକ୍ ହୋଲଡର ଭାବେ ଯୋଗଦେଇ ନିଜ ନିଜର ମତ ରଖିଥିଲେ । ଓଡ଼ିଶା ପର୍ଯ୍ୟଟନ ବିଭାଗ ଏବଂ ଏଫ୍.ଆଇ.ସି.ସି.ଆଇର ମିଳିତ ଉଦ୍ୟୋଗରେ ହେବାକୁ ଥିବା ଏହି ଟ୍ରାଭେଲ ମାର୍ଟ ଭୁବନେଶ୍ୱରରେ ହେବ । ତେବେ ଏହାର ସ୍ଥାନ କେଉଁଠି ନିରୂପଣ ହେବ ସେ ସମ୍ବନ୍ଧରେ ଆସନ୍ତା ବୈଠକରେ ନିଷ୍ପତ୍ତି ନିଆଯିବ ।

ଆଲୋଚନାରେ ଅଧ୍ୟକ୍ଷତା କରି ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା କହିଥିଲେ, ଓଡ଼ିଶାର ପର୍ଯ୍ୟଟନ ଶିଳ୍ପ ବିଶ୍ୱଆଦୃତ ହେବା ଦରକାର । ପ୍ରତିବର୍ଷ ଯେତିକି ସଂଖ୍ୟାରେ ବିଦେଶୀ ପର୍ଯ୍ୟଟକ ଆସୁଛନ୍ତି, ତାହାକୁ ବର୍ଷକ୍ରମରେ ବୃଦ୍ଧି କରିବାକୁ ଆମର ଲକ୍ଷ୍ୟ ରହିଛି । ବିଦେଶୀ ପର୍ଯ୍ୟଟକଙ୍କ ପରିସଂଖ୍ୟାନ ଚିତ୍ର ରଖି ମନ୍ତ୍ରୀ ଶ୍ରୀ ପଣ୍ଡା କହିଲେ ୨୦୧୧ ମସିହାରେ ସମୁଦାୟ ୬୦,୭୨୨ ଜଣ ବିଦେଶୀ ପର୍ଯ୍ୟଟକ ଆସିଥିବା ବେଳେ ୨୦୧୨ରେ ଏହା ବୃଦ୍ଧି ପାଇ ୬୪,୭୧୯ ଓ ୨୦୧୩ରେ ୬୬,୬୭୫ରେ ପହଞ୍ଚିଛି । ସରକାର ବିଦେଶୀ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ ସମସ୍ତ ପଦକ୍ଷେପ ନେଉଛନ୍ତି । ଚଳିତ ବର୍ଷ ପୁନେ ଓ ଭୋପାଳଠାରେ ୨ଟି ରୋଡ–ସୋ ଅନୁଷ୍ଠିତ ହୋଇଯାଇଥିବା ବେଳେ ନିକଟରେ ରାଞ୍ଚି, ଅହମ୍ମଦାବାଦ, ସୁରଟ, ପାଟନା ଓ ବାଙ୍ଗାଲୋରରେ ମଧ୍ୟ ଆୟୋଜିତ ହେବାର ଯୋଜନା ଅଛି । ଶ୍ରୀ ପଣ୍ଡା ଆହୁରି କହିଥିଲେ ଆନ୍ତର୍ଜାତିକ ଟୁରିଜିମ୍ ଇଭେଣ୍ଟରେ ଗତ ୨ ବର୍ଷ ଧରି ଓଡ଼ିଶା ଭାଗନେଇ ଆସୁଛି । ଚଳିତ ବର୍ଷର ଆସନ୍ତା ନଭେମ୍ବର ମାସରେ ଡବ୍ଲ୍ୟୁ.ଟି.ଏମ୍ ପକ୍ଷରୁ ଲଣ୍ଡନଠାରେ, ୨୦୧୫ ଜାନୁଆରୀରେ ଟାଇମସ୍ ଟ୍ରାଭେଲ ସୋ ପକ୍ଷରୁ ନିୟୁର୍କଠାରେ ଏବଂ ମାର୍ଚ୍ଚ, ୨୦୧୫ରେ ଆଇ.ଟି.ବି ପକ୍ଷରୁ ବର୍ଲିନ୍‌ଠାରେ ହେବାକୁ ଥିବା ଅନ୍ତର୍ଜାତୀୟ ଟୁରିଜିମ୍ ଇଭେଣ୍ଟ ପ୍ରୋଗ୍ରାମରେ ଓଡ଼ିଶା ଭାଗ ନେବାକୁ ସରକାରୀ ଅନୁମୋଦନ ପାଇ ସାରିଛି । ଓଡ଼ିଶାର ସଂସ୍କୃତି ଓ ଐତିହ୍ୟକୁ ପର୍ଯ୍ୟଟନ ସହ ସମନ୍ୱିତ କରିବା ସହ 'ଅତିଥି ଦେବୋ ଭବଃ' ମନ୍ତ୍ରକୁ ପରିପାଳନ କରିବା ପାଇଁ ସବୁ ସ୍ତରରେ ପ୍ରଶିକ୍ଷଣ ଦିଆଯାଇଛି । ଖୁବ୍ ଶୀଘ୍ର ଭାରତୀୟ ଟୁରିଜିମ୍ ଉନ୍ନୟନ କର୍ତ୍ତୃପକ୍ଷ ସହ ଓଡ଼ିଶାର ୩ଟି ପ୍ରକଳ୍ପରେ ଲାଇଟ୍ ଏଣ୍ଡ ସାଉଣ୍ଡ ବ୍ୟବସ୍ଥା ପାଇଁ ଯୋଗାଯୋଗ ହୋଇଛି । ଏହା ବ୍ୟତୀତ ରାଜସ୍ଥାନ ଟୁରିଜିମ୍ ସହ ଏକ ବୁଝାମଣାପତ୍ର ସ୍ୱାକ୍ଷର ହେବାର ଯୋଜନା ଅଛି ବୋଲି ମନ୍ତ୍ରୀ ଶ୍ରୀ ପଣ୍ଡା ସୂଚନା ଦେଇଥିଲେ । ଓଡ଼ିଶା ଟ୍ରାଭେଲ ମାର୍ଟର ସଫଳ କାର୍ଯ୍ୟକାରିତା ପାଇଁ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏକ ଉପଦେଷ୍ଟା କମିଟି ଓ ସଚିବଙ୍କ ଅଧ୍ୟକ୍ଷତାରେ ଷ୍ଟିୟରିଂ କମିଟି କାର୍ଯ୍ୟ କରିବ ବୋଲି ନିଷ୍ପତ୍ତି ନିଆଯାଇଛି ।

# ପୂର୍ବତନ ଗଡଜାତ ରାଜାମାନଙ୍କର ଇଷ୍ଟଦେବୀ

ଅଧ୍ୟାପକ ପବିତ୍ର ମୋହନ ବାରିକ

ସ୍ୱାଧୀନତା ପୂର୍ବର ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ପ୍ରତ୍ୟକ୍ଷ ଶାସନାଧୀନ ମୋଗଲ ବନ୍ଦୀ ଅଞ୍ଚଳ ଓ ଛବିଶିଟି ଦେଶୀୟ ରାଜ୍ୟକୁ ନେଇ ଗଠିତ ହୋଇଥିଲା । ପୂର୍ବତନ ଦେଶୀୟ ରାଜ୍ୟମାନଙ୍କର ଭିନ୍ନ ଭିନ୍ନ ରାଜବଂଶର ଶାସକମାନେ ନିରବଚ୍ଛିନ୍ନ ଭାବରେ ଶାସନ କାର୍ଯ୍ୟ ସଂପାଦିତ କରିଆସୁଥିଲେ । ତତ୍କାଳୀନ ସମୟର ଏହି ଗଡଜାତ ରାଜ୍ୟମାନଙ୍କର ଉତ୍ପତ୍ତି, ବିକାଶ, ସମୃଦ୍ଧି, ଧର୍ମଧାରଣା ଓ ସାମାଜିକ ଜୀବନଚର୍ଯ୍ୟା ଓ ରାଜନୈତିକ ବ୍ୟବସ୍ଥା ଓଡ଼ିଶା ଇତିହାସରେ ଘଟଣାବହୁଳ ଅଧ୍ୟାୟ । ଗଡଜାତ ରାଜ୍ୟମାନଙ୍କର ସାମାଜିକ, ଆଧ୍ୟାତ୍ମିକ ଓ ଧାର୍ମିକ ଅଭିବୃଦ୍ଧି, ସାଂସ୍କୃତିକ ମହତ୍ୱ ସୃଷ୍ଟି କରିବାରେ ସଫଳ ପ୍ରୟାସ ଆରମ୍ଭ ହୋଇଥିଲା । ଗଡଜାତ ରାଜ୍ୟମାନଙ୍କର ଐତିହ୍ୟ, ଇତିହାସ, ପରମ୍ପରା, ରୀତି, ନୀତି, ପ୍ରଥା, ବିଶ୍ୱାସ ଓ ଚିନ୍ତାଧାରା ଥିଲା ଓଡ଼ିଆ ଜାତିର ସାଂସ୍କୃତିକ ବିଭବ । ମୁଖ୍ୟତଃ ଶକ୍ତି ଉପାସନାର ସର୍ବଶ୍ରେଷ୍ଠ ନିଦର୍ଶନ ପୂର୍ବତନ ଦେଶୀୟ ରାଜ୍ୟମାନଙ୍କରେ ଦେଖିବାକୁ ମିଳିଥିଲା । ପାରମ୍ପରିକ ବ୍ୟବସ୍ଥା ମଧ୍ୟରେ ମାତୃଶକ୍ତିର ଆରାଧନା ଥିଲା ଏହି ରାଜ୍ୟମାନଙ୍କର ମୁଖ୍ୟ ଆକର୍ଷଣ । ପୂର୍ବତନ ଦେଶୀୟ ରାଜ୍ୟମାନଙ୍କର ପ୍ରତିଷ୍ଠା ସହିତ ସେହି ରାଜ୍ୟମାନଙ୍କର ଶାସନ ମୁଖ୍ୟ ରାଜାମାନେ ନିଜ ରାଜବଂଶର ଇଷ୍ଟ ତଥା ଆରାଧ୍ୟ ଦେବୀମାନଙ୍କୁ ନିଜ ରାଜ୍ୟରେ ପ୍ରତିଷ୍ଠା କରି ନିଷ୍ଠା ଓ ଆଗ୍ରହର ସହିତ ସମସ୍ତ ପୂଜାବିଧି ପାଳନ କରିଆସୁଥିଲେ । ଶାକ୍ତ ପରମ୍ପରାର ସମସ୍ତ ପୂଜାବିଧିକୁ ସମ୍ମାନର ସହିତ ପାଳନ କରିବା ନିମନ୍ତେ ରାଜାମାନେ ସ୍ୱତନ୍ତ୍ର ବ୍ୟବସ୍ଥାମାନ ମଧ୍ୟ ପ୍ରଚଳନ କରିଥିଲେ । ଗଡର ସୁରକ୍ଷା, ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା ଓ ସର୍ବବିଧ ମଙ୍ଗଳ ସାଧନ ନିମନ୍ତେ ଗଡଜାତ ରାଜାମାନେ ନିଜ ରାଜ୍ୟରେ ଦେବୀମାନଙ୍କୁ ସ୍ଥାପନ କରିଥିଲେ । ରାଜା ଓ ମହାରାଜାମାନେ ନିଜ ନିଜର ଇଷ୍ଟଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ପୂଜା ବ୍ୟବସ୍ଥା ମଧ୍ୟ ପ୍ରଚଳନ କରିଥିଲେ । ରାଜକୀୟ ପୃଷ୍ଠପୋଷକତା ଓ ପ୍ରୋତ୍ସାହନ ଲାଭ କରି ଅନେକ ପ୍ରାଚୀନ ଶକ୍ତି ପୀଠ ନିଜର ଆଧ୍ୟାତ୍ମିକ ମହତ୍ୱ ବଜାୟ ରଖିବାରେ ସମର୍ଥ ହୋଇଛନ୍ତି । ତତ୍କାଳୀନ ଓଡ଼ିଶାର ପ୍ରମୁଖ ରାଜବଂଶ ଯଥା: ସୋମ, ଗଙ୍ଗ, କାଳଚୂରୀ, ଶୈଳୋଦ୍ଭବ, ଭୋଇ, ଚୌହାଣ, ନାଗ, କଦମ୍ବ, ଭଞ୍ଜ, ନନ୍ଦ ଓ ସୂର୍ଯ୍ୟ ପ୍ରଭୃତି ମାତୃ ଉପାସନା ପ୍ରତି ବିଶେଷ ଗୁରୁତ୍ୱ ପ୍ରଦାନ କରିଆସିଥିଲେ ।

ସମ୍ବଲପୁର ଚୌହାଣ ରାଜବଂଶର ପ୍ରତିଷ୍ଠାତା ଥିଲେ ବଳରାମ ରାମଦେବ (ଖ୍ରୀ.୧୪୫୦–୧୪୫୬) । ପ୍ରଚଳିତ ଏକ ଲୋକକଥା ଅନୁଯାୟୀ ସମ୍ବଲପୁରର ଇଷ୍ଟ ଦେବୀ ମା'ସମଲେଇ ବଳରାମ ଦେବଙ୍କୁ ସ୍ୱପ୍ନରେ ଆବିର୍ଭୂତା ହୋଇ ନଦୀର ଅପର ପାର୍ଶ୍ୱରେ ସିମିଳି ବୃକ୍ଷ ତଳେ ତାଙ୍କ ମନ୍ଦିର ନିର୍ମାଣ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ସିମିଳିକୁ ସମ୍ବଲପୁର ଅଞ୍ଚଳରେ ସେମେଇ କହୁଥିବା ହେତୁ ଦେବୀଙ୍କୁ ସମଲାଇ ବା ସମେଲେଇ କୁହାଯିବାର ବିଶ୍ୱାସ କରାଯାଏ । ପରବର୍ତ୍ତୀ ସମୟରେ ଚୌହାଣ ରାଜାମାନେ ସମଲେଇ ବା ସମଲେଶ୍ୱରୀଙ୍କୁ ଇଷ୍ଟଦେବୀ ରୂପେ ସ୍ୱୀକାର କରିଥିଲେ । ରାଜା ବଳରାମ ଦେବଙ୍କ ସମୟରେ ନିର୍ମିତ ମନ୍ଦିରର ସଂସ୍କାର ଆଣିଥଲେ ରାଜା ଛତ୍ର ସାଏ । ସମଗ୍ର ଓଡ଼ିଶାର ଶକ୍ତି ପରମ୍ପରାରେ ଦେବୀ ସମଲେଶ୍ୱରୀ ଏକ ପ୍ରମୁଖ ସ୍ଥାନ ଅଧିକାର କରିଛନ୍ତି । ଦେବୀ ସମଲେଶ୍ୱରୀଙ୍କ ପୀଠରେ ପାଳିତ ହେଉଥିବା ମୁଖ୍ୟ ପର୍ବ–ପର୍ବାଣି ମଧ୍ୟରେ ନୂଆଁଖାଇ, ମହାଳୟା ଓ ଶାରଦୀୟ ଦୁର୍ଗାପୂଜା । ଦୁର୍ଗାପୂଜା ଅବସରରେ ଦେବୀଙ୍କ ନିକଟରେ ଆକର୍ଷଣୀୟ ଆଖଡା ଖେଳ ଅନୁଷ୍ଠିତ ହୁଏ । ଆଶ୍ୱିନ ଅମାବାସ୍ୟା ବା ମହାଳୟା ଦିନ ଦେବୀଙ୍କର ଧବଳ ମୁଖ ବା ଗଙ୍ଗା ଦର୍ଶନ ବେଶ ଅଧିକ ଆକର୍ଷଣୀୟ ଓ ହୃଦୟସ୍ପର୍ଶୀ ହୋଇଥାଏ । ଆଶ୍ୱିନ ଶୁକ୍ଳ ପ୍ରତିପଦାଠାରୁ ନବମୀ ପର୍ଯ୍ୟନ୍ତ ଶାରଦୀୟ ନବରାତ୍ର ପୂଜା ଅନୁଷ୍ଠିତ ହୋଇଥାଏ । ଓଡ଼ିଶାର ପୂର୍ବତନ ଛବିଶ ଗଡଜାତ ରାଜ୍ୟମାନଙ୍କ ମଧ୍ୟରେ ବଲାଙ୍ଗୀର–ପାଟଣା ଗଡଜାତ ଅନ୍ୟତମ । ଏହି ଦେଶୀୟ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ

ପାଟଣେଶ୍ୱରୀ । ପ୍ରଚଳିତ ଜନଶ୍ରୁତି ଅନୁଯାୟୀ ପାଟଣାଗଡର କଣ୍ଡରା ରାଜା କାମଚଣ୍ଡୀଙ୍କୁ ସ୍ଥାପନ କରିଥିଲେ । ମାଧବ ଚନ୍ଦ୍ର ଦେବ କଳିଙ୍ଗ ବିଜୟ ପରେ ପତ୍ତନ ରାଜ୍ୟ ସ୍ଥାପନ କରିଥିଲେ । ସେ କାମଚଣ୍ଡୀଙ୍କୁ ପତ୍ତନେଶ୍ୱରୀ ନାମରେ ପୂଜା କଲେ । ସମୟାନୁକ୍ରମେ ପତ୍ତନ ରାଜ୍ୟ ପାଟନା ରାଜ୍ୟ ନାମରେ ଏବଂ ଦେବୀ ପାଟନେଶ୍ୱରୀ ନାମରେ ପରିଚିତ ହେଲେ । ଚୌହାଣ ବଂଶୀୟ ରାଜା ରମାଇ ଦେବ ଇତିହାସ ବର୍ଣ୍ଣିତ ପାଟଣା ରାଜ୍ୟର ପ୍ରତିଷ୍ଠାତା ଦେବୀ ପାଟଣେଶ୍ୱରୀଙ୍କ ଉଦ୍ଦେଶ୍ୟରେ ରାଜଧାନୀ ପାଟଣାଗଡରେ ଏକ ମନ୍ଦିର ନିର୍ମାଣ କଲେ । ଆଶ୍ୱିନ ମାସରେ ଦେବୀଙ୍କ ମୁଖ୍ୟ ପର୍ବ ଅନୁଷ୍ଠିତ ହୁଏ । କୃଷ୍ଣପକ୍ଷ ଅଷ୍ଟମୀ ତିଥିରୁ ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ଷୋହଳ ପୂଜା ହୋଇଥାଏ । ଏହି ଷୋହଳ ପୂଜାରେ ରମାଇ ଦେବଙ୍କ ଖଣ୍ଡା ପୂଜା କରାଯାଇଥାଏ । ନବମୀ ଦିନ ଜଣଙ୍କ ଉପରେ ଦେବୀ ଆବିର୍ଭୂତା ହୁଅନ୍ତି ଓ ନଗର ପରିକ୍ରମା କରିଥାନ୍ତି । ଦେବୀଙ୍କର ଦଶହରା ପର୍ବ ଦର୍ଶନ ନିମନ୍ତେ ଦୂରଦୂରାନ୍ତରୁ ଏପରିକି ଛତିଶଗଡରୁ ଶ୍ରଦ୍ଧାଳୁମାନେ ପାଟଣାଗଡକୁ ଆସିଥାନ୍ତି । ଦେବୀ ମାଣିକେଶ୍ୱରୀ କଳାହାଣ୍ଡି ନାଗବଂଶୀ ରାଜ ପରିବାରର ଇଷ୍ଟ ଦେବୀ । ଗଡଜାତ ରାଜ୍ୟ କଳାହାଣ୍ଡିର ସଦର ମହକୁମା ଭବାନୀପାଟଣାର ରାଜପ୍ରାସାଦ ପରିସର ମଧ୍ୟରେ ଦେବୀ ମାଣିକେଶ୍ୱରୀ ବିରାଜିତ । ନାଗବଂଶର ରାଜା ଉଦିତ ପ୍ରସାଦ ଦେଓ (ଖ୍ରୀ.୧୮୫୪–୧୮୮୧)ଙ୍କ ରାଜତ୍ୱ ସମୟରେ ମାଣିକେଶ୍ୱରୀ ଦେବୀଙ୍କ ମନ୍ଦିର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଥିଲା । ମାଣିକ୍ୟ ପଥର ମିଳୁଥିବା ନାମ ମାଣିକ୍ୟ ପାଟଣା ରୂପେ ଓଡ଼ିଶାର ବିଶିଷ୍ଟ ଐତିହାସିକ କେଦାରନାଥ ମହାପାତ୍ର ଭବାନୀପାଟଣାକୁ ଚିହ୍ନଟ କରିଛନ୍ତି । ଭବାନୀପାଟଣାଠାରେ ଦେବୀ ମାଣିକେଶ୍ୱରୀଙ୍କର ପ୍ରତିଷ୍ଠାକୁ ପ୍ରମାଣିତ କରେ । ଥୁଆମୂଳ–ରାମପୁର ନିକଟସ୍ଥ ଇନ୍ଦ୍ରାବତୀ ନଦୀର ଉଦଗମ ସ୍ଥଳରେ ଦେବୀ ମାଣିକେଶ୍ୱରୀଙ୍କର ଆଦିପୀଠ ବୋଲି କେତେକ ଗବେଷକ ମତବ୍ୟକ୍ତ କରନ୍ତି । ବଡଖେମୁଣ୍ଡି, ପାରଳାଖେମୁଣ୍ଡି ରାଜବଂଶର ଇଷ୍ଟ ଦେବୀ ମଧ୍ୟ ମାଣିକେଶ୍ୱରୀ । ସୋନପୁର ସହର ମଧ୍ୟରେ ଦେବୀ ମାଣିକେଶ୍ୱରୀଙ୍କ ମନ୍ଦିର ଅବସ୍ଥିତ । ମାଣିକେଶ୍ୱରୀ ବର୍ତ୍ତମାନ ସାତଗୋଟି ପୀଠରେ ସପ୍ତ ମାତୃକା ରୂପେ ପୂଜା ପାଉଛନ୍ତି । ଏହି ସାତଟି ପୀଠ ହେଉଛି: ଭବାନୀ ପାଟଣା, ଥୁଆମୂଳ ରାମପୁର, କାଶୀପୁର, ଗୁଡାରୀ, ଗୁଣୁପୁର, ପୁରୁଣାପାଟଣା ଏବଂ ପାରଳାଖେମୁଣ୍ଡି । କଳାହାଣ୍ଡି ଜିଲ୍ଲାର ଇଷ୍ଟଦବୀ ମା'ମାଣିକେଶ୍ୱରୀଙ୍କ ପୀଠରେ ପ୍ରତି ମଙ୍ଗଳବାର ଓ ଶନିବାର ଦିନ ସ୍ୱତନ୍ତ୍ର ପୂଜାର୍ଚ୍ଚନା କରାଯାଇଥାଏ । ଶାରଦୀୟ ପର୍ବରେ ମାଣିକେଶ୍ୱରୀଙ୍କର ପ୍ରସିଦ୍ଧ ଛତର ଯାତ୍ରା ସମଗ୍ର ବିଶ୍ୱରେ ବିରଳ । ପ୍ରତିବର୍ଷ ମହାସପ୍ତମୀରେ ଦେବୀ ମାଣିକେଶ୍ୱରୀଙ୍କର ମସ୍ତକର ନବକଳେବର ହୁଏ । ଦେବୀ ମାଣିକେଶ୍ୱରୀଙ୍କ ପ୍ରତୀକ ଛତରକୁ ଏହି ଅବସରରେ ପୂଜା କରାଯାଏ । ଏହି ଛତର ଘଟ ସଂପର୍କରେ ଗବେଷକମାନଙ୍କ ମଧ୍ୟରେ ବିଭିନ୍ନ ମତ ପ୍ରକାଶ ପାଇଥାଏ । ଏହି ଛତରଟି ମାଣିକେଶ୍ୱରୀଙ୍କ ଛତ୍ର ବୋଲି କେତେକ ମତବ୍ୟକ୍ତ କରୁଥିବା ବେଳେ କେତେକ ଏହାକୁ ଦେବୀଙ୍କ ମନ୍ତ୍ର ଖୋଦିତ ପିଣ୍ଡ ରୂପେ ଅଭିହିତ କରନ୍ତି । ଶାରଦୀୟ ପୂଜା ଅବସରରେ ମହିମାମୟୀ ମା'ମାଣିକେଶ୍ୱରୀଙ୍କର ଛତର ଯାତ୍ରା ଦେଖିବାକୁ ଲକ୍ଷାଧିକ ଭକ୍ତଙ୍କର ସମାଗମ ହୋଇଥାଏ । ସୋନପୁରର କୈବର୍ତ୍ତ ସଂପ୍ରଦାୟର ଇଷ୍ଟ ଦେବୀ ମା'ମାଣିକେଶ୍ୱରୀ ଏକଦା ପରାକ୍ରମଶାଳୀ ଗଙ୍ଗ ରାଜବଂଶର ଅଧିଷ୍ଠାତ୍ରୀ ଦେବୀ ରୂପେ ସୁପରିଚିତ ଥିଲେ । କଳାହାଣ୍ଡି ଅନ୍ତର୍ଗତ ଜୁନାଗଡର ରାଜବଂଶର ଇଷ୍ଟଦେବୀ ହେଉଛନ୍ତି ମା'ଲଙ୍କେଶ୍ୱରୀ । କଳାହାଣ୍ଡିର ଶତକଡା ଅଶୀଭାଗ ଗ୍ରାମରେ ଦେବୀ ଲଙ୍କେଶ୍ୱରୀ ଇଷ୍ଟଦେବୀ ରୂପେ ପୂଜିତା । ସମଗ୍ର କଳାହାଣ୍ଡି ଜିଲ୍ଲାର ରାଜକୀୟ ତଥା ରଣବାଦ୍ୟ ରୂପେ ଘୁମୁରାର ପ୍ରାଧାନ୍ୟ ରହିଛି । ଦେବୀ ଲଙ୍କେଶ୍ୱରୀ ମନ୍ଦିରରେ ରାଜାଙ୍କ ଦ୍ୱାରା ଅନୁଷ୍ଠିତ ହେଉଥିବା ଖଣ୍ଡାବସା ପର୍ବରେ ମଧ୍ୟ ଘୁମୁରା ବାଦ୍ୟର ଗୁରୁତ୍ୱକୁ ଉପଲବ୍ଧି କରାଯାଏ । ବସ୍ତରରେ ଛନ୍ଦକ ନାଗବଂଶର ଓ କଳାହାଣ୍ଡିର ଛୋଟ ନାଗପୁର ନାଗବଂଶର ଇଷ୍ଟଦେବୀ ମାଣିକେଶ୍ୱରୀ । ବସ୍ତରର ଇଷ୍ଟଦେବୀ ଦନ୍ତେଶ୍ୱରୀ ଓ ମାଣିକେଶ୍ୱରୀ ମନ୍ଦିରରେ ଅନୁଷ୍ଠିତ ହେଉଥିବା ଛତର ଯାତ୍ରା ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖାଯାଏ । ରେଢ଼ାଖୋଲ ରାଜାଙ୍କ ଆରାଧ୍ୟ ଦେବୀ ଥିଲେ ମାହେଶ୍ୱରୀ । ବୌଦ୍ଧ, ସୋନପୁର, ଆଠମଲ୍ଲିକ ପ୍ରଭୃତି ଅନେକ ଅଞ୍ଚଳରେ ମାହେଶ୍ୱରୀ ଦେବୀଙ୍କ ପୂଜା ଆରାଧନା ହେଉଥିବାର ଜଣାଯାଏ । ପଶ୍ଚିମ ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ଅଞ୍ଚଳ ବରଗଡର ରାଜ ପ୍ରତିଷ୍ଠିତ ଇଷ୍ଟଦେବୀ ବରାହୀ । ଏହି ଜିଲ୍ଲାର ଅନ୍ୟତମ ଐତିହ୍ୟ ସଂପନ୍ନ ଅଞ୍ଚଳ ପଦ୍ମପୁର ଏଠାକାର ରାଜ ପରିବାର ଦ୍ୱାରା ପ୍ରତିଷ୍ଠିତ ଇଷ୍ଟଦେବୀ ହେଲେ ବିନ୍ଧେଶ୍ୱରୀ । ଖଡିଆଳ ରାଜବଂଶର ଇଷ୍ଟଦେବୀ ମା' ରକ୍ତାମ୍ବରୀ ଅନ୍ୟତମ ରାଜ ପ୍ରତିଷ୍ଠିତ ଦେବୀ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ପଶ୍ଚିମ ଓଡ଼ିଶାର ଅନ୍ୟତମ ପ୍ରାଚୀନ ଶକ୍ତିପୀଠ ଭାବରେ ସୁବର୍ଣ୍ଣପୁର ଜିଲ୍ଲାର ସଦର ମହକୁମା ସୋନପୁରର ନାମ ସର୍ବଦା ସ୍ମରଣୀୟ । ସୋନପୁରର ଅଷ୍ଟଚଣ୍ଡୀ ମନ୍ଦିରମାନଙ୍କ ମଧ୍ୟରେ ଦେବୀ ସୁରେଶ୍ୱରୀ ଅନ୍ୟତମ । ସେ ସୋନପୁର ଚୌହାନ ରାଜବଂଶର ଇଷ୍ଟଦେବୀ । ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ ପର୍ଶୁରାମ ଏଠାରେ ଯଜ୍ଞାନୁଷ୍ଠାନ ସମ୍ପାଦନ କରି ମାତା ରେଣୁକାଙ୍କ ନିର୍ଦ୍ଦେଶାନୁସାରେ ଦେବୀ ସୁରେଶ୍ୱରୀଙ୍କୁ ପ୍ରତିଷ୍ଠା କରିଥିଲେ । ଦେବୀ ସୁରେଶ୍ୱରୀଙ୍କ ମନ୍ଦିର ରେଣୁକା ପୀଠ ନାମରେ ପରିଚିତ । ସୋନପୁର ସହରର ଦକ୍ଷିଣ–ପଶ୍ଚିମ କୋଣରେ ଲକ୍ଷ୍ମୀ ଭଣ୍ଡାର ସମ୍ମୁଖରେ

ମା'ସୁରେଶ୍ୱରୀଙ୍କର ମନ୍ଦିର ଅବସ୍ଥିତ । ଦେବୀ ସୁରେଶ୍ୱରୀ ସୁବର୍ଣ୍ଣପୁର ଜିଲ୍ଲାର ପ୍ରତ୍ୟକ୍ଷ ଆରାଧ୍ୟ ଦେବୀ । ପୂର୍ବେ କାଳଚୁରୀ ରାଜାଙ୍କ ଦୁର୍ଗର ରକ୍ଷାକର୍ତ୍ତ୍ରୀ ରୂପେ ଦେବୀ ସୁରେଶ୍ୱରୀ ପ୍ରତିଷ୍ଠିତ ହୋଇଥିଲେ । ପରବର୍ତ୍ତୀ ସମୟରେ ଚୌହାଣ ରାଜା ଅଚଳ ସିଂହଦେଓ ଦେବୀଙ୍କ ଉଦ୍ଦେଶ୍ୟରେ ବର୍ତ୍ତମାନର ମନ୍ଦିର ନିର୍ମାଣ କରିଥିଲେ । ପୁନର୍ବାର ମହାରାଜା ବୀରମିତ୍ରୋ ସିଂହଦେଓ ମନ୍ଦିର ପରିସରରେ ଅନେକ ଦେବା-ଦେବୀଙ୍କ ମନ୍ଦିର ନିର୍ମାଣ କରିଥିବାର ଜଣାଯାଏ । ଚୈତ୍ର ମାସର ଚାରୋଟି ମଙ୍ଗଳବାର, ଚୈତ୍ର ପୂର୍ଣ୍ଣିମା ସମେତ ଆଶ୍ୱିନ ମାସର ଶୁକ୍ଳ ଚତୁର୍ଥୀଠାରୁ ଦଶହରା ପର୍ଯ୍ୟନ୍ତ ଦେବୀଙ୍କର ସ୍ୱତନ୍ତ୍ର ଦଶ ବେଶ ସହ ଷୋଡ଼ଶ ଉପଚାରରେ ପୂଜାର୍ଚ୍ଚନା ହୋଇଥାଏ । ଦଶହରା ଦିନ ମହାବଳୀ ମା'ସୁରେଶ୍ୱରୀଙ୍କ ପୀଠକୁ ଆସନ୍ତି । ସରକାରୀ ଟ୍ରେଜେରୀରେ ରଖାଯାଇଥିବା ଦେବୀଙ୍କର ରୂପା ଓ ସ୍ୱର୍ଣ୍ଣାଳଙ୍କାର ଅଣାଯାଇ ଏହିଦିନ ଦେବୀଙ୍କୁ ବିଭୂଷିତ କରାଯାଏ । ଏହି ଦିନ ଢ଼ୋଲ, ନିଷାନ, ମହୁରୀ, ଶଙ୍ଖ ଓ ଘଣ୍ଟଘଣ୍ଟା ଧ୍ୱନିରେ ଦେବୀ ସୁରେଶ୍ୱରୀଙ୍କ ମନ୍ଦିର ପରିସର ସମେତ ସମଗ୍ର ସୋନପୁର ସହର ପ୍ରକମ୍ପିତ ହୋଇଉଠେ । ଦେବୀ ସୁରେଶ୍ୱରୀଙ୍କ ମନ୍ଦିର ପରିସରରେ ଏକ ଖଉଳଗାଡ ଦେଖିବାକୁ ମିଳେ । ଖଉଳଗାଡ ରାମାୟଣ ବର୍ଣ୍ଣିତ ପର୍ଶୁରାମଙ୍କ ଏକୁଡିଶାଳ ନାମରେ ପରିଚିତ । ପିତାଙ୍କ ନିର୍ଦ୍ଦେଶରେ ନିଜ ମାତା ରେଣୁକାଙ୍କୁ ହତ୍ୟା କରିଥିଲେ । ମାତୃ ହତ୍ୟା ପାପରୁ ମୁକ୍ତି ପାଇବା ପାଇଁ ଏହିଠାରେ ଏକ ଯଜ୍ଞର ଆୟୋଜନ କରିଥିଲେ । ଏହି ଯଜ୍ଞକୁଣ୍ଡଟି ବର୍ତ୍ତମାନର ଖଉଳଗାଡ ବୋଲି ଲୋକ ବିଶ୍ୱାସରେ ଉଜ୍ଜୀବିତ ଅଛି । ଆଶ୍ୱିନ ମାସରେ ସୋନପୁରରେ ଏକମାସ ବ୍ୟାପୀ ବିଶ୍ୱ ପ୍ରସିଦ୍ଧ ବଳିଯାତ୍ରା ଅନୁଷ୍ଠିତ ହୁଏ । ବଳିଯାତ୍ରାର ଅର୍ଥ ହେଲା ଏକ ବରୁଆ ଶରୀରରେ ଦେବତା ଆବିର୍ଭାବ ହେବା । ସୋନପୁରରେ ଶାରଦୀୟ ଦୁର୍ଗାପୂଜା ଅବସରରେ ଅନୁଷ୍ଠିତ ବଳିଯାତ୍ରା ସମଗ୍ର ପଶ୍ଚିମ ଓଡ଼ିଶାର ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ଚେତନାର ବାର୍ତ୍ତାବହ ରୂପେ ବିଦିତ । ବୌଦ୍ଧ ଗଡଜାତ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ମା'ଭୈରବୀ । ବୌଦ୍ଧସ୍ଥିତ ପୁରୁଣା କଟକ ମା'ଭୈରବୀ ଦେବୀଙ୍କ ପ୍ରସିଦ୍ଧ ପୀଠ । ବୌଦ୍ଧ ରାଜବଂଶର ଇତିହାସ ତଥା ପଞ୍ଚସଖା ଯୁଗର ଶ୍ରେଷ୍ଠ ସାଧକ ଶ୍ରୀ ଅଚ୍ୟୁତାନନ୍ଦ ମହାପ୍ରଭୁଙ୍କ ମାଦଳା ପାଞ୍ଜିରେ ଦେବୀ ଭୈରବୀଙ୍କର ଅଲୌକିକ ମହିମା ସଂପର୍କରେ ଉଲ୍ଲେଖ ଅଛି । ଏଥିରେ ବର୍ଣ୍ଣିତ ଥିବା ତଥ୍ୟ ଅନୁଯାୟୀ ଷଷ୍ଠ ଶତାବ୍ଦୀରୁ ଏହି ପୀଠରେ ଦେବୀଙ୍କ ପୂଜାର୍ଚ୍ଚନା କରାଯାଇ ଆସୁଅଛି । ଶାରଦୀୟ ଦୁର୍ଗାପୂଜା ଦେବୀଙ୍କ ପୀଠର ମୁଖ୍ୟ ଆକର୍ଷଣ । ଦେବୀଙ୍କ ପୀଠରେ ଅନୁଷ୍ଠିତ ହେଉଥିବା ଷୋହଳ ପୂଜାର ଅଷ୍ଟମୀ ଦିନ ଅର୍ଥାତ୍ ମହାଳୟା ଅମାବାସ୍ୟାର ଅମା ଅନ୍ଧକାରରେ ଅଧିଷ୍ଠାତ୍ରୀ ଦେବୀ ମା'ଭୈରବୀ ଠାକୁରାଣୀଙ୍କର ବିଜୟ ପ୍ରତିମା ପାଟଖଣ୍ଡାଙ୍କର ପାର୍ଶ୍ୱ ପରିବର୍ତ୍ତନ ହୋଇଥାଏ । ଏହି ଦିନର ପୂଜା ଖଣ୍ଡା ଲେଉଟା ବୋଲି କୁହାଯାଏ । ମହାଷ୍ଟମୀରେ ଦେବୀ ମହିଷା ମର୍ଦ୍ଦିନୀ ବେଶ ଧାରଣ କରିଥାନ୍ତି । ନବମୀ ତିଥିରେ ଦେବୀ ଭୈରବୀଙ୍କ ପାଖରେ ନବାନ୍ନ ଲାଗିଥାଏ । ଏହିଦିନ ମନ୍ଦିର ପୁରୋହିତ ଓ ଦେହୁରୀ ନବବସ୍ତ୍ର ପରିଧାନ କରି ନବାନ୍ନ ଭକ୍ଷଣ କରିଥାନ୍ତି । ବଲାଙ୍ଗୀର ଜିଲ୍ଲାର ଶକ୍ତିପୀଠ ମଧ୍ୟରେ କୁଶଙ୍ଗାଇ ଅନ୍ୟତମ । ବଲାଙ୍ଗୀର ସହରଠାରୁ ୨୩କିମି ଦୂରତା ଅତିକ୍ରମ କଲେ ଲୋଇସିଂହା ବ୍ଲକର କୁଶଙ୍ଗ ଗ୍ରାମରେ ପ୍ରାଚୀନ ଶକ୍ତିପୀଠରେ ଦେବୀ କୁଶଙ୍ଗାଇ ବିରାଜିତ । କୋଶଳ ଇତିହାସ ଅନୁଯାୟୀ ସୂର୍ଯ୍ୟବଂଶରେ କୁଶ ନାମକ ଜଣେ ରାଜା ଥିଲେ । ରାଜା ନିଜ ନାମ କୁଶନାଇ ଅନୁଯାୟୀ ଗ୍ରାମଟିଏ ସ୍ଥାପନ କରି କୁଶଙ୍ଗ ନାମକରଣ କଲେ । ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସୋମବଂଶୀ ରାଜା ଯଯାତି ଦ୍ୱିତୀୟଙ୍କ ଦ୍ୱାରା ନିର୍ମିତ ହୋଇଥିଲା କୁଶଙ୍ଗାଇ ମନ୍ଦିର । ପଞ୍ଚରଥ ଶୈଳୀରେ ନିର୍ମିତ ଏହି ମନ୍ଦିରକୁ ୧୯୩୭-୩୮ ମସିହାରେ ବଲାଙ୍ଗୀର ପାଟଣାଗଡଜାତ ରାଜ୍ୟର ଶେଷ ଶାସକ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ମରାମତି କରିଥିଲେ । ଦେବୀଙ୍କୁ ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ତିଥିରୁ ଶୁକ୍ଳପକ୍ଷ ମହାଷ୍ଟମୀ ପର୍ଯ୍ୟନ୍ତ ଦୀର୍ଘ ୧୬ଦିନ ଧରି ଷୋଡଶ ଉପଚାରରେ ପୂଜାର୍ଚ୍ଚନା କରାଯାଏ । କୃଷ୍ଣପକ୍ଷ ଅଷ୍ଟମୀ ତିଥି ଦିନ ଦେବୀଙ୍କର ଖଣ୍ଡାବସା ଆରମ୍ଭ ହୁଏ । ପବିତ୍ର ଦଶହରା ସମୟରେ ବରଗଡ ଜିଲ୍ଲାର ଅତାବିରା ନିକଟସ୍ଥ ପାହାଡ ଶ୍ରୀଗିଡାରେ ଦୁଇଶହ ବର୍ଷ ଧରି ପ୍ରଚଳିତ ହୋଇ ଆସୁଥିବା ରଣଜିତା ଯାତ୍ରା ଅନୁଷ୍ଠିତ ହୁଏ । ଆଶ୍ୱିନ ସପ୍ତମୀଠାରୁ ପୂର୍ବ ପରମ୍ପରା ଅନୁଯାୟୀ ଜମିଦାରଙ୍କ ପାଟଖଣ୍ଡା ସମେତ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ରର ପୂଜାର୍ଚ୍ଚନା କରାଯାଏ । ଏହିଦିନଠାରୁ ଆଶ୍ୱିନ ଏକାଦଶୀ ପର୍ଯ୍ୟନ୍ତ ବିଭିନ୍ନ ପାରମ୍ପରିକ କାର୍ଯ୍ୟକ୍ରମ ମଲ୍ଲଯୁଦ୍ଧ, ଖଣ୍ଡା ଓ ବାଡି ଖେଳ ଅନୁଷ୍ଠିତ ହୁଏ । ମା'ଦୁର୍ଗା ଦେବୀଙ୍କର ଧରାବତରଣର ପବିତ୍ର ମୁହୂର୍ତ୍ତରେ ବଲାଙ୍ଗୀର ଜିଲ୍ଲାର ଜରାସିଂହ ଜମିଦାରୀରେ ଅନୁଷ୍ଠିତ ହୁଏ ଐତିହ୍ୟ ସଂପନ୍ନ ପାଟଖଣ୍ଡା ଯାତ୍ରା । ଆଶ୍ୱିନ ମାସ ନବମୀ ଦିନଠାରୁ ଏହି ଯାତ୍ରା ଆରମ୍ଭ ହୁଏ । ପଶ୍ଚିମ ଓଡ଼ିଶାର ଅନେକ ରାଜା-ମହାରାଜା, ଗୌନ୍ତିଆ, ଜମିଦାର ଓ ଗ୍ରାମ ମୁଖ୍ୟ ପ୍ରଭୃତି ନିଜର ପୃଷ୍ଠପୋଷକତା ପ୍ରଦାନ କରି ଶକ୍ତି ଉପାସନାର ଚରମ ନିଦର୍ଶନ ସୃଷ୍ଟି କରିଯାଇଛନ୍ତି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୭୫୨୦୫୪

# ପ୍ରତ୍ନତତ୍ତ୍ୱବିତ୍ ପଦ୍ମଶ୍ରୀ ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

**ଜୟଶଙ୍କର ନାୟକ**

ଭାରତର ଇତିହାସକୁ ମହିମାନ୍ୱିତ ଓ ଗୌରବାନ୍ୱିତ କରିଥିବା ଅସାଧାରଣ ପ୍ରତିଭା ସମ୍ପନ୍ନ ଓ ମହନୀୟ କୃତିତ୍ୱ ଦ୍ୱାରା ବରେଣ୍ୟ ବ୍ୟକ୍ତିମାନଙ୍କ ମଧ୍ୟରୁ ଗବେଷକ, ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ପ୍ରଦ୍ମଶ୍ରୀ ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଥିଲେ ଅନ୍ୟତମ । ସେ ଥିଲେ ଜଣେ ଯୋଗଜନ୍ମା ପୁରୁଷ । ତାଙ୍କର ଅଗାଧ ପାଣ୍ଡିତ୍ୟ ଓ ବ୍ୟକ୍ତିତ୍ୱ ଉଚ୍ଚକୋଟୀର ଥିବାରୁ ତାଙ୍କୁ ଅମର କରି ରଖିବା ନିମନ୍ତେ 'ପଦ୍ମଶ୍ରୀ' ଉପାଧି ପ୍ରଦାନ କରାଯିବା ଏକ ଉଲ୍ଲେଖନୀୟ ଘଟଣା । ସେ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ପ୍ରତ୍ନତତ୍ତ୍ୱବିତ୍ ତଥା ଐତିହାସିକ ଥିଲେ । ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଅବଦାନ ମଧ୍ୟ ଅତୁଳନୀୟ । ଓଡ଼ିଆ ସାହିତ୍ୟ, ସଂସ୍କୃତି, ପ୍ରତ୍ନତତ୍ତ୍ୱ ଓ ଇତିହାସକୁ ସେ ଯେପରି ସମୃଦ୍ଧ କରି ଯାଇଛନ୍ତି, ତାହା ଅବିସ୍ମରଣୀୟ । ପ୍ରତ୍ନତାତ୍ତ୍ୱିକ ଖନନରୁ ଆବିଷ୍କୃତ ପ୍ରାଚୀନ ମୃତ୍ତିକା ପାତ୍ରଗୁଡ଼ିକର ସମୟ ନିର୍ଦ୍ଧାରଣ, ପ୍ରାଚୀନ ଅଭିଲେଖାର ପାଠୋଦ୍ଧାର, ପ୍ରାଚୀନ ମନ୍ଦିରଗୁଡ଼ିକର ନିର୍ମାଣଶୈଳୀ ଆଦି ପ୍ରତ୍ନତାତ୍ତ୍ୱିକ ଜ୍ଞାନ ଏବଂ ସେଥିରୁ ପ୍ରାପ୍ତ ଐତିହାସିକ ତଥ୍ୟଗୁଡ଼ିକର ବିଶ୍ଳେଷଣ କରିବାରେ ସେ ଥିଲେ ଜଣେ ଶ୍ରେଷ୍ଠ ଅଭିଲେଖବିତ୍ ତଥା ଐତିହାସିକ । ଏହିସବୁ ମହନୀୟ ଗୁଣକୀର୍ତ୍ତି ପାଇଁ ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କର ଅବଦାନ ଯଥାର୍ଥରେ ଅବିସ୍ମରଣୀୟ ।



୧୯୦୯ ମସିହା ନଭେମ୍ବର ମାସ ୧୯ ତାରିଖ ଦିନ କୃଷ୍ଣଚନ୍ଦ୍ର ମୟୂରଭଞ୍ଜ ଜିଲ୍ଲାର ଐତିହାସିକ ସ୍ଥାନ ଖିଚିଂ ଗ୍ରାମରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ସାଗର ଓ ମାତାଙ୍କ ନାମ ସରସ୍ୱତୀ । ତାଙ୍କର ଛଅ ଭାଇ (ଗୋବିନ୍ଦ, ଗୋପିନାଥ, ନାରାୟଣ, ହରିହର, କୃଷ୍ଣଚନ୍ଦ୍ର ଓ ଗିରିଶ୍) ଓ ଗୋଟିଏ ଭଉଣୀ ରୁକ୍ମିଣୀ ଜନ୍ମ ଗ୍ରହଣ କରିଥିଲେ । ଭାଇମାନଙ୍କ ମଧ୍ୟରୁ ପଞ୍ଚମରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ୧୯୩୧ ମସିହାରେ ତାରାମଣୀ ଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ଦୁଇପୁତ୍ର ହିରଣ୍ୟ, ବରଣ୍ୟ ଓ ଦୁଇ କନ୍ୟା କଳ୍ପନା, ଶୋଭନା । ବାଲ୍ୟାବସ୍ଥାରୁ ସେ ପିତାମାତାଙ୍କୁ ହରାଇ ବସିଥିଲେ । ଫଳରେ ସେ ପିତୃ ମାତୃ ସୁଖରୁ ବଞ୍ଚିତ ହୋଇଥିଲେ । ତାଙ୍କର ଜୀବନ ସଂଘର୍ଷମୟ ଥିଲା । ତାଙ୍କୁ ୧୫ ବର୍ଷ ବୟସ ହୋଇଥିବା ସମୟରେ ବହୁ ବିଳମ୍ବରେ ସେ ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ । କରଞ୍ଜିଆ ମଧ୍ୟଇଂରାଜୀ ବିଦ୍ୟାଳୟ ଓ ବାରିପଦା ହାଇସ୍କୁଲରୁ ୧୯୩୧ ମସିହାରେ ପାଶ କରି ରେଭେନ୍ସା କଲେଜରୁ ୧୯୩୫ ମସିହାରେ ଇତିହାସରେ ଅନର୍ସ ପାଇ ବି.ଏ.ପାଶ କରିଥିଲେ । ତା'ପରେ ମୟୂରଭଞ୍ଜ ମହାରାଜାଙ୍କର ସାହାଯ୍ୟରେ କୋଲକାତାରେ ପ୍ରାଚୀନ ଇତିହାସ ଓ ସଂସ୍କୃତରେ ୧୯୩୭ ମସିହାରେ ଏମ୍.ଏ.ପାଶ କରିଥିଲେ ।

ପରେ ୧୯୫୪ ମସିହାରେ କୋଲକତା ବିଶ୍ୱବିଦ୍ୟାଳୟରୁ ଡ଼କ୍ଟରେଟ୍ ଡ଼ିଗ୍ରୀ ହାସଲ କରିଥିଲେ ।

ମୟୂରଭଞ୍ଜ ମହାରାଜାଙ୍କ ପ୍ରେରଣାରେ ସେ ଭାରତ ସରକାରଙ୍କ ପନ୍ତତ୍ତ୍ୱ ବିଭାଗ ଦିଲ୍ଲୀରେ ୧୯୩୭ରୁ ୧୯୪୪ ମସିହା ପର୍ଯ୍ୟନ୍ତ ଗବେଷକ ରୂପେ ଯୋଗ ଦେଲେ । ଏହି ସମୟରେ ସେ ଭାରତରେ ପ୍ରନ୍ତତ୍ତ୍ୱ ବିଭାଗଦ୍ୱାରା ଖନନ କାର୍ଯ୍ୟରେ ଏବଂ ବିଭିନ୍ନ ସଂଗ୍ରହାଳୟମାନଙ୍କରେ କାର୍ଯ୍ୟ କରି ଅଭିଜ୍ଞତା ହାସଲ କରିଥିଲେ । ୧୯୪୪ ମସିହା ପର୍ଯ୍ୟନ୍ତ ତାଙ୍କୁ ଏକ ପ୍ରକାର ଛାତ୍ରଜୀବନ ଅତିବାହିତ କରିବାକୁ ପଡ଼ିଥିଲା । ଦିଲ୍ଲୀରୁ ଫେରି ୧୯୪୪ ମସିହାରେ ଗଙ୍ଗାଧର ମେହେର କଲେଜରେ ଇତିହାସ ବିଭାଗରେ ଅଧ୍ୟାପକ ଭାବେ ସେ ଯୋଗ ଦେଲେ । ତା'ପରେ ୧୯୪୭ରୁ ୧୯୫୧ ମସିହା ପର୍ଯ୍ୟନ୍ତ ଓଡ଼ିଶା ମ୍ୟୁଜିୟମରେ କ୍ୟୁରେଟର ରୂପେ ଯୋଗଦେଲେ । ପୁନରାୟ ୧୯୫୧ରୁ ୧୯୫୪ ମସିହା ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ଇତିହାସ ବିଭାଗରେ ଅଧ୍ୟାପକ ହେଲେ । ୧୯୫୪ରୁ ୧୯୬୧ ମସିହା ପର୍ଯ୍ୟନ୍ତ ଭାରତ ସରକାରଙ୍କ ପ୍ରନ୍ତତ୍ତ୍ୱ ବିଭାଗରେ ଆସିଷ୍ଟାଣ୍ଟ ଓ ପରେ ସୁପରିଟେଣ୍ଡେଣ୍ଟଭାବେ ଯୋଗ ଦେଲେ । ୧୯୬୧ରୁ ୧୯୬୮ ମସିହା ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ଅଧ୍ୟାପକ ରୂପେ କାର୍ଯ୍ୟ କଲେ । ଅବସର ଗ୍ରହଣର ମାତ୍ର ୧୦ ଦିନ ପୂର୍ବରୁ ତାଙ୍କୁ ପ୍ରଫେସର ପଦକୁ ଉନ୍ନୀତ କରାଯାଇଥିଲା । ତା'ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସେ ଇତିହାସ ଅଧ୍ୟାପକ ହେଲେ । ଏଠାରୁ ଅବସର ନେଇ ୧୯୭୨ ମସିହାରେ ୟୁନିଭରସିଟି ଗ୍ରାଣ୍ଟସ୍ କମିଶନ ଦ୍ୱାରା ନିଯୁକ୍ତି ପାଇ ରେଭେନ୍ସା କଲେଜରେ ଗବେଷଣା କରିଥିଲେ ।

ସେ ବହୁ ଉପାଦେୟ ପୁସ୍ତକ ଗ୍ରନ୍ଥର ରଚୟିତା ଥିଲେ । ତାଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ ପୁସ୍ତକ ହେଲା ଭାରତୀୟ ପ୍ରନ୍ତତ୍ତ୍ୱ (୧୯୬୦), ଆର୍କିଓଲୋଜିକାଲ ରିମେନ୍ସ ଅଫ୍ ଭୁବନେଶ୍ୱର (ଇଂରାଜୀ–୧୯୬୧), ଆର୍କିଓଲୋଜି ଅଫ୍ ଓଡ଼ିଶାର (ଇଂରାଜୀ–୧୯୬୧), ଇତିହାସ ଓ କିମ୍ବଦନ୍ତୀ (୧୯୬୪), ପ୍ରବନ୍ଧ ମାନସ (୧୯୭୨), ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର (୧୯୭୩), ସାରଳା ସାହିତ୍ୟରେ ଐତିହାସିକ ଚିତ୍ର (୧୯୭୬), ସାରଳା ଦାସ (ଇଂରାଜୀ– ୧୯୭୬), ମୋ ସମୟର ଓଡ଼ିଶା (୧୯୭୬), ହିଷ୍ଟ୍ରି ଅଫ ଓଡ଼ିଶା (ଇଂରାଜୀ –୧୯୮୧) । ସେ ଜଣେ ଉଚ୍ଚକୋଟୀର ପ୍ରବନ୍ଧ ଲେଖକ ଥିଲେ । ସେ ଶଙ୍ଖ, ଝଙ୍କାର, ଡ଼ଗର, ନବଜୀବନ ପ୍ରଭୃତି ପତ୍ରିକାରେ ନିୟମିତ ରୂପେ ଲେଖୁଥିଲେ । ସଂସ୍କୃତ ସାହିତ୍ୟରେ ତାଙ୍କର ପ୍ରବେଶ ଥିଲା । ବିଭିନ୍ନ ଇଂରାଜୀ ପତ୍ରିକାରେ ମଧ୍ୟ ଅନେକ ପ୍ରବନ୍ଧ ଲେଖିଥିଲେ । ୧୯୭୫ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଥିଲେ ଏବଂ ୧୯୮୩ ମସିହାରେ ତାଙ୍କର ଆତ୍ମଜୀବନୀ 'ମୋ ସମୟର ଓଡ଼ିଶା' ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଥିଲା । ସେ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ମଧ୍ୟ ପୁରସ୍କାର ଓ ସମ୍ମାନିତ ହୋଇଥିଲେ । ଶେଷରେ ସେ ୧୯୭୬ ମସିହାରେ 'ପଦ୍ମଶ୍ରୀ' ଉପାଧି ପାଇଥିଲେ ।

ଓଡ଼ିଶାର କଳା ଓ ସ୍ଥାପତ୍ୟର ଗୌରବକୁ ସେ ବିଶ୍ୱ ଦରବାରରେ ଉପସ୍ଥାପିତ କରିଥିଲେ । ଓଡ଼ିଶାର ଶିଶୁପାଳଗଡ଼ ଖନନ କାର୍ଯ୍ୟରେ ସେ ନିଯୁକ୍ତ ହୋଇଥିଲେ ଏବଂ ଅନେକ ମୌଳିକ ତଥ୍ୟ ସନ୍ଧାନ କରିଥିଲେ । ମାଦଳାପାଞ୍ଜି ଅନୁସାରେ ଓଡ଼ିଶାର ରାଜବଂଶର ସମୟ ନିରୂପଣ କରିଥିଲେ । ସେ ଓଡ଼ିଶାର ଅନେକ ଲୁକ୍କାୟିତ ଐତିହାସିକ ତଥ୍ୟ ଆବିଷ୍କାର କରିଥିଲେ । ଓଡ଼ିଶାର ସଂଗ୍ରହାଳୟ (ମ୍ୟୁଜିୟମ) କୁ ସମୃଦ୍ଧ ଓ ଉନ୍ନତ କରିବାରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଡକ୍ଟର ପାଣିଗ୍ରାହୀ କୋଲକାତା ବିଶ୍ୱବିଦ୍ୟାଳୟରେ ପ୍ରାଚୀନ ଭାରତର ଇତିହାସ ଓ ସଂସ୍କୃତିରେ ସ୍ନାତକୋତ୍ତର ଶିକ୍ଷାଲାଭ କରୁଥିବା ସମୟରୁ ପ୍ରନ୍ତତ୍ତ୍ୱ ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ । କୋଲକାତାର ଡକ୍ଟର ହେରମ୍ବ ଚନ୍ଦ୍ର ରାୟଚୌଧୁରୀ, ଡକ୍ଟର ଜୀତେନ୍ଦ୍ର ନାଥ ବାନାର୍ଜୀ, ଡକ୍ଟର ଷ୍ଟିଲା କ୍ରାମ୍‌ରିସ ଓ ବିଜୟ ଚନ୍ଦ୍ର ସେନ ପ୍ରଭୃତି ଅଧ୍ୟାପକମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ପ୍ରନ୍ତତ୍ତ୍ୱ ସମ୍ପର୍କିତ ଅନ୍ୱେଷଣ ଓ ଗବେଷଣା କରିବା ପାଇଁ ମନ ବଳାଇ ଥିଲେ । ଏମ୍.ଏ ପାଶ କରିବା ପରେ ଡକ୍ଟର ପାଣିଗ୍ରାହୀ ପ୍ରଥମେ ମୟୂରଭଞ୍ଜର ପ୍ରନ୍ତାତ୍ତ୍ୱିକ ରାମ ପ୍ରସାଦ ଚନ୍ଦ୍ରଙ୍କ ସହ ସହକାରୀ ରୂପେ କିଛି ଅଭିଜ୍ଞତା ଲାଭ କରିଥିଲେ ଏବଂ ପରେ ଭାରତୀୟ ପ୍ରନ୍ତାତ୍ତ୍ୱିକବିତ୍ ସର୍ବେକ୍ଷଣ ସଂସ୍ଥାର ଗବେଷକ ରୂପେ ଯୋଗ ଦେଇଥିଲେ । ପ୍ରାଚୀନ ମୃତ୍ – ପାତ୍ର ସମ୍ବନ୍ଧରେ ଗବେଷଣା ଚଳାଇ ଏକ ନିବନ୍ଧ ପ୍ରସ୍ତୁତ କରିଥିଲେ, ଯାହା ତତ୍କାଳୀନ ଡ଼ାଇରେକଟର ଜେନେରାଲ ରାୟବାହାଦୁର କାଶିନାଥ ନାରାୟଣ ଦୀକ୍ଷିତଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇ ପ୍ରଶଂସାପତ୍ର ଲାଭ କରିଥିଲା ।

ଦୀର୍ଘ ସାତବର୍ଷ ଗବେଷକ ରୂପେ କାର୍ଯ୍ୟ କରି ଡକ୍ଟର ପାଣିଗ୍ରାହୀ ୧୯୪୪ ମସିହାରେ ଇତିହାସ ଅଧ୍ୟାପକ ରୂପେ ଓଡ଼ିଶା ଶିକ୍ଷା ବିଭାଗରେ ଯୋଗ ଦେଇ ସମ୍ବଲପୁରଠାରେ ଅବସ୍ଥାପିତ ହୋଇଥିଲେ ।

◆◆◆

ସମ୍ବଲପୁର ସ୍ଥାନାନ୍ତର ହୋଇ ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର ରୂପେ କାର୍ଯ୍ୟ କରିଥିଲେ, ତାଙ୍କର ଅକ୍ଳାନ୍ତ ପରିଶ୍ରମ ବଳରେ ସଂଗ୍ରହାଳୟରେ ବହୁ ସଂଖ୍ୟାରେ ପ୍ରାଚୀନ ମୂର୍ତ୍ତି, ମୁଦ୍ରା, ଅଭିଲେଖ ଓ ତାଳପତ୍ରପୋଥି, ତମ୍ବାପଟା, ଶିଳାଲିପି ଇତ୍ୟାଦି ସଂଗୃହୀତ ହୋଇଥିଲା । ଏହି ସମୟରେ ଡକ୍ଟର ପାଣିଗ୍ରାହୀ ଶିଶୁପାଳଗଡ଼ ପ୍ରନ୍ତତାତ୍ତ୍ୱିକ ଖନନର ବି.ବି. ଲାଲ୍‌ଙ୍କ ସହାୟତା କରିଥିଲେ । ଏହି ଖନନରୁ ବହୁ ଅଜ୍ଞାତ ତଥ୍ୟ ଲୋକଲୋଚନକୁ ଆସି ପାରିଥିଲା । ଭୁବନେଶ୍ୱରରେ ଥିବା ସମୟରେ ଆର୍କିଓଲୋଜିକାଲ୍ ରିମେନ୍‌ସ ଅଫ୍ ଭୁବନେଶ୍ୱର ନାମକ ନିବନ୍ଧ ପାଇଁ କୋଲକାତା ବିଶ୍ୱବିଦ୍ୟାଳୟରୁ ଡ଼କ୍ଟରେଟ ଉପାଧି ପାଇଥିଲେ । ଏହି ନିବନ୍ଧଟିର ପରୀକ୍ଷକ ଡକ୍ଟର ରମେଶ ଚନ୍ଦ୍ର ମଜୁମଦାର, ଡକ୍ଟର କେ.ନୀଳକଣ୍ଠ ଶାସ୍ତ୍ରୀ ଓ ଡକ୍ଟର ଏନ.ପି.ଚକ୍ରବର୍ତ୍ତୀ ପ୍ରଭୃତି ମନୀଷୀଗଣ ଉଚ୍ଚପ୍ରଶଂସା କରି ଏହାର ପ୍ରକାଶନ ପାଇଁ ସୁପାରିଶ କରିଥିଲେ । ୧୯୬୧ ମସିହାରେ ନିବନ୍ଧଟି ଓରିଏଣ୍ଟ ଲଙ୍ଗ ମ୍ୟାନସ ସଂସ୍ଥାଦ୍ୱାରା ପ୍ରକାଶିତ ହୋଇ ଜର୍ମାନୀର ଫ୍ରାଙ୍କଫର୍ଟ ଅନ୍ତର୍ଜାତୀୟ ପୁସ୍ତକ ମେଳାରେ ପୁରସ୍କାର ଲାଭ କରିଥିଲା । ଗ୍ରନ୍ଥଟିରେ ଡକ୍ଟର ପାଣିଗ୍ରାହୀ ଭୁବନେଶ୍ୱରରେ ମନ୍ଦିରଗୁଡ଼ିକର ଗଠନ ଶୈଳୀ ଓ ସ୍ଥାପତ୍ୟର ଅନୁସରଣରେ ସମୟ ନିରୂପଣ କରିଥିଲେ ଏବଂ ଏଗୁଡ଼ିକର ବିଭକ୍ତିକରଣ କରି ବ୍ରାହ୍ମଣ୍ୟ ଦେବଦେବୀମାନଙ୍କ ମୂର୍ତ୍ତିତତ୍ତ୍ୱ ସମ୍ବନ୍ଧରେ ବିଶେଷ ତଥ୍ୟ ପ୍ରଦାନ କରିଥିଲେ ।

ରତ୍ନଗିରି, ଲଳିତଗିରି ଓ ଉଦୟଗିରିଠାରେ ଥିବା ବୌଦ୍ଧ କୀର୍ତ୍ତିରାଜି ସହ ଭୁବନେଶ୍ୱରରେ ଥିବା ଭୌମଯୁଗୀୟ ମନ୍ଦିରଗୁଡ଼ିକର ପ୍ରନ୍ତତାତ୍ତ୍ୱିକ ସମନ୍ୱୟ ସ୍ଥାପନ କରି ଡକ୍ଟର ପାଣିଗ୍ରାହୀ ଏକ ଉଚ୍ଚକୋଟୀର ନିବନ୍ଧ ରଚନା କରିଥିଲେ । ସେହିପରି କୋଣାର୍କ ମନ୍ଦିର ସମ୍ପର୍କରେ ଏକ ବର୍ଣ୍ଣାଢ଼୍ୟ ଐତିହାସିକ ନିବନ୍ଧ ଲେଖି ସେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ଅଭିଲେଖରୁ ପାଠୋଦ୍ଧାର କରିବା କାର୍ଯ୍ୟରେ ଡକ୍ଟର ପାଣିଗ୍ରାହୀ ଅନୁରୂପ କୁଶଳୀ ଥିଲେ । ଭଦ୍ରକାଳୀ ଅଭିଲେଖ, ଭଞ୍ଜଯୁଗୀୟ ତାମ୍ର ଶାସନ, ଧର୍ମ ମହାଦେବୀଙ୍କ ତାମ୍ର ଶାସନ ପ୍ରଭୃତିର ସେ ପାଠୋଦ୍ଧାର କରି ବିଭିନ୍ନ ପ୍ରାଚ୍ୟ ବିଦ୍ୟା ଜର୍ଣ୍ଣାଲମାନଙ୍କରେ ପ୍ରକାଶ କରିଥିଲେ । ଅଭିଲେଖରୁ ନିପୁଣ ପାଠୋଦ୍ଧାର କରି ସେ ଓଡ଼ିଶାର ଅନ୍ୟତମ ନିପୁଣ ଅଭିଲେଖବିତ୍ ରୂପେ ପରିଚିତ । ଭୁବନେଶ୍ୱରର ଅଶୋକ ଯୁଗୀୟ ପ୍ରସ୍ତର ସ୍ତମ୍ଭର ନିମ୍ନାଂଶ ଓ ଉପରି ଭାଗର ପର୍ସିପୋଲିୟ ଘଣ୍ଟ, ସିଂହ ଇତ୍ୟାଦିର ଆବିଷ୍କାର ଓ ସଂଯୋଗ ଡକ୍ଟର ପାଣିଗ୍ରାହୀଙ୍କର ଅନ୍ୟତମ କୀର୍ତ୍ତି । ତାଙ୍କର ମତକୁ ନିହାର ରଞ୍ଜନ ରାୟ ଓ କଲ୍ୟାଣ କୁମାର ଦାସଗୁପ୍ତା ପ୍ରଭୃତି ମନୀଷୀମାନେ ସମର୍ଥନ କରିଛନ୍ତି । ଭାସ୍କରେଶ୍ୱର ଶିବମନ୍ଦିର ମଧ୍ୟରେ ଥିବା କିମ୍ଭୁତ କିମାକାର ଲିଙ୍ଗ ଯେ ଅଶୋକ ସ୍ତମ୍ଭର ଅଂଶବିଶେଷ, ଏହା ଡକ୍ଟର ପାଣିଗ୍ରାହୀ ପ୍ରମାଣ କରିଦେଇଯାଇଛନ୍ତି । ପୂର୍ବତନ ଡ଼ି.ପି.ଆଇ ସଚ୍ଚିଦାନନ୍ଦ ରାୟଙ୍କ ଭାଷାରେ ଡକ୍ଟର ପାଣିଗ୍ରାହୀ ଥିଲେ ଭାରତର ଅନ୍ୟତମ ଶ୍ରେଷ୍ଠ ପ୍ରନ୍ତତତ୍ତ୍ୱବିତ୍ । ତାଙ୍କର ଅବଶିଷ୍ଟ ଶେଷ ଜୀବନ ସେ କଟକଠାରେ କଟାଇ ଥିଲେ ।

ଏହିପରି ଭାବରେ ଏକ ମହାନ ଗବେଷକ, ଐତିହାସିକ, ପ୍ରନ୍ତତାତ୍ତ୍ୱିକବିତ୍ ତଥା ଅଭିଲେଖବିତ୍‌ଙ୍କର ୧୯୮୭ ମସିହା ଫେବୃଆରୀ ମାସ ୨୫ ତାରିଖରେ କଟକଠାରେ ମହାପ୍ରୟାଣ ହୋଇଥିଲା ।

ଏଚ୍.ଆଇ.ଜି– ୯୧, ଫେଜ୍–୧
କାନନବିହାର, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର–୩୧



# ମାନବତାର ଧର୍ମ

ବିଚିତ୍ରାନନ୍ଦ ବାରିକ

ଏ ଶରୀର ରୂପକ ରଥରେ ଆତ୍ମା ରୂପୀ ପରଂବ୍ରହ୍ମ ବିଦ୍ୟମାନ । ତାଙ୍କର ସେବକ ହେଉଛି ଜୀବ । ଏହି ଜୀବ ଆତ୍ମା ରୂପୀ ପରଂବ୍ରହ୍ମଙ୍କୁ ନିଜର ପରମଗୁରୁ ଭାବରେ ଗ୍ରହଣ କରିଥାଏ । ସେ ନିଜର ସମସ୍ତ ସୁଖ ଦୁଃଖକୁ ସେଇ ଆତ୍ମା ଗୁରୁଙ୍କ ପାଦତଳେ ସମର୍ପି ଦେଇଥାଏ । ଲୋଭ ମୋହ ମାୟାକୁ ଘେନି ମନୁଷ୍ୟ ପାଗଳ ପ୍ରାୟ ହୋଇ ଘୂରି ବୁଲୁଛି । ଏହାର ମୁଖ୍ୟ କାରଣ ସେ ବୁଝି ବି ଅବୁଝା ହେଉଛି । ଭାବକୁ ନେଇ ଏ ଜୀବ ପ୍ରାର୍ଥନା କରି ପାରିଲେ ତା'ର ସମସ୍ତ ଦୁଃଖ ଦୂର ହୋଇ ପାରିବ । ଏ ଶରୀର ରଥରେ ବସିଥିବା ପରଂବ୍ରହ୍ମ ଦେବତା ନିଶ୍ଚୟ ତା' ଡାକ ଶୁଣିବେ । ପରଂବ୍ରହ୍ମଙ୍କୁ ଆମେ ମୁହଁରେ ପ୍ରାର୍ଥନା କରୁଛୁ ସିନା ଅନ୍ତରରେ ଶ୍ରଦ୍ଧାର ସହିତ କରି ପାରୁନାହୁଁ । ବୋଧହୁଏ ସେଥିପାଇଁ କିଛି ଫଳ ଲାଭ କରି ପାରୁନାହୁଁ । ବେଳେବେଳେ ଅଶାନ୍ତ ମନ ଜପ, ଧ୍ୟାନ ଆଦି କରିବାକୁ ଚେତନା ଦିଏ । କିନ୍ତୁ ଏ ଜୀବ ଭାବେ ବୋଧହୁଏ ମୋର କିଛି ଦୋଷ ଦୁର୍ବଳତା ପୂରି ରହିଛି । ତେଣୁ ଏ ଶରୀର ରଥରେ ବିଜେ କରିଥିବା ପରଂବ୍ରହ୍ମଙ୍କୁ ମୁଁ ପ୍ରାର୍ଥନା କରି ପାରୁନାହିଁ । ଯଦି ମୋ ମନ ମଧ୍ୟରେ ବାସନାର ଆସକ୍ତି ଉଙ୍କି ମାରିବ ତେବେ ମୁଁ ପ୍ରଭୁଙ୍କର ପ୍ରାର୍ଥନା, ଜପ, ଧ୍ୟାନ କିଛି ବି କରିପାରିବି ନାହିଁ ଏହା ସଦାସର୍ବଦା ଭାବିବା ଉଚିତ୍ ।

ଏ ମାନବ ଜାତି ଯେଉଁଠି ସ୍ୱାର୍ଥ ନିହିତ ସେଠି ସେ ତାକୁ ହିଁ ଜାବୁଡ଼ି ଧରେ । ସେତେବେଳେ ସେ ଏହି ଶରୀର ରଥରେ ବସିଥିବା ପରଂବ୍ରହ୍ମଙ୍କୁ ସମ୍ପୂର୍ଣ୍ଣ ଭୁଲି ଯାଇଥାଏ । ମୁଖ୍ୟତଃ ଦୁଇଟି କାରଣ ପାଇଁ ସେ ଭଗବାନଙ୍କୁ ଡାକିଥାଏ । ସେଥିମଧ୍ୟରୁ ଗୋଟିଏ ହେଉଛି ସ୍ୱାର୍ଥ ସାଧନ ନିମନ୍ତେ କିଛି ପ୍ରାପ୍ତି ଲାଭ କରିବା ଏବଂ ଅନ୍ୟଟି ହେଉଛି ଭଗବାନଙ୍କୁ ଡାକିଲେ ସେ ଭୟରୁ ରକ୍ଷା ପାଇବ । ଏ ମଣିଷ ସ୍ୱାର୍ଥରେ ଗନ୍ଧମାର୍ଦନ ବୋହିବାକୁ ଚାହେଁ । ଶରୀର ରଥରେ ବସିଥିବା ପରଂବ୍ରହ୍ମ ପରମାତ୍ମାଙ୍କୁ ନିଃସର୍ତ୍ତ ପ୍ରେମ ଭାବରେ ଭକ୍ତି କରିବା ତା'ପକ୍ଷେ କାଣିଚାଏ ମାତ୍ର ସମ୍ଭବ ହୋଇ ନଥାଏ । କେବଳ ସେ ଭଗବାନଙ୍କୁ ସ୍ୱାର୍ଥସର୍ବସ୍ୱ ପାଇଁ ପ୍ରାର୍ଥନା କରିଥାଏ । କିନ୍ତୁ ତା'ର ବୁଝିବା ଉଚିତ୍ ଯେ ଏଇ ଶରୀର ରଥରେ ବିରାଜିତ ପରଂବ୍ରହ ପରମାତ୍ମାଙ୍କୁ ସେ ଯଦି ଠିକ୍ ଭାବେ ଚିହ୍ନି ପାରିବ ତେବେ ସେ ପ୍ରସନ୍ନ ଚିତ୍ତରେ ରହି ସଦା ସର୍ବଦା ଦୁଃଖ କଷ୍ଟରୁ ମୁକ୍ତି ପାଇ ପାରିବ । କାମନା ବାସନା ତ୍ୟାଗ କରି ଅହଂକାରଠାରୁ ଦୂରରେ ରହି ନିଷ୍କାମ କର୍ମରେ ବ୍ରତୀ ହେଲେ ସେ ଶାନ୍ତି ପାଇବା ସହିତ ନିଜର ପ୍ରକୃତି ବଦଳାଇ ପାରିବ । କିନ୍ତୁ ଏ ମଣିଷ ଯଦି ବିଷୟାସକ୍ତ ହୁଏ, ତେବେ ତା'ର ଏ ସଂସାର ପ୍ରତି ଆସକ୍ତି ଜାତ ହେବ । ଆସକ୍ତିରୁ ଭୋଗ ଆଡକୁ ମନ ବଳେ । ଏହି ଭୋଗରୁ କ୍ରୋଧ ଜାତ ହୁଏ । କ୍ରୋଧରୁ ସମ୍ମୋହ ସୃଷ୍ଟି ହୁଏ । ସମ୍ମୋହରୁ ସ୍ମୃତିରେ ବିଭ୍ରାଟ ଦେଖାଦିଏ । ସ୍ମୃତି ନାଶ ହେଲେ ବୁଦ୍ଧି ନାଶ ହୁଏ । ବୁଦ୍ଧି ନାଶ ହେଲେ ମଣିଷ ଶେଷ ପରିଣତି ଭୋଗ କରେ । କର୍ମଯୋଗ ହିଁ ଶ୍ରେଷ୍ଠ ଅଟେ । ନିଷ୍କାମ ଭାବରେ କର୍ମ ନକଲେ ଆମ୍ଭେମାନେ ସତ୍‌ଜ୍ଞାନର ଅଧିକାରୀ ହୋଇ ପାରିବା ନାହିଁ । ସତ୍‌ଜ୍ଞାନ ଜାଗ୍ରତ ନହେଲେ ଆମ୍ଭେମାନେ ଜୀବନରେ କେବେହେଲେ ସିଦ୍ଧି ଲାଭ କରି ପାରିବା ନାହିଁ । ଏ ମଣିଷ ସଦା ସର୍ବଦା ପ୍ରକୃତିଜନିତ ଗୁଣ ସମୂହ ଦ୍ୱାରା କର୍ମ କରିଥାଏ । ଯେଉଁମାନେ ଇନ୍ଦ୍ରିୟଗଣଙ୍କୁ ଆୟତ୍ତରେ ନରଖି କର୍ମ କରିଥାନ୍ତି, ସେମାନେ ମୂଢ଼ ମିଥ୍ୟାଚାରୀ ବୋଲି ପରିଗଣିତ ହୋଇଥାନ୍ତି । ଏ ସଂସାରରେ ପ୍ରକୃତ ଜ୍ଞାନୀ ହେଉଛନ୍ତି ସେଇମାନେ ଯେଉଁମାନେ ଇନ୍ଦ୍ରିୟମାନଙ୍କୁ ଦମନ କରି ଫଳ କାମନା ରହିତ ହୋଇ ସତ୍‌କର୍ମର ଅନୁଷ୍ଠାନ କରନ୍ତି ।

ଯଜ୍ଞଦ୍ୱାରା ଦେବତାମାନଙ୍କୁ ସନ୍ତୁଷ୍ଟ କରି ଯେପରି ଜଗତର ମଙ୍ଗଳ ବିଧାନ ହୁଏ ଠିକ୍ ସେହିପରି ଏ ମଣିଷ ବାଦ ହିଂସାକୁ ତ୍ୟାଗ କରି ପାରିଲେ ତା'ର ଜୀବନର ଗତିପଥ ସମ୍ପୂର୍ଣ୍ଣ ଭାବରେ ବଦଳି ଯାଇପାରେ । ଯେଉଁମାନେ ଆତ୍ମାରେ ପ୍ରୀତି, ତୃପ୍ତି, ସନ୍ତୋଷ ଭାବ ରଖି ଆତ୍ମଦର୍ଶନରେ ବ୍ରତୀ ହୋଇଥା'ନ୍ତି, ସେମାନଙ୍କୁ ଅନ୍ୟ କର୍ମର ଆବଶ୍ୟକତା ନଥାଏ । ମଣିଷ ଅନାସକ୍ତ ଭାବରେ କର୍ତ୍ତବ୍ୟ ଓ କର୍ମ କରି ପାରିଲେ ବା ତହିଁରେ ବ୍ରତୀ ହେଲେ ସେ ମୋକ୍ଷପ୍ରାପ୍ତି ହୋଇଥାଏ । ମଣିଷ ସମସ୍ତ କର୍ମ ଭଗବାନଙ୍କୁ ସମର୍ପଣ କରି ଶ୍ରଦ୍ଧାଯୁକ୍ତ ହୋଇ କର୍ମ ସମ୍ପାଦନ କଲେ କର୍ମ ବନ୍ଧନରୁ ମୁକ୍ତ ହୋଇପାରିବ । ସେ କାମ, କ୍ରୋଧର ବଶବର୍ତ୍ତୀ ହୋଇ ପାପ କର୍ମରେ ଲିପ୍ତ ହେବ ନାହିଁ । ଇନ୍ଦ୍ରିୟମାନଙ୍କୁ ନିଜ ଆୟତ୍ତରେ ରଖି ସଦ୍‌ଜ୍ଞାନର ଅଧିକାରୀ ହୋଇପାରିଲେ ଏ ମଣିଷ ପାପରୁ ମୁକ୍ତ ହୋଇ ପାରିବ । ତେଣୁ ଆତ୍ମାରେ ମନ ଲଗାଇ ଶରୀର ରଥରେ ବସିଥିବା ପରଂବ୍ରହ୍ମ ପରମାତ୍ମାଙ୍କୁ ଧ୍ୟାନ କରିବା ସର୍ବଦା ଅଭ୍ୟାସ କଲେ ଏ ଜୀବନ ପଥ କୁସୁମିତ ହୋଇ ପାରିବ ।

ନିଆଳୀ, କଟକ

## ଓଡ଼ିଆ ଭାଷା ଓ ସଂସ୍କୃତିକୁ ବିଛିନ୍ନାଞ୍ଚଳରେ ସୁରକ୍ଷା ଓ ଅଭିବୃଦ୍ଧି କରାଯିବ –ମନ୍ତ୍ରୀ ଶ୍ରୀ ଦେବୀ ମିଶ୍ର

ଝାଡଖଣ୍ଡ ବିଛିନ୍ନାଞ୍ଚଳ ଯଥା ପୂର୍ବ ସିଂହଭୂମି, ପଶ୍ଚିମ ସିଂହଭୂମି, ଷଢେଇକଳା ଓ ଖରସୁଆଁ ଅଞ୍ଚଳରେ ଏବେ ବି ଓଡ଼ିଆ ଭାଷା ଓ ସଂସ୍କୃତି ରହିଛି । ସଂସ୍କୃତିର ଭିତ୍ତିକୁ ସମୃଦ୍ଧ କରିବା ପାଇଁ ଉତ୍କଳମଣି ଗୋପବନ୍ଧୁ ଦାସ ଓ ପଞ୍ଚସଖାମାନେ ଯେଉଁ ଉଦ୍ୟମ କରିଥିଲେ ତାକୁ ସଙ୍କଳ୍ପବଦ୍ଧତା ଭାବେ ଆଗକୁ ନିଆଯିବ ବୋଲି ଝାଡଖଣ୍ଡ ରାଜ୍ୟ ବାହାଡଗୋଡାର ଖଣ୍ଡାମଉଦାଠାରେ ଅନୁଷ୍ଠିତ ଗୋପବନ୍ଧୁ ଜୟନ୍ତୀ ଉପଲକ୍ଷେ ଆୟୋଜିତ ସମାବେଶରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ଶିକ୍ଷା, ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ର ପ୍ରକାଶ କରିଛନ୍ତି । ମନ୍ତ୍ରୀ ଶ୍ରୀ ମିଶ୍ର କହିଲେ ଯେ ଏହି ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନ, ଅସହଯୋଗ ଆନ୍ଦୋଳନର ଜନକ ଥିଲେ ପଣ୍ଡିତ ଗୋପବନ୍ଧୁ ଦାସ । ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସେ ସଭ୍ୟ ଥିଲେ । ଗୋପବନ୍ଧୁ ଥିଲେ ଗରିବର ଦରଦୀ ବନ୍ଧୁ । ସମ୍ମାନିତ ଅତିଥି ଭାବେ ପରିବହନ, ଶିଳ୍ପ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ଚମ୍ପେଇ ସୋରେନ୍, ଘାଟଶୀଳା ବିଧାୟକ ଶ୍ରୀ ରାମଦାସ ସୋରେନ୍ ଏହି ସମାବେଶରେ ଯୋଗ ଦେଇ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ବକ୍ତବ୍ୟ ପ୍ରଦାନ କରିଥିଲେ । ମୁଖ୍ୟ ବକ୍ତା ଭାବେ ଯୋଗଦେଇ ଡାକ୍ତର ଦୀନେଶ ଷଡଙ୍ଗୀ କହିଲେ ଯେ ଗୋପବନ୍ଧୁ ୧୯୧୬ରେ ପ୍ରଥମେ ସିଂହଭୂମି ଆସିଥିଲେ । ଚକ୍ରଧରପୁରଠାରେ ୧୯୨୦ ମସିହାରେ ଶ୍ରୀ ଦାସ ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ଅଧିବେଶନ ଆୟୋଜନ କରି ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଜନସାଧାରଣଙ୍କ ଆଗ୍ରହ ବୃଦ୍ଧି ପାଇଁ ଉଦ୍ୟମ କରିଥିଲେ ବୋଲି ଡାକ୍ତର ଷଡଙ୍ଗୀ ପ୍ରକାଶ କରିଥିଲେ । ଶ୍ରୀ ଅର୍ଦ୍ଧେନ୍ଦୁ ପ୍ରହରାଜଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ସଭାରେ ଜୟନ୍ତୀ କମିଟିର ସଭାପତି ବିଦ୍ୟାଧର ବେହେରା ସ୍ୱାଗତ ଭାଷଣ ଦେଇଥିବା ବେଳେ ସାଧାରଣ ସମ୍ପାଦକ ମନୋରଞ୍ଜନ ଗିରି ସଭା କାର୍ଯ୍ୟ ପରିଚାଳନା କରିଥିଲେ ।



# ସପ୍ରସଙ୍ଗ ଓଡ଼ିଶା



## ନବକଳେବର-ସମସ୍ତ ପ୍ରକଳ୍ପ ସମୟସୀମା ମଧ୍ୟରେ ସମ୍ପୂର୍ଣ୍ଣ କରିବାକୁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଅକ୍ଟୋବର ୨୨ ତାରିଖରେ ସଚିବାଳୟଠାରେ ଏକ ଉଚ୍ଚସ୍ତରୀୟ ବୈଠକରେ ନବକଳେବର ପାଇଁ ବିଭିନ୍ନ ବିଭାଗର ପ୍ରସ୍ତୁତି ଓ ପ୍ରକଳ୍ପର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରି ସମସ୍ତ ବିଭାଗ ତାଙ୍କର ପ୍ରକଳ୍ପଗୁଡ଼ିକୁ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ସମ୍ପୂର୍ଣ୍ଣ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ରେଳ ପ୍ରକଳ୍ପଗୁଡ଼ିକୁ ତ୍ୱରାନ୍ୱିତ କରିବା ପାଇଁ ସେ କେନ୍ଦ୍ର ରେଳ ମନ୍ତ୍ରୀଙ୍କ ସହିତ ଆଲୋଚନା କରିବେ ବୋଲି କହିଛନ୍ତି । ବୈଠକରୁ ଜଣାଯାଇଛି ଯେ ପୂର୍ତ୍ତ ବିଭାଗ ଓ ଜାତୀୟ ରାଜପଥର ରାସ୍ତା ପ୍ରଶସ୍ତିକରଣ କାମର ପ୍ରମୁଖ ଅଂଶ ସମ୍ପୂର୍ଣ୍ଣ ହୋଇ ସାରିଛି । ବାକି କାମ ଠିକ୍ ସମୟ ସୀମା ମଧ୍ୟରେ ଶେଷ ହେବ । ପୁରୀରେ ୧୦ ଏକର ପରିମିତ ଅଞ୍ଚଳରେ ଏକ ବସ୍‌ଷ୍ଟାଣ୍ଡ ନିର୍ମାଣ କାମ ଚାଲିଛି । ଏହା ଫେବୃଆରୀ ମାସ ଶେଷ ସୁଦ୍ଧା ସମ୍ପୂର୍ଣ୍ଣ ହେବ ବୋଲି ଜଣାଯାଇଛି । ଏହା ସହିତ ଏନ୍‌ଏଚ୍-୨୦୩ରେ ୧୦ଟି ବଫର ପାର୍କିଂ ନିର୍ମାଣ ଡିସେମ୍ବର ସୁଦ୍ଧା ଶେଷ ହେବ । ରେଳ ବିଭାଗର ଡେଲାଙ୍ଗ-ସାକ୍ଷୀଗୋପାଳ ଲାଇନ ପ୍ରଶସ୍ତିକରଣ କାମ ଶେଷ ହୋଇଛି । ସାକ୍ଷୀଗୋପାଳ-ପୁରୀ ଲାଇନ୍ କାମ ଖୁବ୍ ଶୀଘ୍ର ଆରମ୍ଭ ହେବ ବୋଲି ବୈଠକରୁ ଜଣାଯାଇଛି । ସେହିପରି ପୁରୀରେ ତୀର୍ଥଯାତ୍ରୀଙ୍କ ସୁବିଧା ପାଇଁ ୧୪ଟି ସ୍ଥାନରେ ସାମୟିକ ରହଣିର ବ୍ୟବସ୍ଥା କରାଯିବ । ଏଥିରେ ଏକ ଲକ୍ଷ ଯାତ୍ରୀଙ୍କ ରହଣି ପାଇଁ ଟଏଲେଟ୍, ପାନୀୟ ଜଳ ଏବଂ ଅନ୍ୟାନ୍ୟ ସୁବିଧା ହେବ । ବିଦ୍ୟୁତ୍ ବିଭାଗ ପକ୍ଷରୁ କୁହାଯାଇଥିଲା ଯେ ପୁରୀ- କୋଣାର୍କ ମଧ୍ୟରେ ବିଦ୍ୟୁତ୍ କେବଲ ବିଛେଇବା କାମ ସମ୍ପୂର୍ଣ୍ଣ ହୋଇ ସାରିଛି । ସମାଚାର, ସାମୁକା, ପୁରୀ ଓ କୋଣାର୍କରେ ୪ଟି ନୂଆ ଗ୍ରୀଡ୍ ସବ୍‌ଷ୍ଟେସନ୍ ସ୍ଥାପନ କରାଯିବ । ସ୍ୱାସ୍ଥ୍ୟ ବିଭାଗ ପକ୍ଷରୁ ଜିଲ୍ଲା ମୁଖ୍ୟ ଦପ୍ତର ହସ୍‌ପିଟାଲରେ ଏକ ଆଇସିୟୁ ପ୍ରତିଷ୍ଠା କରାଯାଇଛି । ଏକ ଟ୍ରୋମା କେୟାର ନିର୍ମାଣ କାମ ସମୟସୀମା ମଧ୍ୟରେ ସମ୍ପୂର୍ଣ୍ଣ କରାଯିବ ।

ବୈଠକରେ ପାନୀୟ ଜଳ, ସ୍ୱେରେଜ୍ ଓ ଡ୍ରେନେଜ୍ ନିର୍ମାଣ ସମ୍ପର୍କରେ ମଧ୍ୟ ଆଲୋଚନା ହୋଇଥିଲା । ଏହିସବୁ ପ୍ରକଳ୍ପଗୁଡ଼ିକୁ ତ୍ୱରାନ୍ୱିତ କରି ସମୟସୀମା ମଧ୍ୟରେ ସମ୍ପୂର୍ଣ୍ଣ କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ବୈଠକରେ ସୁରକ୍ଷା ବ୍ୟବସ୍ଥା ସମ୍ପର୍କରେ ମଧ୍ୟ ଆଲୋଚନା ହୋଇଥିଲା । ଶ୍ରୀମନ୍ଦିର, ସହରର ବିଭିନ୍ନ ଦୋକାନ ବଜାର ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ସିସିଟିଭି ସ୍ଥାପନ, ବିଭିନ୍ନ ଗେଟ୍‌ରେ ଏକ୍ସ-ରେ ସ୍କାନର ସ୍ଥାପନ ଆଦି କାମ ସମୟସୀମା ମଧ୍ୟରେ ଶେଷ ହେବ । ୧୬ଟି ବିପଦଜନକ ବିଲଡିଙ୍ଗକୁ ଭାଙ୍ଗିବା ପାଇଁ ମଧ୍ୟ ପଦକ୍ଷେପ ନିଆଯାଉଛି । ଏହି ବୈଠକରେ ନବକଳେବର କମିଟି ଅଧ୍ୟକ୍ଷ ଶ୍ରୀ ମହେଶ୍ୱର ମହାନ୍ତି, ପଞ୍ଚାୟତିରାଜ ଓ ଆଇନ ମନ୍ତ୍ରୀ ଡକ୍ଟର ଅରୁଣ ସାହୁ, ମୁଖ୍ୟ ଶାସନ ସଚିବ, ଉନ୍ନୟନ କମିଶନର ଏବଂ ବିଭିନ୍ନ ପ୍ରମୁଖ ସଚିବମାନେ ଉପସ୍ଥିତ ଥିଲେ ।

ଚିତ୍ତରଞ୍ଜନ ପତି, ମୁଖ୍ୟମନ୍ତ୍ରୀଙ୍କ ଲୋକ ସମ୍ପର୍କ ଅଧିକାରୀ

# ରକ୍ତ ହୀନତାଜନିତ ମାତୃ ମୃତ୍ୟୁହାର ହ୍ରାସ ପାଇଁ ଜାତୀୟ ସ୍ୱାସ୍ଥ୍ୟ ମିଶନର ଏକ ଯୋଜନା

ରାଜ୍ୟରେ ମାତୃ ମୃତ୍ୟୁହାର ହ୍ରାସ ନିମନ୍ତେ ସର୍ବାଧିକ ଗୁରୁତ୍ୱ ଆରୋପ କରାଯାଇଛି । ମାତୃ ମୃତ୍ୟୁ ପାଇଁ ଯେଉଁ ୬ଟି କାରଣ ଦାୟୀ ବୋଲି କୁହାଯାଉଛି, ସେଥି ମଧ୍ୟରେ ରକ୍ତ ହୀନତା ଏକ ପ୍ରମୁଖ କାରଣ । ଭାରତବର୍ଷରେ ଗର୍ଭବତୀ ମହିଳାମାନଙ୍କ କ୍ଷେତ୍ରରେ ରକ୍ତହୀନତା ବହୁଳ ଭାବେ ଦେଖା ଦେଇଥାଏ । ଓଡିଶାରେ ମଧ୍ୟ ଅନେକ ମହିଳାମାନଙ୍କଠାରେ ରକ୍ତ ହୀନତା ପରିଲକ୍ଷିତ । ତେବେ ଏହାର ହ୍ରାସ ପାଇଁ ରାଜ୍ୟ ସରକାର ଅନେକ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ସର୍ବଭାରତୀୟ ତୁଳନାରେ ଅଧିକ ରହିଛି । ବର୍ତ୍ତମାନ ଦେଶରେ ମାତୃ ମୃତ୍ୟୁହାର ପ୍ରତି ଏକ ଲକ୍ଷ ମା'ଙ୍କ କ୍ଷେତ୍ରରେ ୧୭୮ ହୋଇଥିବା ବେଳେ ଆମ ରାଜ୍ୟରେ ୨୩୦ । ଏହାକୁ କିପରି ଭାବେ ତ୍ୱରାନ୍ୱିତ କରାଯାଇ ପାରିବ ସେ ନେଇ ଜାତୀୟ ସ୍ୱାସ୍ଥ୍ୟ ମିଶନ ତରଫରୁ ବ୍ୟବସ୍ଥା କରାଯାଉଛି । ରକ୍ତହୀନତା ଦୂର କରିବା ଏବଂ ମା'ମାନଙ୍କ ଜୀବନ ବଞ୍ଚାଇବା ଦିଗରେ ଏକ ନୂତନ ପଦକ୍ଷେ ଗ୍ରହଣ କରାଯିବା ପାଇଁ ଯୋଜନା ପ୍ରସ୍ତୁତ କରାଯାଉଛି ।

ବୈଠକ ବିବରଣୀରୁ ପ୍ରକାଶ ଯେ ରକ୍ତହୀନତା ଥିବା ଗର୍ଭବତୀ ମହିଳାମାନଙ୍କୁ କିପରି ଚିକିତ୍ସା କରାଗଲେ ବା କଣ କରାଗଲେ, ସେମାନଙ୍କ ଜୀବନ ରକ୍ଷା ସାଙ୍ଗକୁ ତା'ର ଗର୍ଭସ୍ଥ ଶିଶୁକୁ ସହଜରେ ପ୍ରସବ କରାଯାଇ ତାକୁ ସୁସ୍ଥ ସବଳ କରାଯାଇ ପାରିବ, ଏ ନେଇ ଏସ୍.ସି.ବି ମେଡିକାଲ କଲେଜ ଓ ହସପିଟାଲରେ ଏକ ଅଧ୍ୟୟନ ( ଷ୍ଟଡି ) କରାଯାଉଛି । ଏହି ୨ ଦୁଇ ବର୍ଷିଆ ଅଧ୍ୟୟନ ମାଧ୍ୟମରେ ରକ୍ତହୀନତା ଗର୍ଭବତୀ ମହିଳାମାନଙ୍କ ରକ୍ତହୀନତା ଦୂର କରିବା ପାଇଁ ପ୍ରଦାନ କରାଯାଉଥିବା ସାଧାରଣ ଆଇରନ୍ ବଟିକା ବଦଳରେ ନୂତନ ଭାବେ ଆଇରନ୍ ସୁକ୍ରୋଜ ଇଂଜେକସନ୍ ଦିଆଯାଇ ପରୀକ୍ଷା କରାଯାଉଛି । ଏହାର ଫଳାଫଳ ମଧ୍ୟ ବେଶ ଉତ୍ସାହଜନକ ଏବଂ ଫଳପ୍ରଦ ହେଉଛି ବୋଲି ପ୍ରାଥମିକ ଭାବେ ଜଣାପଡିଛି । ତେବେ ଏହି ପରୀକ୍ଷା ସମ୍ପୂର୍ଣ୍ଣ ସଫଳ ହେଲେ ଏହାକୁ ବ୍ୟାପକ ଭାବେ ପ୍ରୟୋଗ କରାଯିବ । ଏ ନେଇ ଜାତୀୟ ସ୍ୱାସ୍ଥ୍ୟ ମିଶନ ତରଫରୁ ସମସ୍ତ ପ୍ରକାର ସହାୟତା ପ୍ରଦାନ କରାଯାଇ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରଠାରୁ ଆରମ୍ଭ କରାଯାଇ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପର୍ଯ୍ୟନ୍ତ କାର୍ଯ୍ୟକାରୀ କରାଯିବ । ଫଳରେ ମାତୃ ମୃତ୍ୟୁର ଅନ୍ୟତମ ପ୍ରମୁଖ କାରଣକୁ ମୁକାବିଲା କରାଯିବା ସହ ମୃତ୍ୟୁହାରକୁ ରୋକା ଯାଇପାରିବ । ବର୍ତ୍ତମାନ ଏସ୍.ସି.ବି ମେଡିକାଲ କଲେଜ ଓ ହସପିଟାଲରେ କରାଯାଉଥିବା ପରୀକ୍ଷାକୁ ଆଗେଇ ନେବା ପାଇଁ ଏହାର ପ୍ରାୟ ୩୦ କି.ମି ପରିଧି ମଧ୍ୟରେ ଯେତେ ରକ୍ତହୀନତା ଗର୍ଭବତୀ ମହିଳା ଅଛନ୍ତି, ସେମାନଙ୍କୁ ଏସ୍.ସି.ବିକୁ ଅଣାଯିବ । ସେଠାରେ ସେମାନଙ୍କର ୫ ଥର ବିଶେଷ ରକ୍ତ ପରୀକ୍ଷା କରାଯାଇ ଆଇରନ୍ ସୁକ୍ରୋଜ ଇଂଜେକସନ ଦିଆଯିବା ସହିତ ଅନ୍ୟାନ୍ୟ ଚିକିତ୍ସା କରାଯିବ ଏବଂ ସେହିଠାରେ ନିର୍ଦ୍ଧାରିତ ଦିନରେ ପ୍ରସବ କରାଯିବ । ସେହିପରି ମହିଳାମାନଙ୍କୁ ଏସ୍.ସି.ବିକୁ ମାଗଣା ପରିବହନ ସୁବିଧା ସହ ସମସ୍ତ ପ୍ରକାର ପରୀକ୍ଷାନିରୀକ୍ଷା ସମ୍ପୂର୍ଣ୍ଣ ମାଗଣାରେ କରାଯିବ । ପ୍ରକାଶ ଥାଉକି ଗ୍ରାମାଞ୍ଚଳ ତଥା ଜିଲ୍ଲା ମୁଖ୍ୟ ଚିକିତ୍ସାଳୟମାନଙ୍କରେ ଜନନୀ ଶିଶୁ ସୁରକ୍ଷା ଯୋଜନାରେ ଗର୍ଭବତୀ ମହିଳାମାନଙ୍କୁ ମିଳୁଥିବା ସମସ୍ତ ପ୍ରକାର ସୁବିଧା ସୁଯୋଗ ରାଜ୍ୟର ତିନିଟି ସରକାରୀ ମେଡିକାଲ କଲେଜ ଓ ହସ୍ପିଟାଲରେ ମଧ୍ୟ ଉପଲବ୍ଧ କରାଯାଇଛି ।

ପ୍ରଭାକର ସାହୁ

# ଓଡ଼ିଶାରେ ସ୍ୱଚ୍ଛ ବିଦ୍ୟାଳୟ କାର୍ଯ୍ୟକ୍ରମରେ ସାମିଲ ହେବ ଇନ୍‌ଫୋସିସ୍

ଇନ୍‌ଫୋସିସ୍ ଫାଉଣ୍ଡେସନ୍‌ର ଅଧକ୍ଷା ଶ୍ରୀମତୀ ସୁଧା ମୂର୍ତ୍ତି ଅକ୍ଟୋବର ୨୭ ତାରିଖ ସନ୍ଧ୍ୟାରେ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ସାକ୍ଷାତ କରି ଓଡ଼ିଶାରେ ସ୍ୱଚ୍ଛ ବିଦ୍ୟାଳୟ କାର୍ଯ୍ୟକ୍ରମରେ ଇନ୍‌ଫୋସିସ୍ ଫାଉଣ୍ଡେସନ୍‌ର ଯୋଗଦାନ ସମ୍ପର୍କରେ ଆଲୋଚନା କରିଥିଲେ । ଭୁବନେଶ୍ୱରର ୧୦୯ଟି ସରକାରୀ ବିଦ୍ୟାଳୟରେ ଶୌଚାଳୟ ନିର୍ମାଣ ଦାୟିତ୍ୱ ଇନ୍‌ଫୋସିସ୍ ଫାଉଣ୍ଡେସନ୍ ନେବ ବୋଲି ଶ୍ରୀମତୀ ମୂର୍ତ୍ତି ସୂଚନା ଦେଇଥିଲେ । ଏତଦ୍‌ବ୍ୟତୀତ ଓଡ଼ିଶାର ଜଗତସିଂହପୁର ଜିଲ୍ଲାରେ ଏକ ରାସ୍ତା ନିର୍ମାଣ ଦାୟିତ୍ୱ ନେବା ପାଇଁ ମଧ୍ୟ ଫାଉଣ୍ଡେସନ୍ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ ।

ରାଜ୍ୟର ବିଦ୍ୟାଳୟମାନଙ୍କରେ କମ୍ପ୍ୟୁଟର ଲିଟେରାରି କାର୍ଯ୍ୟକ୍ରମରେ ଇନ୍‌ଫୋସିସ୍ ସହଯୋଗ ପାଇଁ ସରକାରଙ୍କ ପକ୍ଷରୁ ପ୍ରସ୍ତାବ ଦିଆଯାଇଥିଲା । ଏହି ପ୍ରସ୍ତାବକୁ ଶ୍ରୀମତୀ ମୂର୍ତ୍ତି ଗ୍ରହଣ କରିବା ସହ ପ୍ରଶିକ୍ଷକମାନଙ୍କୁ ମଧ୍ୟ ତାଲିମ ଦେବ ବୋଲି ବୈଠକରେ

ସୂଚନା ଦେଇଥିଲେ । ଏତଦ୍‌ବ୍ୟତୀତ ସିଆଇପିଇଟିରେ ରାଜ୍ୟର ପ୍ରତିବର୍ଷ ୬୦ ଜଣ ଯୁବକଯୁବତୀଙ୍କୁ ତାଲିମ ଦେଇ ସେମାନଙ୍କର ଦାୟିତ୍ୱ ଇନ୍‌ଫୋସିସ୍ ନେବ ବୋଲି ଶ୍ରୀମତୀ ମୂର୍ତ୍ତି ସୂଚନା ଦେଇଥିଲେ ।

ସୁକାନ୍ତ କୁମାର ପଣ୍ଡା, ମୁଖ୍ୟମନ୍ତ୍ରୀଙ୍କ ଲୋକସମ୍ପର୍କ ଅଧିକାରୀ

# କୋଣାର୍କ, ଖଣ୍ଡଗିରି–ଉଦୟଗିରି ଓ ଧଉଳିଗିରିଠାରେ ଆଲୋକ ଓ ଶବ୍ଦ ପ୍ରକଳ୍ପ ପାଇଁ ଚୁକ୍ତି ସ୍ୱାକ୍ଷରିତ

- ନବକଳେବର ପୂର୍ବରୁ ପ୍ରକଳ୍ପ ଶେଷ ହେବ
- ପ୍ରତ୍ୟେକ ସ୍ଥାନ ପାଇଁ ଭାରତୀୟ ପର୍ଯ୍ୟଟନ ନିଗମ ୫ କୋଟି ଲେଖାଏଁ ଅର୍ଥ ମଞ୍ଜୁର କରିବେ

ଓଡ଼ିଶାର ପର୍ଯ୍ୟଟନ ବିଭବକୁ ଜାତୀୟ ଓ ଆନ୍ତର୍ଜାତୀୟ ମାନଚିତ୍ରରେ ଅବସ୍ଥାପିତ କରିବା ପାଇଁ ରାଜ୍ୟର ୩ଟି ପ୍ରମୁଖ ପର୍ଯ୍ୟଟନ ସ୍ଥଳୀରେ ଶବ୍ଦ ଓ ଆଲୋକସଜ୍ଜା ପ୍ରକଳ୍ପ ଆରମ୍ଭ କରିବା ପାଇଁ ରାଜ୍ୟ ପର୍ଯ୍ୟଟନ ବିଭାଗ ଏବଂ ଭାରତୀୟ ପର୍ଯ୍ୟଟନ ଉନ୍ନୟନ କର୍ତ୍ତୃପକ୍ଷ ମଧ୍ୟରେ ଆଜି ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି । ଖଣ୍ଡଗିରି–ଉଦୟଗିରି, ଶାନ୍ତିସ୍ତୂପ ଧଉଳି ଓ ବିଶ୍ୱ ଐତିହ୍ୟ ମାନ୍ୟତାପ୍ରାପ୍ତ କୋଣାର୍କଠାରେ ଲାଇଟ୍ ଏଣ୍ଡ ସାଉଣ୍ଡ ବ୍ୟବସ୍ଥା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଉପସ୍ଥିତିରେ ପର୍ଯ୍ୟଟନ ବିଭାଗର ନିର୍ଦ୍ଦେଶକ ଶ୍ରୀ ଅଶୋକ କୁମାର ତାରିଣିଆ ଓ ଭାରତୀୟ ପର୍ଯ୍ୟଟନ ଉନ୍ନୟନ ନିଗମର ଅର୍ଥ ବିଭାଗ ନିର୍ଦ୍ଦେଶକ ଶ୍ରୀ ତ୍ରିନାଥ ବେହେରାଙ୍କ ମଧ୍ୟରେ ଏହି ବୁଝାମଣା ସ୍ୱାକ୍ଷରିତ ହୋଇଛି ।

ବୁଝାମଣା ମୁତାବକ ଖଣ୍ଡଗିରି–ଉଦୟଗିରି ପାଇଁ ଆଇଟିଡିସି ୬ କୋଟି ୧୫ ଲକ୍ଷ, ଧଉଳି ପାଇଁ ୬ କୋଟି ୬ ଲକ୍ଷ ଓ କୋଣାର୍କ ପାଇଁ ୬ କୋଟି ୫୬ ଲକ୍ଷ ଟଙ୍କା ବ୍ୟୟ ବରାଦ କରାଯାଇଛି । ପ୍ରତ୍ୟେକ ପ୍ରକଳ୍ପ ପାଇଁ ଆଇ.ଟି.ଡି.ସି ୫ କୋଟି ଲେଖାଏଁ ଅର୍ଥ ମଞ୍ଜୁର କରିଛନ୍ତି ଓ ଅବଶିଷ୍ଟ ଅର୍ଥ ରାଜ୍ୟ ସରକାର ବହନ କରିବେ । ଏହି ତିନୋଟି ପ୍ରକଳ୍ପକୁ କାର୍ଯ୍ୟକାରୀ କରିବା ନିମିତ୍ତ ଭାରତୀୟ ପର୍ଯ୍ୟଟନ ଉନ୍ନୟନ ନିଗମକୁ କାର୍ଯ୍ୟଭାର ଦାୟିତ୍ୱ ଦିଆଯାଇଛି । ଆସନ୍ତା ନବକଳେବର ପୂର୍ବରୁ ଏହି ପ୍ରକଳ୍ପ କାର୍ଯ୍ୟ ଶେଷ କରିବା ପାଇଁ ମଧ୍ୟ ସମୟ ଧାର୍ଯ୍ୟ କରାଯାଇଛି । ପ୍ରକଳ୍ପ ଶେଷ ହେବା ପରେ ଏହାର ସଠିକ୍ ସଞ୍ଚାଳନ ଓ ରକ୍ଷଣାବେକ୍ଷଣ ପାଇଁ ଆଇ.ଟି.ଡି.ସି ୫ ବର୍ଷ ପାଇଁ ଏକ ଏଜେନ୍ସି(ସଂସ୍ଥା) ଚୟନ କରି ଏହାକୁ ଦାୟିତ୍ୱ ହସ୍ତାନ୍ତର କରିବେ । ଏହି ସଂଚାଳନ କାର୍ଯ୍ୟ ପାଇଁ ଆବଶ୍ୟକ ଅର୍ଥ ରାଜ୍ୟ ସରକାର ନିଜସ୍ୱ ପାଣ୍ଠିରୁ ବହନ କରିବେ ।

ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା ସାମ୍ବାଦିକମାନଙ୍କୁ କହିଥିଲେ ଯେ, ଓଡ଼ିଶା ସର୍ବଧର୍ମ ସମନ୍ୱୟର ପୀଠ । ଜୈନ ଧର୍ମର ପ୍ରତୀକ ଖଣ୍ଡଗିରି–ଉଦୟଗିରି, ବୌଦ୍ଧ ଧର୍ମର ପ୍ରତୀକ ଧଉଳିଗିରି ଓ ହିନ୍ଦୁ ଧର୍ମର ପ୍ରତୀକ କୋଣାର୍କ ମନ୍ଦିରର ଲାଇଟ୍ ଏଣ୍ଡ ସାଉଣ୍ଡ ବ୍ୟବସ୍ଥା କାର୍ଯ୍ୟକାରୀ ହେଲେ ବିଶ୍ୱର କୋଣ ଅନୁକୋଣରୁ ପର୍ଯ୍ୟଟକମାନେ ଆକୃଷ୍ଟ ହୋଇ ଆସିବେ । ଏସବୁ କେବଳ ପର୍ଯ୍ୟଟନ ସ୍ଥଳୀ ଭାବେ ଗଣା ହେବନାହିଁ ଅଧିକନ୍ତୁ ଜାତୀୟ ସଂହତିକୁ ପ୍ରୋତ୍ସାହନ ଦେବ । ଏହି ଅବସରରେ ଆଇ.ଟି.ଡି.ସିର (ଅର୍ଥ) ନିର୍ଦ୍ଦେଶକ ଶ୍ରୀ ତ୍ରିନାଥ ବେହେରା କହିଥିଲେ ଯେ ସୂର୍ଯ୍ୟାସ୍ତ ପରେ ବିଭିନ୍ନ କୀର୍ତ୍ତିରାଜିଗୁଡିକର କାହାଣୀ ସମ୍ବନ୍ଧରେ ଆଲୋକ ସହ ଯେଉଁ ବର୍ଣ୍ଣନା କରାଯାଏ ତା'କୁ ସାଉଣ୍ଡ ଏଣ୍ଡ ଲାଇଟ୍ ପ୍ରକଳ୍ପ କୁହାଯାଏ । ମିଶରର ପିରାମିଡ୍, ସିଙ୍ଗାପୁରର ଆଇସ୍‌ଲ୍ୟାଣ୍ଡଠାରେ ଏହି ପ୍ରକଳ୍ପ ଦୀର୍ଘ ଦିନ ହେବ କାର୍ଯ୍ୟକରି ଆସୁଛି । ଏହା ପର୍ଯ୍ୟଟନ ବିକାଶ କ୍ଷେତ୍ରରେ ସହଯୋଗ କରିବ । ଐତିହ୍ୟର କାହାଣୀ, ଶୁଣାକଥା ଓ ପରିକଳ୍ପନାର ସୁନ୍ଦର ଆଲେଖ୍ୟ ସହ ଶବ୍ଦ ଓ ଆଲୋକର ସଂଯୋଗ ସନ୍ଧ୍ୟାପରେ ଏହି ଦୁଇଟି ନିକାଞ୍ଚନ ସ୍ଥାନକୁ କୋଳାହଳପୂର୍ଣ୍ଣ କରିବ । ସ୍ୱର ସଂଯୋଜନା ପାଇଁ ସୁରେଶ ଓବରୟ, ଓମ୍ ପୁରୀ ଓ ନାସିରୁଦ୍ଦିନ ଶାହାଙ୍କୁ ଯୋଗାଯୋଗ କରାଯିବ । ଧଉଳି ଓ କୋଣାର୍କ ପାଇଁ ୱାର୍କ ଅର୍ଡର ଦିଆଯାଇ ସାରିଛି ଓ ଖଣ୍ଡଗିରି ପାଇଁ ଖୁବ୍‌ଶୀଘ୍ର ଅର୍ଡର ଦିଆଯିବ ବୋଲି ଶ୍ରୀ ବେହେରା ସୂଚନା ଦେଇଥିଲେ ।

ପୁଷ୍ପାଞ୍ଜଳି ପାଇକରାୟ, ସୂଚନା ଅଧିକାରୀ

# 'ବନବନ୍ଧୁ କଲ୍ୟାଣ ଯୋଜନା'ର କାର୍ଯ୍ୟକାରିତା ଉପରେ କର୍ମଶାଳା

ଅକ୍ଟୋବର ୨୫ ତାରିଖରେ ସ୍ଥାନୀୟ ଏସ୍.ସି.ଏସ୍.ଟି.ଆର୍.ଟି.ଆଇର ପ୍ରେକ୍ଷାଳୟଠାରେ 'ବନବନ୍ଧୁ କଲ୍ୟାଣ ଯୋଜନା'ର କାର୍ଯ୍ୟକାରିତାର ବିଭିନ୍ନ ଦିଗ ବିଷୟରେ ଏକ କର୍ମଶାଳା ଆୟୋଜିତ ହୋଇଯାଇଛି । ଭାରତ ସରକାରଙ୍କର ଆଦିବାସୀ ବ୍ୟାପାର ମନ୍ତ୍ରଣାଳୟ ଓ ୟୁ.ଏନ୍.ଡି.ପିର ମିଳିତ ସହଯୋଗରେ ଆୟୋଜିତ ଏହି କର୍ମଶାଳାକୁ ଆଦିବାସୀ ବ୍ୟାପାର ମନ୍ତ୍ରାଳୟର ସଚିବ ଡକ୍ଟର ହୃଷିକେଶ ପଣ୍ଡା ଉଦ୍‌ଘାଟନ କରିଥିଲେ । ଡକ୍ଟର ପଣ୍ଡା ଭାରତ ସରକାରଙ୍କ ଦ୍ୱାରା ବିଭିନ୍ନ ରାଜ୍ୟରେ କାର୍ଯ୍ୟକାରୀ ହେବାକୁ ଥିବା ଏହି ନୂତନ ଯୋଜନାର ଏକ ବିସ୍ତୃତ ଚିତ୍ର ପ୍ରଦାନ କରିଥିଲେ । 'ବନବନ୍ଧୁ କଲ୍ୟାଣ ଯୋଜନା'ର ରୂପରେଖ ଓ ଗୁଜୁରାଟରେ ଏହାର କାର୍ଯ୍ୟକାରିତା ସମ୍ପର୍କରେ ଗୁଜୁରାଟ ଜନଜାତି ବିଭାଗ କମିଶନର ଆର୍.ସି.ମିନା ସୂଚନା ପ୍ରଦାନ କରିଥିଲେ ।

ଆଦିବାସୀ ବ୍ୟାପାର ମନ୍ତ୍ରାଳୟର ଯୁଗ୍ମ ସଚିବ ଅଶୋକ ପାଇ ଏବଂ ମନୋଜ କୁମାର ପିଙ୍ଗୁଆ ବିଭିନ୍ନ ରାଜ୍ୟରେ ଏହି ଯୋଜନାର କାର୍ଯ୍ୟକାରିତା ପାଇଁ ଆବଶ୍ୟକତା ଏବଂ କେଉଁ କାର୍ଯ୍ୟକ୍ରମକୁ ଅଗ୍ରାଧିକାର ଦିଆଯିବ ସେ ସମ୍ପର୍କରେ ମତାମତ ଲୋଡିଥିଲେ । ସମସ୍ତ ରାଜ୍ୟର ପ୍ରତିନିଧିମାନେ ନିଜ ନିଜ ରାଜ୍ୟର ଆବଶ୍ୟକତା ଓ ଅଗ୍ରାଧିକାର କାର୍ଯ୍ୟକ୍ରମ ବିଷୟରେ ସୂଚନା ପ୍ରଦାନ କରିଥିଲେ ।

ଏହି କର୍ମଶାଳାରେ ଭାରତୀୟ ସମ୍ବିଧାନର ପଞ୍ଚମ ଅନୁଚ୍ଛେଦରେ ଅନ୍ତର୍ଭୁକ୍ତ ହୋଇଥିବା ଦଶଟି ରାଜ୍ୟର ପ୍ରିନ୍‌ସିପାଲ୍ ସେକ୍ରେଟେରୀ, ସେକ୍ରେଟେରୀ ଓ ଆଦିବାସୀ ଉନ୍ନୟନ ବିଭାଗର ବହୁ ବରିଷ୍ଠ ପଦାଧିକାରୀ, ୟୁ.ଏନ୍.ଡି.ପିର ପରାମର୍ଶଦାତା ପ୍ରମୁଖ ଯୋଗ ଦେଇଥିଲେ । କର୍ମଶାଳାରେ ମୁଖ୍ୟତଃ 'ବନବନ୍ଧୁ କଲ୍ୟାଣ ଯୋଜନା'ର ରୂପରେଖ, ଉପାଦେୟତା ଓ କାର୍ଯ୍ୟକାରିତା ଉପରେ ବିସ୍ତୃତ ଭାବେ ଆଲୋଚନା କରାଯାଇଥିଲା । ଏହି ଯୋଜନା ଗୁଜୁରାଟରେ ସଫଳ ଭାବେ କାର୍ଯ୍ୟକାରୀ ହୋଇଥିବା ଯୋଗୁଁ ଏହାକୁ ଦେଶର ୩୫୦ଟି ବ୍ଲକ୍‌ରେ ପର୍ଯ୍ୟାୟକ୍ରମେ ଆଗାମୀ ୫ ବର୍ଷ ମଧ୍ୟରେ କାର୍ଯ୍ୟକାରୀ କରାଇବା ନିମନ୍ତେ କାର୍ଯ୍ୟସାରଣୀ ପ୍ରସ୍ତୁତ କରାଯାଇଥିଲା । ଏହି ଯୋଜନାକୁ ପ୍ରାରମ୍ଭିକ ଭାବେ ପ୍ରତ୍ୟେକ ରାଜ୍ୟରେ ଚିହ୍ନଟ ହୋଇଥିବା ଗୋଟିଏ ଲେଖାଏଁ ମଡେଲ୍ ବ୍ଲକ୍‌ରେ ପାଇଲଟ୍ ପ୍ରୋଜେକ୍ଟ ଭାବେ ଆରମ୍ଭ କରାଯାଇ ପରବର୍ତ୍ତୀ ସମୟରେ ଅନ୍ୟ ବ୍ଲକ୍‌ଗୁଡିକରେ କାର୍ଯ୍ୟକାରୀ କରାଯିବ ବୋଲି କର୍ମଶାଳାରେ ଆଲୋଚନା କରାଯାଇଥିଲା । ଓଡ଼ିଶା ସରକାରଙ୍କର ଏସ୍.ଟି.ଏସ୍.ସି ଉନ୍ନୟନ ବିଭାଗ ଶାସନ ସଚିବ ଶ୍ରୀ ସୁରେନ୍ଦ୍ର କୁମାର କର୍ମଶାଳାରେ ସ୍ୱାଗତ ଭାଷଣ ଦେଇ ଯୋଜନାର କାର୍ଯ୍ୟକାରିତା ସମ୍ପର୍କରେ ବର୍ଣ୍ଣନା କରିଥିଲେ ।

'ବନବନ୍ଧୁ କଲ୍ୟାଣ ଯୋଜନା' ଗୁଜୁରାଟ ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଆଦିବାସୀ ଉନ୍ନୟନ ଯୋଜନାର ଏକ ସଫଳ କାର୍ଯ୍ୟକ୍ରମ । ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନରେନ୍ଦ୍ର ମୋଦି ଏହି ସ୍କିମ୍‌କୁ ଚଳିତ ବର୍ଷ ଏକ ରାଷ୍ଟ୍ରୀୟ ଯୋଜନା ଭାବେ ଘୋଷଣା କରିଥିଲେ । ଭାରତ ସରକାର ଏହି ଯୋଜନା ନିମନ୍ତେ ୧୦୦ କୋଟି ଟଙ୍କାର ପୁଞ୍ଜି ଧାର୍ଯ୍ୟ କରି ଏହାକୁ ଆଦିବାସୀ ମନ୍ତ୍ରଣାଳୟ ମାଧ୍ୟମରେ ଜନଜାତି କଲ୍ୟାଣ ପାଇଁ ବିନିଯୋଗ କରିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରିଛନ୍ତି । ଏହି ଯୋଜନାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି (୧) ଆଦିବାସୀ ପରିବାରଗୁଡିକର ଗୁଣାତ୍ମକ ଓ ନିରନ୍ତର କର୍ମ ନିୟୋଜନ (୨) ଆବଶ୍ୟକୀୟ ଭିତ୍ତିଭୂମିର ବିକାଶ (୩) ଶିକ୍ଷା ଓ ସ୍ୱାସ୍ଥ୍ୟର ବିକାଶ ଓ (୪) ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜନଜାତିଙ୍କର ଜୀବନଧାରଣର ମାନ ବୃଦ୍ଧି । ଏଥି ନିମନ୍ତେ ଆଗାମୀ ପାଞ୍ଚବର୍ଷ ମଧ୍ୟରେ ଆଦିବାସୀମାନଙ୍କର କର୍ମନିୟୋଜନ, ଗୁଣାତ୍ମକ ଶିକ୍ଷା ଓ ଉଚ୍ଚଶିକ୍ଷା, ଆର୍ଥିକ ବିକାଶ, ସ୍ୱାସ୍ଥ୍ୟସେବା, ସମସ୍ତଙ୍କ ପାଇଁ ବାସଗୃହ, ପାନୀୟ ଜଳର ବ୍ୟବସ୍ଥା, ଯୋଗାଯୋଗର ବ୍ୟବସ୍ଥା, ବିଦ୍ୟୁତିକରଣ, ଜଳସେଚନ, ଆଦିବାସୀ ସଂସ୍କୃତିର ସଂରକ୍ଷଣ ଓ ପ୍ରୋତ୍ସାହନ ଇତ୍ୟାଦି ବିଷୟଗୁଡିକ ଉପରେ ଗୁରୁତ୍ୱ ଦିଆଯିବା ନିମନ୍ତେ କର୍ମଶାଳାରେ ଆଲୋଚନା କରାଯାଇଥିଲା । କର୍ମଶାଳାରେ ଏସ୍.ସି.ଏସ୍.ଟି.ଆର୍.ଟି.ଆଇର ନିର୍ଦ୍ଦେଶକ ପ୍ରଫେସର ଡକ୍ଟର ଅଖିଳ ବିହାରୀ ଓତା ଧନ୍ୟବାଦ ପ୍ରଦାନ କରିଥିଲେ ।

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ, ସୂଚନା ଅଧିକାରୀ